# ଶେଷ ବନ୍ଦୀ କାହାଣୀ

ଭାଷାନ୍ତର : ଡ଼ଃ ପ୍ରଫୁଲ୍ଲ କୁମାର ରଥ

# ଶ୍ରେଷ୍ଠ
# ହିନ୍ଦୀ କାହାଣୀ



ଓଡ଼ିଆ ଭାଷାନ୍ତର

**ଡକ୍ଟର ପ୍ରଫୁଲ୍ଲ କୁମାର ରଥ**

ପ୍ରାଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ



**ନିଜସ୍ୱ ପ୍ରକାଶନ, ପୁରୀ**

* ଶ୍ରେଷ୍ଠ ହିନ୍ଦୀ କାହାଣୀ :
* ଅନୁବାଦ : ଡଃ ପ୍ରଫୁଲ୍ଲ କୁମାର ରଥ
  ପ୍ରାଧ୍ୟାପକ ଓଡ଼ିଆ ବିଭାଗ
  ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ
* ପ୍ରକାଶିକା : ଶ୍ରୀମତୀ ମଞ୍ଜୁଶ୍ରୀ ରଥ ଙ୍କ ଦ୍ୱାରା
  ନିଜସ୍ୱ ପ୍ରକାଶନ, ବୀରନରସିଂହପୁର, ପୁରୀ
* ମୁଦ୍ରାକର ! ଶ୍ରୀ ଦେବ କୁମାର ରଥ
  ଶ୍ରୀ ଗୋପାଳ ପ୍ରେସ, ଦଇତାପଡ଼ା ସାହି ପୁରୀରେ ମୁଦ୍ରିତ
* ପ୍ରକାଶନ ତାରିଖ : ଚନ୍ଦନ ପୂର୍ଣ୍ଣିମା, ୧୧-୫-୧୯୯୮
* ମୂଲ୍ୟ : ପଚାଶ ଟଙ୍କା

- **SRESTHA HINDI KAHANI**
  Collection of selected Hindi short stories
- **Oriya Translation : Dr. Prafulla Kumar Rath**
  Samanta Chandra Sekhar College, Puri
- **Published by : Smt. Manjushree Rath,** on behalf of
  Nijaswa Prakashan, Biranarasinghpur, Puri
- **Printed by : Sri Deba Kumar Rath**
  at SRI GOPAL PRESS, Daitapada Sahi, Puri
- **First Publication : 11-5-1998**
- **Price Rs. 50/-**

# ସୂଚୀପତ୍ର

## CONTENT





# Gratitude

It was in the year 1973. I started editing a monthly Oriya story magazine ADHUNA from Balu Bazar, Cuttack-2. Subsequently it had to be published from Puri (1990). This was the second organised effort to bring out a monthly exclusively with short storie, first in this direction being Agrani published during 50s from Calcutta. Our attempt was influenced by Nayee Kahaniyan edited by Amrit Roy ( Son of Late Munshi Premchand) and published from Hans Prakashan, Allhabad. So also socialist realism was our ideology. But availability of stories compartible to our editorial principle was very much difficult as most of the writers were penning romantic stories. So we went on searching for stories in other Indian languages. So almost 50 % space was given to translated stories from various Indian languages. But on many occasions we found that writers chose Bengalee stories to translate thinking that to be easy.But my opinion is different. Due to many similarities such translation may seem easier but actually it is not so. A little carelessness in translation will cause serious damage to our language. It has so happened in case of many noted translations. And also in seventies mostly back ground of Bengalee stories were metropolitan Calcutta and such back ground was novel and fascinating to Oriya readers but socio-economic reality were very different. So I had to go for searchig stories in Hindi and I myself took up the work of translation. These stories were published in ADHUNA. Out of unsold copies formats were collected and a small number of books were prepared under captions like SRESTHA TELUGU GALPA, SRESTHA MALAYALAM GALPA, SRESTHA HINDI GALPA.

The present collection is made entirely selecting some good stories translated and published in ADHUNA during last 20 years. But mostly stories written in ninties have been compiled.

I am grateful to those who have permitted me to translate, But I confess my guilt as a few stories are there for which I have not received permission due to missing link (Hrudayesh of Bneria (U.P) is one of them) but due to merit of the stories I am tempted to put these stories before our readers. For this great wrong I hope these magnanimous writers shall excuse me, considering the genuine motive behind the blunder.

Lastly I must request readers to be kind & sympathetic in accepting my tiny venture.

Jai Jagannath

11. 5. 1998 **P. K. Rath**

---

## କ୍ଷମା ପ୍ରାର୍ଥନା

ମୁଦ୍ରଣଗତ ତ୍ରୁଟି ହେତୁ ଏହି ପୁସ୍ତକରେ ୧୫ ତମ ଓ ୧୬ ତମ ପୃଷ୍ଠାଙ୍କ ଦେବାରେ ଭୁଲ୍ ହୋଇଯାଆନ୍ତେ ୩୨ କ ଓ ୩୨ ଖ କ୍ରମରେ ଦୁଇପୃଷ୍ଠା ମୁଦ୍ରିତ ହୋଇଅଛି । ଏହି ଭୁଲ ପାଇଁ ପାଠକମାନେ କ୍ଷମା କରିବେ ବୋଲି ନିବେଦନ ।

---

# କହିବାର କଥା

ଅନୁବାଦ ଗଳ୍ପମାଳା ପ୍ରକାଶନ କ୍ଷେତ୍ରରେ ଏହା ମୋର ଚତୁର୍ଥ ଉଦ୍ୟମ । ପୂର୍ବରୁ ଶ୍ରେଷ୍ଠ ହିନ୍ଦୀ ଗଳ୍ପ, ଶ୍ରେଷ୍ଠ ତେଲୁଗୁ ଗଳ୍ପ ଓ ଶ୍ରେଷ୍ଠ ମଲୟାଲମ ଗଳ୍ପ ପ୍ରକାଶ ପାଇଅଛି । ଗଳ୍ପଗୁଡ଼ିକ ଅଧୁନା ଗଳ୍ପ ପତ୍ରିକାରେ ପ୍ରକାଶିତ ହୋଇଥିଲା ଓ ପାଠକମାନେ ଏହାକୁ ଆଗ୍ରହର ସହ ଗ୍ରହଣ କରିଥିଲେ । ମେଧାନ୍ୱେଷଣ, ଘରର ଡାକ ଏବଂ ଏକ ମର୍ମାନ୍ତକ ବିଳାପ ଶୀର୍ଷକ ଗଳ୍ପ ତିନୋଟିରେ ଲେଖକମାନେ ବୌଦ୍ଧିକ ପରୀକ୍ଷା ନିରୀକ୍ଷା କରିଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ନିଶ, ଜଣେ ପି.ଏ.ଙ୍କ କଲମରୁ, ସଦା ସଦା ଭବନ୍ତୁ ନିର୍ବାଚନ ମହୋତ୍ସବରତେ, ଆମେ ଭଦ୍ରଙ୍କର ଭଦ୍ର ଆମର, ସ୍କୁଲ ଆର୍ଯ୍ୟ ପୁତ୍ର ରାଯ୍ବହାଦୁର ସ୍କୁଲ, କି ହେଲାରେ ଆହା ବ୍ୟଙ୍ଗ ଗଳ୍ପରେ ମୁଖ୍ୟତଃ ରାଜନୈତିକ ସ୍ଥିତିକୁ ବ୍ୟଙ୍ଗ କରାଯାଇଅଛି । ରାଜେନ୍ଦ୍ର କୁମାରଙ୍କର ଦୁଇଟି ଗଳ୍ପ ଯଥା ବହୁରୂପୀ ଓ ଡର ୧୯୭୦ ମସିହାରେ ରଚିତ । ଏହି ଗଳ୍ପ ଦ୍ୱୟରେ ଆଧୁନିକ ମଣିଷର ଜଟିଳ ବ୍ୟକ୍ତିତ୍ୱର ରହସ୍ୟ ଉନ୍ମୋଚିତ । ଅରୁଣା ଶାସ୍ତ୍ରୀଙ୍କର 'କେବଳ ପ୍ରକୃତିମାନଙ୍କୁ ଆଶ୍ରୟ କର' ଗୋଟିଏ ବଶିଷ୍ଟ ପ୍ରେମ ଗଳ୍ପ ।

ଅନେକ ସମୟରେ ଅନୁବାଦ ଗଳ୍ପର ଉପଯୋଗିତା ନେଇ ପ୍ରଶ୍ନ କରାଯାଉଛି ସତ୍ୟ ମାତ୍ର ପାଠକମାନଙ୍କୁ ଏହି ଗଳ୍ପଗୁଡ଼ିକ ଆନନ୍ଦ ଦେଉଥିବାର ମୁଁ ଜାଣୁଛି । ଭାଷା ଶୈଳୀ ଏବଂ ଭାବ ଦୃଷ୍ଟିରୁ ଆମେ କେତେକ ନୂଆ କଥା ପାଠକମାନଙ୍କୁ ଜଣାଇ ପାରୁଛେ । ଏବେ ସାନ ବଡ଼ ହୋଇ ୧୩୪ ଜଣ ଓଡ଼ିଆ ଲେଖକ ଗଳ୍ପ ରଚନାରେ ମନୋନିବେଶ କରିଛନ୍ତି । ଯେ କୌଣସି ବର୍ଷର ପୂଜା ସଂଖ୍ୟା ଗୁଡ଼ିକରେ ପ୍ରାୟ ତିନିଶହ ଗଳ୍ପ ପ୍ରକାଶ ପାଉଛି । ଜଣେ ଜଣେ ଲେଖକ ଏହିସମୟରେ ତାଙ୍କର ଷ୍ଟକ୍ ଖାଲି କରି ଦେଇଥିଲା ପରି ମନେ ହେଉଛି । ସେମାନେ ବାର ଚଉଦଟି ପତ୍ରିକାକୁ ଗଳ୍ପ ଦେଉଛନ୍ତି । ଏହି ଗଳ୍ପଗୁଡ଼ିକରୁ ମୁଁ ସାଂପ୍ରତିକ ଓଡ଼ିଆ ଗଳ୍ପର ଧାରା ଠାବ କରିବା ପାଇଁ ଆଲୋଚନା ଅଧୁନାରେ ଲେଖୁଥିଲି । ଫଳରେ ଏବର ଓଡ଼ିଆ ଗଳ୍ପ ସାହିତ୍ୟର ଧାରା ପ୍ରତି ମୋର ଅନ୍ତରଙ୍ଗ ପରିଚୟ ଥିବାରୁ ମୁଁ ଏହା ମଧ୍ୟ ଜୋର ଦେଇ କହିପାରେ ଯେ ଅନୁବାଦ ଗଳ୍ପ ପ୍ରକାଶିତ

ହେଲେ ଆମ ଲେଖକମାନେ ଭାବ ସଂପ୍ରସାରଣ ବା ଭାବଗତ ଘଟନାବସ୍ଥା ନିମିତ୍ତ ଅଧିକ ସୁଯୋଗ ପାଇବେ । ଏପରି କେତେକ ଗଳ୍ପ ଅନ୍ୟ ଭାଷାରେ ଅଛି ଯାହାର ବିଷୟ ବସ୍ତୁକୁ ନେଇ ଆମ ଓଡ଼ିଆ ଲେଖକ ମଧ୍ୟ କଲମ ଚଳେଇଛନ୍ତି । ଏ କ୍ଷେତ୍ରରେ ତୁଳନାତ୍ମକ ଅଧ୍ୟୟନ ଓ ତଜ୍ଜନିତ ଉତ୍କର୍ଷା-ପକର୍ଷ ନିରୂପଣର ସୁଯୋଗ ଆମେ ପାଇବା ।

ମୌଳିକ ଗଳ୍ପ ପ୍ରାପ୍ତିର ଅଭାବ ଓ ଏକାଧିକ ନୂତନ ସମ୍ବାଦ ପତ୍ରର ପ୍ରକାଶନ ହେତୁ ଅନୁବାଦ ଗଳ୍ପକୁ ମଧ୍ୟ ରେଡ଼ିଷ୍ଟକ ଭାବରେ ବ୍ୟବହାର କରାଯାଇପାରେ । କରାଯାଉଅଛି ମଧ୍ୟ । ମାତ୍ର ଆମର ଅନୁବାଦକମାନେ ସବୁ ସମୟରେ ସାବଧାନ ନରହିବା ଫଳରେ ଅନୁବାଦ ରସୋତ୍ତୀର୍ଣ୍ଣ ହେଉ ନାହିଁ । ବଙ୍ଗଳାରୁ ଓଡ଼ିଆକୁ ଅନୁବାଦ କରିବା ସହଜ ବୋଲି ମନେକରି ଅନେକ ବହୁ ପୁସ୍ତକ ଅନୁବାଦ କରିଛନ୍ତି, ଅନୁବାଦଗୁଡ଼ିକ ପୁସ୍ତକାକାରରେ ପ୍ରକାଶିତ । ଅନୁବାଦକ ମଧ୍ୟ ପ୍ରତିଷ୍ଠିତ ସଂସ୍ଥା ଦ୍ୱାରା ପୁରସ୍କୃତ । ମାତ୍ର ଗଭୀର କ୍ଷୋଭର ବିଷୟ ଯେ ବଙ୍ଗଳାରୁ ଓଡ଼ିଆକୁ ଅନୁବାଦ କଲାବେଳେ ଅନବଧାନତା ହେତୁ ଭାଷାଗତ ବିକୃତି ଘଟି ଯାଇଅଛି ।

ଏହା କହିବାର ଉଦ୍ଦେଶ୍ୟ ଅନୁବାଦ କରିବା ଏକ ସିଧିସଳଖ ଉଦ୍ୟମ ନୁହେଁ । ସାବଧାନତା, ଭାଷା ଉପରେ ଦକ୍ଷତା, ବହୁତ ଅଧ୍ୟୟନ ତଥା ଗଳ୍ପ ନିର୍ବାଚନ ନିମିତ୍ତ ଅନୁବାଦକଙ୍କର ମୌଳିକ ବିଚାର ରହିବା ଦରକାର । ଏହି ତତ୍ତ୍ୱକୁ ଆଧାର କରି ମୁଁ ଏହି କର୍ମରେ ନିଜକୁ ନିୟୋଜିତ କରିଛି । କେତେଦୂର ମୁଁ ସଫଳ ହୋଇଛି ତାହାର ବିଚାର ଆପଣମାନଙ୍କ ଉପରେ ଛାଡ଼ି ଦେଉଛି ।

ପ୍ରତିବଦନ ଆୟୁର୍ନିଶ୍ୟନ୍ତ ପଶ୍ୟତାଂ । ତଥାପି ବେଳେ ବେଳେ ଇଚ୍ଛା ହେଉଛି ମୁଁ ପଢି ନିର୍ବାଚିତ କରିଥିବା ଆଉ ପ୍ରାୟ ପାଞ୍ଚଶହ ଗଳ୍ପକୁ ଅନୁବାଦ କରି ପକାନ୍ତି । ଏହି ଇଚ୍ଛା ଚରିତାର୍ଥ ହେବ କି ନାହିଁ କହି ପାରୁ ନାହିଁ । ତେବେ ବଙ୍ଗଳା ଗଳ୍ପ ଅନୁବାଦ କରିବାକୁ ଚେଷ୍ଟା କରୁଛି । ପରମ କାରୁଣିକ ସର୍ବମଙ୍ଗଳମୟ ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କର କୃପା ନହେଲେ ମନୋରଥ ସାର୍ଥ ହେବାର ନୁହେଁ ଏଣୁ ତାଙ୍କର ଦୟାଭିକ୍ଷା କରି ରହିଛି ।

ପୁରୀ
୧୦ । ୫ । ୯୮

**ପ୍ରଫୁଲ୍ଲ କୁମାର ରଥ**

# ଯଦା ଯଦା ଭବତି ନିର୍ବାଚନ ମହାଭାରତେ

□ ପ୍ରେମ ଜନ୍ମେଜୟ

ଆମ୍ଭକର ଅଧିକାଂଶଙ୍କ ପରି ଆଜିକାଲି ଗଣତନ୍ତ୍ର ବିଭିନ୍ନ ସ୍ଥାନରେ ଚଢ଼ାଉ ଆରମ୍ଭ କରି ଦେଇଛି । ଦ୍ୱାପର ଯୁଗରେ ଯଦି ସେହିଭଳି ଭୋଟାଏ ଅଧେ ଚଢ଼ାଉ କରିଥାଆନ୍ତା ତେବେ କିବା ଅଘଟଣ ହୋଇଥାଆନ୍ତା ଯେ ? ବରଂ ସବୁ ଦୋଷତ୍ରୁଟି ସଜାଡ଼ି ହୋଇଯାଇଥାଆନ୍ତା । ଦୁଇଭାଇଙ୍କ ମଧ୍ୟରେ ଯୁଦ୍ଧ । ଯୁଦ୍ଧରେ ନିଜେ ତ ଯାହା ସର୍ବନାଶ ହେଲେ ହେଲେ, ଓଲଟି ବିଚରା ସାଧାରଣ ଜନତାଙ୍କୁ ମଧ୍ୟ ସାଙ୍ଗରେ ନେଇ ବୁଡ଼ିମଲେ । ଆରେ ବାବୁ ! କ୍ଷମତା ପାଇଁ ଯଦି କୌରବ ପାଣ୍ଡବଙ୍କ ଭିତରେ ଲଢ଼େଇ ହେଲା ତାହାହେଲେ ତ ନିର୍ବାଚନଟାଏ କରେଇ ଦେଇଥାଆନ୍ତେ । ସେଇଥି ପାଇଁ ଭାବୁଛି ଦ୍ୱାପର ଯୁଗରେ ଯଦି ଗଣତନ୍ତ୍ର ପ୍ରତିଷ୍ଠା କରାଯାଇଥାଆନ୍ତା, ତାହାହେଲେ ଭୟଙ୍କର ମହାଭାରତ ଯୁଦ୍ଧ କେବେହେଲେ ଘଟିନଥାନ୍ତା । ଏତେ ରକ୍ତପାତ, ଏତେ ହତ୍ୟା, ମୃତ୍ୟୁ, ଗ୍ଲାନି ଭୋଗକରିବାକୁ ପଡ଼ିନଥାନ୍ତା । ବରଂ ଆମେ ମହାଭାରତଙ୍କୁ ନିର୍ବାଚନର ଦୃଷ୍ଟାନ୍ତଟିଏ ପାଇ ପାରିଥାଆନ୍ତେ ।

ଏପରି ଭାବନ୍ତୁ ନାହିଁ ଯେ ନିର୍ବାଚନ ହୋଇଥିଲେ ମୂଳସମୀକରଣ ବଦଳି ଯାଇଥାଆନ୍ତା । କାରଣ ଯୁଦ୍ଧରେ ପରିଣତି ଯାହାହେଲା ନିର୍ବାଚନ ହୋଇଥିଲେ ତାହାହିଁ ହୋଇଥାଆନ୍ତା, କିନ୍ତୁ ଗଣତାନ୍ତ୍ରିକ ପଦ୍ଧତିରେ ହୋଇଥାଆନ୍ତା । ମାଗଣାରେ ଲକ୍ଷ ଲକ୍ଷ ଲୋକଙ୍କର ରକ୍ତ ବୋହିଯାଇନଥାନ୍ତା । ସେଇଥିପାଇଁ ଭାବୁଛି ମହାଭାରତୀୟ ନିର୍ବାଚନରେ କ'ଣ କ'ଣ ସବୁ ଘଟିଥାଆନ୍ତା । ମୁଁ କେବଳ ସୂତ୍ର ବାହାର କରୁଛି । ଆପଣ ଚାହିଁଲେ ସେଇ ସେଇ ସୂତ୍ରକୁ ବିସ୍ତାର କରି ମହାକାବ୍ୟ ବା ମହାଉପନ୍ୟାସ ଲେଖିପାରନ୍ତି ।

ନିର୍ବାଚନର ପାଲି ମେଲା ହୋଇପଡ଼ିଛି । ମାମୁଁ (ଶ୍ରୀ ନାହିଁ) ଶକୁନି ଯେକୌଣସି ପ୍ରକାରେ ନିର୍ବାଚନ ଜିତିବା ଫନ୍ଦିରେ ମସଗୁଲ ଅଛନ୍ତି । ଯୁଧିଷ୍ଠିର ନ୍ୟାୟୋଚିତ ପନ୍ଥାରେ ଜିତିବା ପାଇଁ ଚାରିଭାଇଙ୍କ ସହିତ ଜୋରସୋରରେ ପ୍ରଚାର ଚଳେଇଛନ୍ତି ।

ଯୁଧିଷ୍ଠିର ମଧ୍ୟବର୍ତ୍ତୀକାଳୀନ ନିର୍ବାଚନୀ ଜୁଆ ଖେଳିବା ପାଇଁ ପ୍ରସ୍ତୁତ ହେଉଛନ୍ତି । ଅନ୍ୟ ସବୁ ଭାଇ ବୁଝୁଛନ୍ତି ଯେ ଏଥିରେ କାପଟ୍ୟ ଆଚରଣ ହେବ । ହେଲେ ନିଜର ଇଣ୍ଟେଲିଜେନ୍ସ ଉପରେ ଯୁଧିଷ୍ଠିରଙ୍କର ପ୍ରବଳ ଆସ୍ଥା ରହିଛି । ସେ ଜୁଆ ଖେଳିବା ନିମିତ୍ତ ସର୍ବଶେଷ ସିଦ୍ଧାନ୍ତ ନେଇ ସାରିଛନ୍ତି । ଯୁଧିଷ୍ଠିର ହେଉଛନ୍ତି ହାଇକମାଣ୍ଡ, ଏଣୁ ତାଙ୍କ ନିଷ୍ପତ୍ତି ବିରୁଦ୍ଧରେ ଯେତେ ଯାହା ହେଲେ ମଧ୍ୟ କିଛି କରାଯାଇପାରିବ ନାହିଁ । ହାଇକମାଣ୍ଡ ଜିନିଷଟା ହିଁ ସେଇଆ ଯାହା ସମ୍ମୁଖରେ ବହୁ ପରାକ୍ରମୀ ଯୋଦ୍ଧା ଶିଖଣ୍ଡୀ ପାଲଟି ଯାଆନ୍ତି । କେତେକ ଧୃତରାଷ୍ଟ୍ର ହୋଇଯାଆନ୍ତି; ସେମାନେ ତାହାହିଁ ଦେଖନ୍ତି ଓ ଶୁଣନ୍ତି ଯାହା ହସ୍ତିନୀ ଦେଖାନ୍ତି ଓ ଶୁଣାନ୍ତି । ମହାଭାରତ ଦେଖିଲେ ଜଣାଯାଏ ଯେ ବଡ଼ଭାଇ ହେଉଛନ୍ତି ହାଇକମାଣ୍ଡ, ଯାହାଙ୍କ ପାଖରେ ସମସ୍ତ ଅଧିକାର ଥାଏ, ମାତ୍ର ସାମାନ୍ୟତମ କର୍ତ୍ତବ୍ୟ ବୋଲି କିଛି ନଥାଏ ।

ସେପଟେ ଦୁର୍ଯ୍ୟୋଧନ, କର୍ଣ୍ଣ ଏବଂ ଦୁଃଶାସନ ଭାଇଙ୍କର ଖବରରେ ଚିନ୍ତିତ ହୋଇ ପଡ଼ିଛନ୍ତି ଅଥଚ ମାମୁଁ ଶକୁନି ହସ ହସ ମୁଖରେ ଘୂରି ବୁଲୁଛନ୍ତି । ରାଜନୀତିରେ ଏହି ଭଳିଆ ମାମୁଁ ମାନଙ୍କର ପ୍ରୟୋଜନୀୟତା ଯଥେଷ୍ଟ ବେଶୀ ଯେଉଁମାନେ ନିଜ ଲୋକଙ୍କୁ କ୍ଷମତାରେ ବସେଇ ଦିଅନ୍ତି ଅଥଚ କ୍ଷମତାର ଡୋରକୁ ନିଜ ହାତରେ ରଖି ମନଇଚ୍ଛା ନଚେଇ ପାରନ୍ତି । ବାଘ୍ର ଗାଦିରେ ବସିଥିବା ଲୋକଟି ଗାଳିମନ୍ଦ ଖାଉଥାଏ ଓ ମାମୁଁଟି ପାଉଥାଏ ପରମାନନ୍ଦ ।

ଏମନ୍ତେ ମାମୁଁଙ୍କୁ ପ୍ରଶ୍ନକଲେ ଦୁର୍ଯ୍ୟୋଧନ, "ମାମୁଁ, ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ତ ଘୋଷଣା କରାଗଲା । ହେଲେ ଏବେ ଅମେ ଏ ନିର୍ବାଚନ ଜିତିବା କେମିତି ? ଆମକୁ କିଏ ଭୋଟ ଦେବ ?

ମାମୁଁ ହସି ହସି ଉତ୍ତର ଦେଲେ, "କେହି ଭୋଟଦେବେ ନାହିଁରେ ଭଣଜା ! କେହି ଭୋଟ ଦେବେନାହିଁ ।"

"ତାହାହେଲେ ଆପଣ କେଉଁ ବଳରେ ନିର୍ବାଚନ ଘୋଷଣା କରାଇ ପକେଇଲେ ? ଆମେ ଯଦି ଜାଣିଥାଆନ୍ତୁ......" ଦୁଃଶାସନ ରାଗି ପାଚି ଲାଲ ହୋଇଗଲେ ।

"ଶାନ୍ତ ହୁଅ ଭଣଜା ! ଶାନ୍ତ, ଯଦି ଭୋଟ ପାଇ ଜିତାଜିତି ହେଉଥାଆନ୍ତା ତେବେ ଏ ମାମୁଁ କେଉଁ କାମରେ ଆସନ୍ତା ? ଗୋଟାଏ କଥା ବୁଝିଥାଅ, ଗଣତନ୍ତ୍ରରେ ଯୋଡ଼ିଏ ଜିନିଷ ମୁଖ୍ୟ, ଭୋଟ ଏବଂ ନୋଟ । ନୋଟ ବୃକ୍ଷ ଓ ଭୋଟ ଶିକ୍ଷ ।" ମାମୁଁ ହାତମଲି ଚାଲିଥିଲେ ଓ ଭଣଜାଙ୍କୁ ବୁଝେଇ ଲାଗିଥିଲେ ।

"ହେଲେ ମାମୁଁ, ନୋଟ ବଦଳରେ ଭୋଟ କିଏ ଦେବ ? ସବୁ ଶିଳେ ତ ପରମ ସତ୍ୟବାଦୀ ହୋଇଯାଇଛନ୍ତି ।"

"ଭଣଜା ! ଭୋଟ କେହି ଦେବେନାହିଁ । ନୋଟ ଦେଇ ଆମେ ଭୋଟକ୍ରୁପିବା । କେମିତି କ୍ରୁପିବା ସେକଥା ତୁମେ ମୋ ଉପରେ ଛାଡିଦିଅ ।" ମାମୁଁ ଏକ ରହସ୍ୟମୟ ହସ ହସିଲେ ।

ଶକୁନି ମାମୁଁ ଭୋଟଗ୍ରହଣ କେନ୍ଦ୍ରକୁ ଦଖଲ କରିବାରେ ଓସ୍ତାଦ । ତାଙ୍କ ପାଖରେ ଭୋଟ ବାକ୍ସ ଜବରଦ୍ଦସ୍ତ କରିନେବାର ବିଶାଳ ଲୋକବାହିନୀ ଅଛି । ତେଣେ ପାଣ୍ଡବ ଭାଇମାନେ ଗଲି ଗଲି ବୁଲି କରି ନିର୍ବାଚନ ପ୍ରଚାର କରୁଛନ୍ତି । ଅଥଚ ଏଣେ ମାମୁଁ ସବୁ ଅଡ୍ଡା ଗୁଡ଼ାକରେ ବୁଲୁଛନ୍ତି ।

ଭୋଟ ସରିଲା । ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଯୁଧିଷ୍ଠିର ହାରିଗଲେ । ଆମ ଗଣତନ୍ତ୍ରରେ ଯେମିତି ହୁଏ । ଯୁଧିଷ୍ଠିରଙ୍କ ବିରୁଦ୍ଧରେ ତଦନ୍ତ କମିଶନ ବସିଲା । ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ ପ୍ରମୁଖ ଏହି କମିଶନର ସଦସ୍ୟ ରହିଛନ୍ତି । ଏମାନେ ସମସ୍ତେ "ମୁଁ କ'ଣ କରିବି" ବୋଲି ଷଡ଼ାକ୍ଷର ମନ୍ତ୍ର ଜପୁଛନ୍ତି ଓ ହାଇକମାଣ୍ଡ ପାଖକୁ ଚିଠି ପରେ ଚିଠି ଲେଖିଚାଲିଛନ୍ତି । ହେଲେ ହାଇକମାଣ୍ଡ କଅଣ ଗୋଟିଏ ହେଲେ ଚିଠିର ଉତ୍ତର ଦେବେ ? ଏମାନେ ଯେତେ ବୁଢ଼ା ହେଲେ ମଧ୍ୟ କ୍ଷମତାର ନିଶା ବଢ଼ୁଛି ସିନା କମୁନାହିଁ । ତଦନ୍ତ ଆୟୋଗ ପାଣ୍ଡବମାନଙ୍କୁ ବନବାସ ଏବଂ ଅଜ୍ଞାତବାସ ଯିବାପାଇଁ ରାୟ ଦେଇଦେଇଛି ।

ପାଣ୍ଡବମାନେ ତେର ବର୍ଷ କାଳ ରାଜନୀତିରୁ ବାହାରେ ରହିଲାପରେ ଇନ୍ଦ୍ରପ୍ରସ୍ଥରେ ନିଜ ସରକାର ଗଢ଼ିବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି । କିନ୍ତୁ ଦୁର୍ଯ୍ୟୋଧନଙ୍କ ସପକ୍ଷରେ ଦୁଇ ତୃତୀୟାଂଶ ସମର୍ଥନ ଥିବାରୁ ସେ ଆଉ ନିର୍ବାଚନ କରାଇବାକୁ ପ୍ରସ୍ତୁତ ନୁହନ୍ତି । କୃଷ୍ଣ ଦୁର୍ଯ୍ୟୋଧନ ନିକଟକୁ ଆପୋଷ ସମାଧାନର ପ୍ରସ୍ତାବ ନେଇଯାଉଛନ୍ତି । "ହେ ଦୁର୍ଯ୍ୟୋଧନ ! ତୁମେ ଯଦି ତୁମ ମନ୍ତ୍ରୀମଣ୍ଡଳରେ ପାଣ୍ଡବମାନଙ୍କୁ ପାଞ୍ଚଟି ମିନିଷ୍ଟ୍ରି ଦେଇଦେବ ତେବେ ଆମେ ନିର୍ବାଚନ ଲଢ଼ିବୁ ନାହିଁ ।" କୃଷ୍ଣ କହୁଛନ୍ତି ।

"ପାଞ୍ଚଟା ହାଲିଗର ମନ୍ତ୍ରୀତ୍ୱ । ଏମ ଏଲ.ଏ ସିଟ୍ଟାଏ ମଧ୍ୟ ଦେବିନାହିଁ ।

ଅତଃପର କୃଷ୍ଣ ଫେରିଯାଉଛନ୍ତି ଓ ମହାଭାରତୀୟ ନିର୍ବାଚନ ଆରମ୍ଭ ହୋଇଯାଉଛି ।

ନିର୍ବାଚନ ଘୋଷଣା କରାଯାଉଛି । ପ୍ରାର୍ଥୀପତ୍ର ଦାଖଲ କରାଯାଉଛି, ଭୀଷ୍ମ, ଦ୍ରୋଣ କୃପାଚାର୍ଯ୍ୟ ଆଦି ନିଜର ଇଚ୍ଛା ନଥିଲେ ମଧ୍ୟ ଦୁର୍ଯ୍ୟୋଧନଦଳ ପକ୍ଷରୁ ପ୍ରାର୍ଥୀପତ୍ର ଦାଖଲ କରୁଛନ୍ତି । ଗଣତନ୍ତ୍ର ହେବା ଫଳରେ ସେମାନଙ୍କର ସୁବିଧା ବହୁତ, ଦ୍ୱିଧାର ପ୍ରଶ୍ନ ନାହିଁ । କାରଣ ଗୁପ୍ତ ଭୋଟ ପ୍ରକ୍ରିୟାରେ ସେମାନେ ସେମାନଙ୍କର ଭୋଟ ପାଣ୍ଡବ ପକ୍ଷରେ ଦେଇପାରିବେ ।

ହେଲେ, ଇଏଁ କ'ଣ ହେଲା ? ନିର୍ବାଚନର ଅସଲ ମୁହୂର୍ତ୍ତରେ ଅର୍ଜ୍ଜୁନ ମୋହଗ୍ରସ୍ତ ହୋଇ ପଡ଼ିଲେ । ଏମନ୍ତ ସଙ୍କଟସନ୍ଧି ବେଳାରେ ଶ୍ରୀକୃଷ୍ଣ ନିର୍ବାଚନୀ ଗୀତା ବ୍ୟାଖ୍ୟାନ କଲେ । ଏହି ସେହି ପରମ ପବିତ୍ର ଗୀତା, ଯାହାକୁ ସବୁ ନେତା ପ୍ରଣାମ କରନ୍ତି, ପ୍ରତିଟି ମନ୍ତ୍ରୀ ଦୈନନ୍ଦିନ ପ୍ରାତଃକାଳରେ ପାଠ କରନ୍ତି । ସେହି ଗୀତାକୁ ମୁଁ ପ୍ରେମ ଜନେଜନଙ୍କ ଅପଣମାନଙ୍କୁ କହୁଛି । ଏହି ଗୀତା ପାଠକଲେ ମନରେ ସାମାନ୍ୟତମ ଗ୍ଲାନି ଆସିବ ନାହିଁ । ପାଠକ ବରଂ ଅର୍ଜ୍ଜୁନ ପାଲଟିଯିବ । ତାହାର ଲକ୍ଷ୍ୟ ମନ୍ତ୍ରୀରୂପୀ ପକ୍ଷୀଟି ଉପରେ ସ୍ଥିର ନିବଦ୍ଧ ରହିବ । ଏଣୁ ଯେଉଁ ସଜ୍ଜନ ଦୁର୍ଜନ ହେବା ନିମିତ୍ତ ରାଜନୀତିରେ ପ୍ରବେଶ କରିବା ପାଇଁ ଚାହୁଁଛନ୍ତି ସେ ନିଶ୍ଚିତ ଭାବରେ ଏହି ଗୀତା ପାଠ କରିବା ବିଧେୟ,

ନିର୍ବାଚନୀ ଗୀତା

ଅର୍ଜ୍ଜୁନ ଉବାଚ : ହେ ପ୍ରଭୁ ! ମୁଁ ଏବେ ଆସି କେଉଁଠି ପହଞ୍ଚିଲି ? ଏହି ନିର୍ବାଚନରେ ତ ମୋର ସମସ୍ତ ଆତ୍ମୀୟମାନେ ଲଢ଼ୁଛନ୍ତି । ପିତାମହ ଭୀଷ୍ମ, ଗୁରୁ ଦ୍ରୋଣାଚାର୍ଯ୍ୟ, ପରମ ପୂଜ୍ୟ ବିଦୁର ମହାଶୟ— ମୁଁ ଏମାନଙ୍କୁ ହରାଇ ସଂସଦକୁ ଯିବି ? ଏମାନଙ୍କ ବିରୁଦ୍ଧରେ ମୁଁ ଆଦୌ ନିର୍ବାଚନ ଲଢ଼ିବି ନାହିଁ । ମୋର ପ୍ରାର୍ଥୀପତ୍ର ନାକଚ କରିଦିଅନ୍ତୁ ପ୍ରଭୁ, ନହେଲେ ମୁଁ ବାଧ୍ୟହୋଇ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବି ।

କୃଷ୍ଣ ଉବାଚ : ହେ ଅର୍ଜ୍ଜୁନ ! କିଭଳି ଏହି ସମୟରେ ତୁମକୁ ମୋହଗ୍ରାସ କରିନେଲା ? ଏମାନେ କେହି ତୁମର ନୁହନ୍ତି । ଏମାନେ ତ ତୁମର ବିରୋଧୀ ଦଳର ନେତା । ରାଜନୀତିରେ କେହି ନିଜର ନୁହନ୍ତି । କାହାରି ସହିତ ରକ୍ତ ସମ୍ପର୍କ ରହେନାହିଁ । ଯିଏ ଭୋଟ ଦିଏ, ଯିଏ ମନ୍ତ୍ରୀପଦ ଦିଏ ସେ ହିଁ କେବଳ ନିଜର ହୋଇପାରେ । ଏଣୁ ଏସମସ୍ତ ତତ୍ତ୍ୱକୁ ହେଜି ତୁମେ ତୁମର ନିର୍ବାଚନ ଶଙ୍ଖ ବଜାଅ । ନିର୍ବାଚନ ଅଭିଯାନ ଆରମ୍ଭ କର । ନହେଲେ ତୁମେ କସ୍ମିନ୍ କାଳେ ମନ୍ତ୍ରୀପଦ ପାଇପାରିବ ନାହିଁ ।

ଅର୍ଜ୍ଜୁନ ଉବାଚ : ହେ ପ୍ରଭୁ ! ଏତ ମୋର ରକ୍ତ ସମ୍ପର୍କୀୟମାନଙ୍କୁ ପରାଜିତ କରି ଯେଉଁ ମନ୍ତ୍ରୀପଦ ପାଇବି ସେଥିରେ ମୋର କି ଲାଭ ହେବ ? ମନ୍ତ୍ରୀପଦର ମୋହରୁ ମୋତେ ମୁକ୍ତ କରନ୍ତୁ ।

କୃଷ୍ଣ ଉବାଚ : ହେ ସାଂସଦେ । ତୁମର ଏହି ମୋହ ମୂଲ୍ୟହୀନ, ଆମେ ଯେପରି ପ୍ରତିଦିନ ଲୁଗା ବଦଳାଉଛେ ଠିକ ସେହିପରି ଏ ମନ୍ତ୍ରୀପଦ ବ୍ୟକ୍ତି ବଦଳାଇ ଚାଲିଛି । ତୁମେ ମଧ୍ୟ ଚିରଦିନ ଏହି ପଦରେ ରହିବ ନାହିଁ । ଏଣୁ ପଦଟା ମିଳିଗଲାକ୍ଷଣି ତୁରନ୍ତ ତୁମେ ତୁମର ଲାଭ ମାରିନିଅ ଓ ଭାଇ ବନ୍ଧୁମାନଙ୍କୁ ଲାଭ ମାରିନେବାକୁ ସୁଯୋଗ ଦିଅ । ତୁମେ ବାପାଙ୍କ ପରି ଧୃତରାଷ୍ଟ୍ର ହୋଇଯାଅ । ତାହାହେଲେ ତୁମେ ନିଜକୁ ଜଣେ ସଫଳ ମନ୍ତ୍ରୀ କହିପାରିବ ।

ଅର୍ଜ୍ଜୁନ ଉବାଚ : ପ୍ରଭୁ ! ଏସବୁ କ'ଣ ଭୁଲ ନୁହଁ ?

କୃଷ୍ଣ ଉବାଚ : କିଛୁ ଭୁଲ ନୁହେଁ । ତୁମେ ଯାହା ସବୁ କରିବ, ଦେଶପାଇଁ କରିବ, ପାର୍ଟିପାଇଁ କରିବ । ଲାଞ୍ଚ ଖାଇବ ତ ଦେଶ ପାଇଁ ଖାଇବ । ଉପହାର ନେବ ତ, ପାର୍ଟି ପାଇଁ । ତୁମେ ତୁମର ସମସ୍ତ କାର୍ଯ୍ୟ ଦେଶ ଆଉ ଦଳ ପାଇଁ ସମର୍ପିତ କରିଦିଅ । ତୁମେ ଠିକ କରୁଛ କି ଭୁଲ, ସେ ଚିନ୍ତା ମନରୁ ପରିହାର କର । ଜନତା ସେ ସବୁ ଚିନ୍ତା କରୁଛନ୍ତି । ଏଣୁ ହେ ଅର୍ଜ୍ଜୁନ, ଲୋକମାନେ ଦେଶଟାକୁ ଲୁଟିନେବା ପୂର୍ବରୁ ତୁମେ ଲୁଟିନିଅ । ଏହା କହି ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ବିଶ୍ୱରୂପ ପ୍ରଦର୍ଶନ କଲେ । ଅର୍ଜ୍ଜୁନ ଦେଖିଲେ ଯେ ଶୁଭ୍ରବେଶୀମାନେ ସମଗ୍ର ଦେଶଟାକୁ ମିଳିମିଶି ଖାଇଯାଉଛନ୍ତି । ଏଥିରେ ଅର୍ଜ୍ଜୁନଙ୍କର ମୋହଭଙ୍ଗ ହେଲା ।

ପାଠକଗଣ ! ଏହି ନିର୍ବାଚନୀ ଗୀତାରୁ ଆପଣମାନଙ୍କର ମଧ୍ୟ ନିର୍ବାଚନ ସଂଗ୍ରାମ ସମ୍ପର୍କୀୟ ଜ୍ଞାନଲାଭ ହୋଇଥିବ । ଆପଣମାନେ ଅନ୍ୟ ସବୁ ଧନ୍ଦା ଛାଡ଼ି ରାଜନୀତିକୁ ଧନ୍ଦାରୂପେ ଗ୍ରହଣ କରନ୍ତୁ । ନହେଲେ ଶକୁନ ହୋଇଯାଆନ୍ତୁ ।

—*—

# ପୂଜ୍ୟ ପିତାମାନଙ୍କୁ କ୍ଷମାଯାଚନା ସହିତ

□ ଜ୍ଞାନ ଚତୁର୍ବେଦୀ

ହିନ୍ଦୀ ଗଳ୍ପ ଲେଖକମାନେ ଏବେ ସାବଧାନ ହେବା ଉଚିତ । ଆଉ ସେଦିନ ନାହିଁ ଯେତେବେଳେ ସାହିତ୍ୟ ସଂସାରର ପିତାମାତାଙ୍କ ଉପରେ କେବଳ ଗାଳ୍ପିକ ମାନଙ୍କର ଅଧିକାର ଥିଲା । କଲମଧାରୀ ପ୍ରତ୍ୟେକ ସିପାହୀ, ହାବିଲଦାର, ଥାନା ଅଧିକାରୀମାନେ ପିତାମାନଙ୍କ ପ୍ରସଙ୍ଗକୁ ବାନ୍ଧି କୋଡ଼ି କୋଡ଼ି କାହାଣୀ ଲେଖି ପକାନ୍ତି । ମାତ୍ର ଏବେ ଆଉ ସେ ଦିନ ନାହିଁ ବା ସେ ଲେଖକ ନାହାନ୍ତି । ଏବକୁ ବ୍ୟଙ୍ଗ ଲେଖକମାନେ ଆଗେଇ ଆସିଲେଣି । ପିତାମାନଙ୍କୁ ବ୍ୟଙ୍ଗକରି ବହି ଲେଖିବାର ନୂତନ ଯୁଗ ଆସିଗଲା ।

ମୁଁ ଅତ୍ୟନ୍ତ ଆନନ୍ଦର ସହ ଘୋଷଣା କରୁଛି ଯେ ଗଲା କେତେଦିନ ହେଲା ମୁଁ ମଧ୍ୟ ପିତାମାନଙ୍କ ଦିଗରେ ଦୃଢଗତିରେ ପାଦ ଆଗେଇ ଯାଇଛି । ମୁଁ ଏକଥା ମଧ୍ୟ ସ୍ଥିର କରିଛି ଯେ କିଛି ପାଦ ଆଗେଇ, କିଛି ପାଦ ପଛେଇ ଦେଶର ପ୍ରତ୍ୟେକ ପିତାମାନଙ୍କର ସେବା କରିବି । ପିତାମାନେ ନିର୍ଗୁଣ ନହେବା ଉଚିତ । ମୁଁ ଏବେ ସେମାନଙ୍କ ସହରର ପ୍ରସିଦ୍ଧ ଧର୍ମଶାଳାରେ ରହୁଛନ୍ତି, ସୁବିଖ୍ୟାତ ସାହିତ୍ୟିକ । ପିତାମାନଙ୍କର ସେବା କରିବାର ସୁଯୋଗ ମୋତେ ମିଳିଲେ ମୁଁ ସେମାନଙ୍କ ଉପରେ କେତେକ ବ୍ୟଙ୍ଗଗଳ୍ପର ବହି ଲେଖିବି ।

ଅବଶ୍ୟ ଏକଥା ସତ୍ୟ ଯେ ପିତାମାନେ ଖସି ପଳେଇବାକୁ ବାଟ ପାଇବେନାହିଁ । ମୋର କଳ୍ପିତ "ପିତା ସିରିଜ" ପୁସ୍ତକମାଳାର ପ୍ରଥମ ପୁଷ୍ପ ସେମାନଙ୍କୁ କ୍ଷମାଯାଚନା ସହିତ ସାଦର ସମର୍ପିତ ହେବ ।

ଭାରତ ପିତାମାନଙ୍କର ଜଙ୍ଗଲ । ଏହା ଏକ କୃଷି ପ୍ରଧାନ ଦେଶ ତଥା ଏଠାରେ ପିତାମାନଙ୍କର ଫସଲ ହେଉଛି ମୁଖ୍ୟ ଫସଲ । ପ୍ରତ୍ୟେକ ଉଦୀୟମାନ ଉତ୍ସାହୀ ନାଗରିକ ନିଜ କର୍ତ୍ତବ୍ୟ ସମ୍ପର୍କରେ ସଚେତନ ତଥା ପିତା ହେବାପାଇଁ ସେମାନେ ମୂଣ୍ଡଖାଲ ଭୂମିରେ ମାରି ଅହୋରାତ୍ର ପରିଶ୍ରମ କରନ୍ତି । ପିତା ହେବା

ପୂର୍ବରୁ ଜଣେ ଯାହାପାରେ ତାହା କରିପାରୁଥାଏ ମାତ୍ର ଥରେ ପିତା ହୋଇଗଲାପରେ ସେ ଏକ ସର୍ବସ୍ୱୀକୃତ ଆଚାର ସଂହିତାର ପରିଧି ଭିତରେ କାମ କରିବାକୁ ବାଧ୍ୟ ହୋଇଥାଏ। ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ମୋ ପରମପୂଜ୍ୟ ପିତା ଏହି ସଂହିତା ପ୍ରସ୍ତୁତକାରୀ ସଂସ୍ଥାପକ ମାନଙ୍କର ମଧ୍ୟ ପିତା ଥିଲେ। ଆଜି ତାଙ୍କ କଥା ମୋର ମନେପଡୁଛି।

ପିତାଙ୍କର ସ୍ମୃତି ଉଜ୍ଜୀବିତ ହୁଅନ୍ତେ ଅତୀତର ଦୁଇଟି ଅନୁଭୂତି ମୋତେ ପୁନଃ ଯନ୍ତ୍ରଣା ଦେବାରେ ଲାଗିଛି। ପ୍ରଥମ ଅନୁଭୂତି ହେଉଛି ଗୋଟିଏ ଝିଅ ସହିତ ମୋ ପ୍ରେମର ସମ୍ବନ୍ଧକୁ ପ୍ରେମର ପ୍ରଥମ ତଥା ଅନ୍ତିମ ଜନ୍ମ ବାର୍ଷିକୀ ଦିନ ଭାଙ୍ଗି ଦେଇଥିଲେ। ଶେଷକୁ ସେ ଝିଅଟି ଦ୍ୱାରା ମୋ ହାତରେ ରାକ୍ଷୀ ବନ୍ଧେଇ ଛାଡ଼ିଦେଇଥିଲେ। ପରେ ମୁଁ ଜାଣିପାରିଲି ଯେ ପ୍ରତ୍ୟେକ ଭାରତୀୟ ପିତା ନିଜ ନିଜ ପୁତ୍ରମାନଙ୍କୁ ପିଟିବାର ସ୍ୱର୍ଣ୍ଣ ସୁଯୋଗକୁ ଅପେକ୍ଷା କରିଥାଆନ୍ତି। 'ସୁଯୋଗ ନମିଳିଲେ ସୁଯୋଗଟିଏ ସୃଷ୍ଟି କରନ୍ତି। ପାଠପଢ଼ା, ଖେଳ, ନାଟକ, ଗଣତନ୍ତ୍ରର ଭବିଷ୍ୟତ—ଯେ କୌଣସି ବିଷୟରେ ପିଟି ପାରନ୍ତି। ମୋ ବାପାଙ୍କର ସିଦ୍ଧାନ୍ତ ଥିଲା ଯେ ମାଡ଼ ନଖାଇଲେ ପିଲା ମଣିଷ ହୋଇପାରିବନାହିଁ। ଗୁଡ଼ଲୁ, ଆଜି ଯଦି ସେ ଜୀବିତ ଥାଆନ୍ତେ ତାହାହେଲେ ନିଜ ଆଖିରେ ମୋତେ ହିନ୍ଦୀସାହିତ୍ୟରେ ପିଟାପିଟି କରୁଥିବାର ଦେଖି ବାଡ଼େଇବାର ଅଭ୍ୟାସ କ'ଣ ବୋଲି ବୁଝିପାରିଥାଆନ୍ତେ।

ମୋର ପରମ ପୂଜ୍ୟ ପିତାଶ୍ରୀ ଆମ ଅଞ୍ଚଳର ମୁକୁଟବିହୀନ ସମ୍ରାଟ ଥିଲେ। ପିଟିବାକୁ ଆରମ୍ଭ କଲେ ଆମ ତିନି ଭାଇଙ୍କ ଛଡ଼ା ପଡ଼ୋଶୀଘର ପିଲାମାନଙ୍କୁ ମଧ୍ୟ କଭର କରୁଥିଲେ। ଆମ ଘରର ଅଗଣାର ଅବସ୍ଥା ପଲାସୀର ଯୁଦ୍ଧକ୍ଷେତ୍ର ପାଲଟି ଯାଉଥିଲା ଓ ଘରର ବାରଣ୍ଡାଗୁଡ଼ାକ ଖାଇବର ଗିରିପଥ ପରି ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ। ପରେ ଯେତେବେଳେ ପଡ଼ୋଶୀଘର ଲୋକେ ତାଙ୍କ ପିଲାଙ୍କୁ ବାଡ଼େଇବାର ବିରୋଧ କରିବାକୁ ତାଙ୍କ ପାଖକୁ ଆସୁଥିଲେ ସେମାନଙ୍କୁ ମଧ୍ୟ ଉକ୍ତ ରଣଭୂମିରେ ମାଡ଼ ଖାଇବାକୁ ପଡ଼ୁଥିଲା। ପିତାଶ୍ରୀଙ୍କଠାରୁ ବେଶ କିଛି ଉତ୍ତମ ମଧ୍ୟମ ପାଇସାରିଲା ପରେ ଅର୍ଜିଲା କର୍ମଫଳତକ ପୁଣି ଫଳିଯାଉଥିଲା ସେମାନଙ୍କ ପିଲାମାନଙ୍କ ଉପରେ। ସଂକ୍ଷେପରେ କହିଲେ ସାରା ସାହିଟାରେ ଯୁଗପତ୍ ପ୍ରଥମ, ଦ୍ୱିତୀୟ ଏବଂ ତୃତୀୟ ମରହଟ୍ଟା ସମର ପରି ମାଡ଼ପିଟ ଲାଗିଯାଉଥିଲା। ଏବେ ବି ପୂର୍ବପରି ଅବସ୍ଥା ରହିଛି। ଭିଏତନାମର ବାଳକମାନେ ଏପରି ଆତଙ୍କିତ ଭାବରେ ବଢ଼ୁନଥିବେ, ଯେପରି ଭାରତୀୟ ପିଲାମାନଙ୍କୁ ବଢ଼ିବାକୁ ପଡ଼ୁଥାଏ।

ପିଲା ଖରାପ ହେବନାହିଁ ବୋଲି ପିଟାଯାଏ। ପିଟିବାରୁ ଯେଉଁ ସମୟ ବଳେ, ସେ ସମୟରେ ପିତାମାନେ ଅନୁସନ୍ଧାନ କରି ବସନ୍ତି ଯେ ପିଲାଟା ଖରାପ ହୋଇ ଯାଉନାହିଁ ତ? ସେମାନଙ୍କର ପ୍ରତି ମୁହୂର୍ତ୍ତରେ ଭୟଙ୍କର ସନ୍ଦେହ ଯେ, ପିଲାଟା

ଲେଫଟର ହୋଇଯାଉଛୁ । "ବୁଝିଲ, ପପ୍‌ପୁ ବୋଉ ! ଆଜି ପପ୍‌ପୁ କେମିତି କୋଳରେ ହସୁଥିଲା !" ଅଥବା "ପପ୍‌ପୁ ଗୀତ ଗାଉଥିଲା ।" "ପପ୍‌ପୁ ନିଃଶ୍ୱାସ ନେଉଥିଲା," "ପପ୍‌ପୁ ଚନ୍ଦ୍ର ଦେଖୁଥିଲା ।" "ପପ୍‌ପୁ ଦୁଇ ଗୋଡ଼ରେ ଗୁଳୁଥିଲା ।" "ପପ୍‌ପୁ ମୁଣ୍ଡରେ ବ୍ରାହ୍ମୀଅଁଳା ତେଲ ଲଗଉଥିଲୁ," "ପପ୍‌ପୁର ଦୁଇଟା କାନ," ଇତ୍ୟାଦି ଇତ୍ୟାଦି । ସେ କଂଗ୍ରେସଦଳର ନଥିଲେ, ନହେଲେ ପ୍ରତିଦିନ ମୋ ଉପରେ ଜିନାମାଇଟ କାଣ୍ଡ ପରି କୌଣସି ନା କୌଣସି ଆରୋପ କରିଥାଆନ୍ତେ । ତେବେ ତାଙ୍କର ବ୍ୟବହାର, କ୍ରିୟାକଳାପ ମୋଟାମୋଟି ଏଇ ଭଳିଆ ଥିଲା ।

ମୋ ପରମପୂଜ୍ୟ ପିତାଶ୍ରୀଙ୍କର ବଦ୍ଧମୂଳ ଧାରଣା ଥିଲା ଯେ ପିଲମାନଙ୍କୁ ସୁନ୍ଦର ଦାମିକା ପୋଷାକ ପିନ୍ଧିବାକୁ ଦେବାର ସିଧାସଳଖ ସମ୍ପର୍କ, ସେମାନଙ୍କୁ ଲେଫଟର କରିବା ସହିତ ରହିଅଛି । ଅନେକାଂଶରେ ବ୍ୟାକରଣ ଦୃଷ୍ଟିରୁ ଷ୍ଟିତ, ଏଣେ ଭଲ ପୋଷାକ ପିନ୍ଧ, ତେଣେ ନଷ୍ଟ ହୋଇଯାଅ । ସେ ମୋତେ କେବେ-ହେଲେ ଅଣ୍ଡର ଓଇଅରଠାରୁ ଦାମିକା ପୋଷାକ ପିନ୍ଧିବାକୁ ଦେଇ ନାହାନ୍ତି । ଯାପାବଳି ପରି ଶୁଭ ଅବସରରେ ମୋତେ ନୂଆ ଲୁଗାପଟା ନିଶ୍ଚିତ ଭାବରେ ଦିଆ ଯାଉଥିଲା । ତାଙ୍କର ପୁରୁଣା ଅଣ୍ଡର ଉଇଅର ଓ ପାଇଜାମାରେ ମୋର ନୂଆ "ବାବାସୁଟ" ପ୍ରସ୍ତୁତ ହେଉଥିଲା । ମା ଏବେ କହୁଛି ଯେ ପିତାଶ୍ରୀ ମୋତେ ସବୁଠୁ ବେଶୀ ସ୍ନେହ କରୁଥିଲେ । ନିଶ୍ଚୟ ମୋତେ ବେଶୀ ସ୍ନେହ କରୁଥିବେ, କାରଣ ପ୍ରାଥମିକ ବିଦ୍ୟାଳୟକୁ ଲମ୍ବି ଥିବା ରାସ୍ତାରେ ହିଁ ପିତାଶ୍ରୀଙ୍କର ଅଣ୍ଡର ଓଇଅରରୁ ପ୍ରସ୍ତୁତ ପୋଷାକ ପିନ୍ଧି ଗଲାବେଳେ ମୁଁ ମୋ ଶୁଷ୍କ ଜୀବନର ପ୍ରଥମ ପ୍ରେମର ସ୍ପର୍ଶ ଅନୁଭବ କରିଥିଲି । ନାୟିକା ମଧ୍ୟ ତା ବାପାଙ୍କର ଅଣ୍ଡର ଉଇଅରରୁ ପ୍ରସ୍ତୁତ ପୋଷାକ ପିନ୍ଧି ସ୍କୁଲକୁ ଆସୁଥିଲା । ଏହି ଦୁଇ ଗେଲବସର ସନ୍ତାନଙ୍କର ପ୍ରେମ କାହାଣୀକୁ ବହୁ ଦୂରକୁ ଟାଣି ନେଉ ନେଉ ହଠାତ ସମାପ୍ତ ହୋଇଗଲା । ନାୟିକାର ଗଣିତଜ୍ଞାନ ଅତ୍ୟନ୍ତ ଉଦ୍‌ବେଗ ଜନକ ଥିଲା ଏଣୁ ତା'ର ବାପା ତାକୁ ସ୍କୁଲକୁ ଆଉ ନପଠେଇ ପଞ୍ଚମ ଶ୍ରେଣୀରେ ପଢୁଥିବା ଜଣେ ପ୍ରତିଭାଶାଳୀ ଛାତ୍ର ସହିତ ତା'ର ବାହାଘର କରେଇ ଦେଲେ । ଆଜି ତା'ର କଥା ବହୁତ ମନେ ପଡ଼ୁଛି । କିଏ ଜାଣେ ଏବେ ସେ କୋଉଠି । ମାତ୍ର ଏକଥା ସତ ଯେ ସେ ଯୋଉଠି ଥାଉନା କାହିଁକି, ଏବେ ମଧ୍ୟ ସେ ତା' ପିଲାଙ୍କ ପାଇଁ ବାପାଙ୍କର ପାଇଜାମାକୁ କାଟି ପିଲାଙ୍କ ପାଇଁ ପୋଷାକ ସିଲେଇ କରୁଥିବ ।

ହେଲେ ଗୋଟାଏ କଥା ଜମାରୁ ମନେ ପଡ଼ୁନାହିଁ । ମୁଁ କେବେ ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରିଥିଲି ବୋଲି ମୋର ଜମାରୁ ମନେ ପଡ଼ୁନାହିଁ । ପିତାମାନଙ୍କର ସବୁଦା ଗୋଟିଏ ଦୁଶ୍ଚିନ୍ତା ଯେ ପୁଅ ବିଗିଡ଼ିଯିବ । ସେଥିପାଇଁ

ପୁଅମାନଙ୍କୁ ସେମାନେ ଆଦୌ ମୂହଁ ଦେଉନଥିଲେ । ସମସ୍ତ ଦେଶର ପିତାମାନେ ନିଜ ମୁହଁକୁ ଘୋଡ଼େଇ ପକେଇଲାବେଳେ ପିଲାଙ୍କର ମୁହଁ ବାହାରି ନଯିବା ବାବଦରେ ପ୍ରତି ସତର୍କ ରହୁଥିଲେ । ଫଳରେ ପ୍ରତ୍ୟେକ ପିତା ଗୃହପଛ ଯୋଗାଯୋଗ ବିଚ୍ଛିନ୍ନ ଦ୍ୱୀପଟିଏ ପରି, ମାତ୍ର ପ୍ରତ୍ୟେକ ପୁତ୍ର ତ କଲମ୍ବସ ନୁହନ୍ତି ଯେ ନୌଯାତ୍ରାକରି ସେ ଦ୍ୱୀପରେ ପହଞ୍ଚିପାରିବେ ।

ମୋର ପରମପୂଜ୍ୟ ପିତାଶ୍ରୀ ରହସ୍ୟ ରୋମାଞ୍ଚ ଉପନ୍ୟାସରେ ବର୍ଣ୍ଣିତ ବିପଜ୍ଜନକ ଦ୍ୱୀପଟିଏ ଥିଲେ । ମୁଁ ତାଙ୍କ ସହିତ କେବେବି କଥା ହୋଇନାହିଁ । ଯଦିବା କେବେ କେମିତି ଭାରି ଖୁସି ହୋଇ କୁଲପି ଖାଇବାକୁ ତାଙ୍କୁ ପଇସା ମାଗିବାକୁ ଅସୁଥିଲି ତେବେ ମାଡ଼ ଖାଇ ଫେରିଯାଉଥିଲି । ଅବଶ୍ୟ ଏହାଠାରୁ ଆହୁରି କେତେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ କଥାବାର୍ତ୍ତା ଏକ ଧରାବନ୍ଧା ପାଟର୍ଣ୍ଣରେ ହେଉଥିଲା । ଉଦାହରଣ ସ୍ୱରୂପ ଫିସ୍ ପାଇଁ ଟଙ୍କା ମାଗିବାକୁ ହେବ । ପିତାଶ୍ରୀ ସମ୍ବାଦ ପତ୍ର ପଢୁଥିବେ । ପାଦ ଚପି ଚପି ମୋର ପ୍ରବେଶ । ଅନଧିକୃତ ସୀମା ସତେ ଯେମିତି ଅତିକ୍ରମଣ କରାଯାଉଛି ।

'ବାପା !'

''କ'ଣ ହେଲା ! କାହିଁକି ଅ.ସି ଏଠି ଫାଟରେଇ ହଉଛୁ ?''

''ତା .... ପା... .. ଦରମା......''

''.........          .........          ...... ...''

''.........          .........          .........''

''ଆବେ ଚୂପ୍ ହେଇ କାହିଁକି ଠିଆ ହେଇଛୁ ?

''ଆବେ. କ'ଣ କହିବା କଥା କହୁନୁ ? କହୁନୁ କ'ଣ ?''

''ବା......... ପା ........''

''କ'ଣ ବସି ଚାଁ ଚାଁ କରୁଛୁ ? ତୁଣ୍ଡରେ ପଟିବନ୍ଧା ହେଇଛି କି ?'

'' .....          ......          ......''

''......                    ......''

''କହିବୁନାହିଁ ତ, ନେ (ପଡ଼େ ଗୋଟେ ପାହାର) ପୁଣି ନେ (ଫେର ଗୋଟାଏ)

ସ୍କୁଲ ଫିସଠାରୁ ଆରମ୍ଭକରି ବାହା ବ୍ରତଘର ଉପର ବର୍ଣ୍ଣିତ ସଂବାଦ ପ୍ରକାରେ ସମାହିତ ହୋଇଥାଏ । ସାରା ଦେଶରେ ଏବେ ମଧ୍ୟ ହେଉଅଛି । ପ୍ରତ୍ୟେକ ଭାରତୀୟ ଯୁବକଙ୍କର କ୍ୟାରିଅର ତା'ର ବାପାମାନେ ସ୍ଥିର କରୁଛନ୍ତି ।-ପୁଅ ବାପାଙ୍କୁ ପଚାରେ, କ'ଣ ହେବ, ଅଧ୍ୟାପକ, ଡ଼ାକ୍ତର, ଇଂଜିନିଅର ? ବାପା ସ୍ଥିର କରନ୍ତି ଓ ପୁଅ

ଡାକ୍ତର ହୋଇଯାଏ । ଅଥବା ଅଧିକ ଯୋଗ୍ୟ ହେଲେ ତ ରେଭିନ୍ୟୁ ଇନସ୍‌ପେକ୍ଟର ହୋଇଯାଏ । ପୁଣି ପରୀକ୍ଷାରେ ଏବେ ଫିସ କେତେ ନେବ ? କୋଉଠି ଗୁଳକଣ୍ଟା କରିବ ? ଖୋଟ ଜନତା ପାର୍ଟିକୁ ଦେବ ନାଁ ନିଜ ପାଖରେ ରଖିନେବ ? ମୃତ୍ୟୁ ଶଯ୍ୟାରେ ପଡ଼ି ମଧ୍ୟ ବାପା ପରାମର୍ଶ ଦିଅନ୍ତି, "ପୁତ୍ର ! ତୁ ନିଜ ଜାତିର କଥା ସବୁବେଳେ ମନେରଖିବୁ । ଅନ୍ୟ ଜାତିର କର୍ମଚାରୀଙ୍କୁ ଫାନ୍ଦରେ ପକେଇବୁ ଯେମିତି ସେ ସସ୍‌ପେଣ୍ଡ ହୋଇଯାଏ । ଶତ୍ରୁମାନଙ୍କର ହାଡ଼ ଭଲକରି ଖଣ୍ଡି ଦେବୁ । ତେବେ ଯାଇ ପରଲୋକରେ ମୋ ଆତ୍ମା ଶାନ୍ତି ପାଇବ ।"

ପୁତ୍ରମାନେ ସାଙ୍ଗେ ଜୀବନ ବାପାଙ୍କର ଭ୍ରମଧାରଣାକୁ ପୁଷ୍ଟି କରି ଚାଲ । ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଯେ ଗୋଟାଏ ପୁରୁଷ ଯିଏ ଆଗକୁ ଦେଖିବା ଦରକାର ସିଏ ପଛକୁ ଦେଖୁଛି, ଯିଏ ପଛରେ ପଡ଼ିରହିଛି ତାକୁ ପୁଣି ଆଗକୁ ଯିବାର ରାସ୍ତା ଫିଟାଇ ଯାଉଛି । ମୁଁ ସେହି ଦିନକୁ ଅପେକ୍ଷା କରୁଛି ଯୋଉଦିନ ଗୋଟିଏ ସ୍ତରରେ ପିତା ପୁତ୍ରର ସହଯାତ୍ରୀ ହେବେ, ବାଧା ନୁହେଁ । ତଥାସ୍ତୁ । ( ଏହି ଲେଖା ସ୍ୱର୍ଗବାସୀ ପିତାଙ୍କୁ ଆଦରର ସହିତ ଉତ୍ସର୍ଗ କରାଗଲା, ଯିଏ ସର୍ବଦା ମୋର ସହଯାତ୍ରୀ ଥିଲେ)

—※—

## କୃଷକଙ୍କ କଥା ଭାବ !

□ ଅଶ୍ୱିନୀ କୁମାର ଦୁବେ

ରାଜନୀତିରେ ମଧ୍ୟ ଫିଲ୍‌ନ ଅଛି । ଗତଦିନମାନଙ୍କରେ ବୋଫର୍ସ ଫିଲ୍‌ନ ଚାଲିଥିଲା । ତା'ପରେ ରାଷ୍ଟ୍ରୀୟ ଅଖଣ୍ଡତାର ମଙ୍ଗଳଗୀତ ଗାନ୍ କରାଗଲା । ଆଉ ଏବେ କୃଷକମାନଙ୍କ କଥା ଆଲୋଚନାର ମୁଖ୍ୟ କେନ୍ଦ୍ର । ଅତି ପ୍ରାଚୀନ କାଳରୁ ଭାରତକୁ ଗୋଟିଏ କୃଷିପ୍ରଧାନ ଦେଶ କୁହାଯାଇଛି । ଏଇଥିପାଇଁ ପ୍ରବୀଣ ନେତୃବର୍ଗ 'କୃଷି' ବ୍ୟତୀତ ବାକି ସମସ୍ତ ବିଷୟରେ ଗମ୍ଭୀର ଚିନ୍ତନ କରିଆସିଛନ୍ତି । ସେମାନେ ସର୍ବପ୍ରଥମେ କାଶ୍ମୀର ସମ୍ପର୍କରେ ମନୋନିବେଶ କରିଥିଲେ । ସେଥିପାଇଁ କାଶ୍ମୀର ସମସ୍ୟାର ସମାଧାନ ଆଜି ପର୍ଯ୍ୟନ୍ତ ସମ୍ଭବ ହେଲାନାହିଁ । ତତ୍‌ପଶ୍ଚାତ ଧର୍ମନିରପେକ୍ଷତା ଉପରେ ସେମାନଙ୍କର ବକ୍ତୃତା କେନ୍ଦ୍ରୀଭୂତ ହେଲା । ଶହ ଶହ ବର୍ଷଧରି ଅବ୍ୟବହୃତ ଓ ବନ୍ଦ ହୋଇପଡ଼ିଥିବା ଗୋଟାଏ ଷ୍ଟ୍ରକଚରର କବାଟ ଖୋଲିହେଲାରୁ ଆମେ ହଠାତ ସଚେତନ ହେଲୁ ଯେ ଭାରତ ଏକ ଧର୍ମପ୍ରଧାନ ଦେଶ ଓ ଏଠାରେ ଧର୍ମକୁ ତ୍ୟାଗକରିବା ଧର୍ମନିରପେକ୍ଷତାକୁ ରକ୍ଷାକରିବା ଭିତ୍ତିରେ ହିଁ ନା ସମ୍ଭବ, ମୁଣ୍ଡରେ ନୁହେଁ ।

ଏବେ ଏବେ ହଠାତ କୃଷକମାନଙ୍କ ପ୍ରତି ନେତାମାନଙ୍କର ଧ୍ୟାନ ଆକୃଷ୍ଟ ହୋଇଅଛି । କେତେ ଦଶନ୍ଧି ହେଲା ଆମେ ଶ୍ରମିକ ନେତାଙ୍କ କଥା ଶୁଣିଆସିଥିଲୁ । ତା'ପରେ ହରିଜନ ଓ ଅନଗ୍ରସର ଶ୍ରେଣୀର ନେତାମାନଙ୍କୁ ଦେଖିଲୁ । ସେମାନଙ୍କର ସିଦ୍ଧାନ୍ତ, ସେମାନଙ୍କର ତର୍କ, ଶୁଣିଲୁ । ସେମାନଙ୍କର ଯୁକ୍ତିକୁବୁଝିଲୁ । ଏବେ ଯାହାହେଉ ପାଳି ଆସିଲା କୃଷକ ନେତାମାନଙ୍କର । ପ୍ରଥମେ ଭାରତର ଜନବହୁଳ ପ୍ରଦେଶ ଉତ୍ତର ପ୍ରଦେଶରେ, ତା'ପରେ ଖୋଦ୍ ରାଜଧାନୀ ଦିଲ୍ଲୀରେ ଏହି ନେତାମାନେ ସଂଗୋଷ୍ଠୀର ଆୟୋଜନ କଲେ । ସମ୍ମାନମାଳାମାନଙ୍କରେ ପ୍ରବକ୍ତାମାନେ ସେମାନଙ୍କର ଗବେଷଣାପ୍ରସୂତ ଭିତ୍ତିପ୍ରବନ୍ଧ ଉପସ୍ଥାପନ କଲେ । କୃଷକ ନେତାମାନେ ବୋଟକ୍ଲବଠାରୁ ର୍ୟାଲି ଶୋଭାଯାତ୍ରା ବାହାର କଲେ । ଦାବୀପତ୍ର ସରକାରଙ୍କୁ ଦିଆଗଲା ଯେ କୃଷକ-ମାନଙ୍କୁ ବିଜୁଳି ବ୍ୟବହାର ବାବଦ ଶୁଳ୍କରୁ ମୁକ୍ତ ଦିଆଯାଉ । ବ୍ୟାଙ୍କରୁ ନେଇଥିବା ଋଣ ଛାଡ଼ କରିଦିଆଯାଉ । ଅବଶ୍ୟ ଏହି ଦାବୀଗୁଡ଼ିକ ପୂରଣ ହେଲା କି ନାହିଁ ଜଣାନାହିଁ ।

ଏବେ ଏବେ ଗୋଟାଏ ବିରାଟ କୃଷକ ର୍ୟାଲିର ଆୟୋଜନ କରାଯାଇଥିଲା । ଖୁବ ଜୋରଦାର ଦାବୀ ସରକାରଙ୍କଠାରେ ପେଶ୍ କରାଗଲା । ସେମାନଙ୍କର କେତେକ ମୌଳିକ ସମସ୍ୟା ଉପରେ ଏକତ୍ରିତ ହୋଇଥିବା ହଜାର ହଜାର କୃଷକମାନେ ବିଚାର ବିମର୍ଷ କଲେ । ପ୍ରଥମ ସମସ୍ୟା ଥିଲା ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ଲାଲକିଲ୍ଲା ଉପରେ କିଏ ପତାକା ଉତ୍ତୋଳନ କରିବେ ।'

ଜଣେ ନେତା ଭାଷଣ ପ୍ରସଙ୍ଗରେ କହିଲେ, ସହରର ଲୋକମାନେ କୃଷକମାନଙ୍କୁ ଶୋଷଣ କରୁଛନ୍ତି । ଆଜିଯାଏଁ ଆମ କାନ ଶୁଣି ଆସିଥିଲା ଯେ ମିଲ ମାଲିକ ଶ୍ରମିକ-ମାନଙ୍କୁ ଶୋଷଣ କରନ୍ତି ! ଋଣ ଲଗାଉଥିବା ସୁଧଖୋର ମହାଜନମାନଙ୍କ ଶୋଷଣ କଥା ସହିତ ଆମେମାନେ ବେଶ ଜଣାଶୁଣା । ଗୋଟାଏ ସମୟରେ ସାହିତ୍ୟରେ ବର୍ଗସଂଘର୍ଷର ବହୁ ରଚନା ଲେଖାଗଲା ! ଏବେ ଗ୍ରାମ ଏବଂ ନଗର ଭିତରେ ସଂଘର୍ଷର କଥା ଶୁଣିଲେ ପରମ ସନ୍ତୋଷ ହେଲା ଯେ ଯାହାହେଉ ଆମ ଦେଶର ଭାଗ୍ୟ ଅତିଶୀଘ୍ର ବଦଳି ଯାଉଛି । ଯେହେତୁ ଆମର ଦେଶ ଗୋଟିଏ କୃଷିପ୍ରଧାନ ଦେଶ, ସେଥିପାଇଁ କୃଷିର ବିକାଶ ସମ୍ପର୍କରେ - ଆଲୋଚନା-ଆଲୋଡ଼ନ-ଆନ୍ଦୋଳନ ଆଉର କୌଣସି ଆବଶ୍ୟକତା ନାହିଁ । ଉନ୍ନତ ଆଧୁନିକ ବୈଜ୍ଞାନିକ କୌଶଳ ପ୍ରୟୋଗ, ଉତ୍ପାଦନର ଅଭିବୃଦ୍ଧି, ଯାନ୍ତ୍ରିକ କୃଷି ପ୍ରଣାଳୀ, ଜଳସେଚନ କ୍ଷେତ୍ରରେ ନବୀନ ଉପାୟର ଉପଯୋଗ ଆଦିରେ ଦେଶ ସମ୍ପୂର୍ଣ୍ଣ ଆତ୍ମନିର୍ଭର ହୋଇସାରିଲାଣି ଜାଣି ଅମେ ଅତ୍ୟନ୍ତ ଆନନ୍ଦିତ ।

ରାଜଧାନୀର ହୃତ୍‌ପିଣ୍ଡ ସ୍ୱରୂପ ରାଜରାସ୍ତାରେ ଏପରି ଅଭୂତପୂର୍ବ ବିଶାଳ ର୍ୟାଲିକୁ ଦେଖି, ଫେଷ୍ଟୁନ ଓ ପତାକା ଧରିବାକୁ ନିୟୋଜିତ କୃଷିଶ୍ରମିକମାନେ ମନେ ମନେ

ସ୍ଥିର କରିଥିଲେ ଯେ ଏହି ଶୁଭ, ଏବଂ ବିରଳ ଅବସରରେ ଗୋଷ୍ଠୀଏ କିଛି ହିତକର କଳ୍ପର ଘୋଷଣା ଫୋଷଣା ନହେଲେ ର୍ୟାଲିଟା ଅସମ୍ପୂର୍ଣ୍ଣ ମନେହେବ । କୃଷକ-ମାନଙ୍କର ସାମୂହିକ କଲ୍ୟାଣ ନିମିତ୍ତ ପ୍ରଥମେ ଗୋଷ୍ଠୀଏ ଘୋଷଣା ହେବା ନିହାତି ଜରୁରୀ । ନେତାମାନେ ସବୁବେଳେ ଚତୁର ଏବଂ ଦେବତାମାନଙ୍କ ପରେ ସେମାନେ ହେଉଛନ୍ତି ବିଂଶ ଶତକର ଅନ୍ତର୍ଯ୍ୟାମୀ । ସେମାନେ ଆହୂତ ଓ ର୍ୟାଲି-ଯୋଗଦାନକାରୀ ସଦସ୍ୟମାନଙ୍କର ମନୋଭାବ ତୁରନ୍ତ ଜାଣିପାରିଲେ । ବରିଷ୍ଠ କୃଷକନେତା ହଠାତ ମାଇକ୍ ରେ ଘୋଷଣା କଲେ ଯେ, ଆଜିଠାରୁ ଏକ ନବଯୁଗର ଅଭ୍ୟୁଦୟ ଘଟିଲା । କୃଷକମାନଙ୍କର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ଆଜି ଯେଉଁ ଅଭୂତପୂର୍ବ ଐକ୍ୟ, ମହତ୍ତ୍ୱପୂର୍ଣ୍ଣ ଯୋଗଦାନର ପ୍ରମାଣ, ସଙ୍ଘତିର ନିଦର୍ଶନ, ସଂଗ୍ରାମୀ ମନୋବୃତ୍ତିର ସ୍ୱତଃସ୍ଫୂର୍ତ୍ତି ପରିପ୍ରକାଶ ଆମେ ଦେଖୁଛେ ଏହା ଆମ ମନରେ ଯଥେଷ୍ଟ ଉତ୍ସାହ ଏବଂ ଉଦ୍ଦୀପନା ସୃଷ୍ଟି କରିଅଛି । ଏବେ ଆମର ବଦ୍ଧମୂଳ ଧାରଣା, ଯଦି ଏହି ସଂଗ୍ରାମ ଠିକ ଭାବରେ ପରିଚାଳିତ ହୁଏ ତେବେ ଏ ଦେଶର ଷାଠିଏ ଭାଗ ଜନସଂଖ୍ୟାର ମୌଳିକ ସମସ୍ୟା ଗୁଡିକ ଅଚିରେ ସମାହିତ ହୋଇପାରିବ । ଏଣୁ କୃଷକ ଆନ୍ଦୋଳନ, ଓ କୃଷକ ଏକତା ତଥା କୃଷକ-କଲ୍ୟାଣ ନିମିତ୍ତ ଆଗାମୀ ଦଶବର୍ଷକୁ 'କୃଷକ ଦଶକ' ରୂପେ ପାଳନ କରାଯିବ । ସମବେତ ଜନତା ଘୋଷଣାରେ ଉଦ୍‌ବୁଦ୍ଧ ହେଲା । ମାତ୍ର କିଏ ଜଣେ ଭିଡ଼ ଭିତରେ ପ୍ରଶ୍ନକଲା ଯେ ଇଏ କୃଷକ ଦଶକ କ'ଣ ? ଆଉ ଜଣେ ତାକୁ ବୁଝେଇ ଦେଲା, କୃଷକ ଦଶକ କ'ଣ ଜାଣିପାରୁନାହୁଁ । ଏକକ ଶତକ ପରି ଦଶକ, କୃଷକ ଦଶକ କୃଷକ ଦଶକ । ସେ ଯାହା ହେଉ, ତୋତେ ଏତେ ଜାଗରୁ ଶିଗ କାଢିବାକୁ କିଏ କହୁଛି ? କୃଷକମାନଙ୍କର କଲ୍ୟାଣ ପାଇଁ ଯେତେବେଳେ ପଞ୍ଚସୂତ୍ରୀ, ବିଂଶସୂତ୍ରୀ, ଆଠଦଫା, ବାରଦଫା ଏମିତି କାର୍ଯ୍ୟକ୍ରମ ହାତକୁ ନିଆଯାଉଛି ସେତେବେଳେ ତ ଫେର ଗୋଷ୍ଠୀଏ କିଛି ଘୋଷଣା ହେବା ଦରକାର ନା ନାହିଁ ? ବେଶ୍, ଦରକାର ବୋଲି ଭାବି ମୁଁ ଘୋଷଣା କରିଦେଲି, 'କୃଷକ ଦଶକ' ।

ଆପଣମାନେ ମହିଳା ବର୍ଷ, ବାଳିକା ବର୍ଷ, ଯୁବାବର୍ଷ ଆଦି ଢେର ଶୁଣିଛନ୍ତି ଏବଂ ଏହି ବର୍ଷ ଗୁଡ଼ାକରେ କ'ଣ ହୁଏ, ତାହା ମଧ୍ୟ ଜାଣିଛନ୍ତି । ଏହି ସବୁ ବର୍ଷମାନଙ୍କରେ କ'ଣ ହୁଏ ? ଆଲୋଚନାଚକ୍ର ଅନୁଷ୍ଠିତ ହୁଏ । ସମ୍ମାନମାଳାର ଆୟୋଜନ କରାଯାଏ, ସମ୍ମିଳନୀ ହୁଏ, ସ୍ମରଣିକା ପ୍ରକାଶ ପାଏ । ପୁରସ୍କାର ପ୍ରଦାନ କରାଯାଏ । ମନ୍ତ୍ରୀ, ଉପମନ୍ତ୍ରୀ, ପ୍ରଧାନମନ୍ତ୍ରୀ, ପ୍ରମୁଖ ଏହି ସବୁ କାର୍ଯ୍ୟକ୍ରମରେ ଭାଗ ନିଅନ୍ତି । ରାଜନୀତି ବିଶେଷଜ୍ଞ, ଅର୍ଥନୀତି ବିଶାରଦ, କାରିଗରୀ ଓ ପ୍ରଯୁକ୍ତି ବିଦ୍ୟାର ଅଧିବକ୍ତା, ଆଇନଜ୍ଞ ଆଦି ବହୁ ଦିଗ୍‌ଗଜମାନେ ଅଂଶଗ୍ରହଣ କରି ନୂତନ ଦିଗଦର୍ଶନ କରାନ୍ତି, ଠିକ ସେହି ପ୍ରକାରେ ଏହି ଦଶବର୍ଷ ପାଳନ କରାଯିବ । ସୁଦୀର୍ଘ ଦଶବର୍ଷକାଳ କୃଷକମାନଙ୍କ ଉପରେ ଚର୍ଚ୍ଚା ହେବ । ଯୁକ୍ତି ହେବ, ଆଲୋଚନା ହେବ । ଚର୍ଚ୍ଚା,

ମୁକ୍ତ ଆଲୋଚନା କରିବା ବ୍ୟତୀତ ଆମେ ବା ଆଉ କ'ଣ କରିପାରିବା, କାରଣ ଦେଶ ତ କୋଉ ପ୍ରାଚୀନ କାଳରୁ ଗୋଟିଏ କୃଷିପ୍ରଧାନ ଦେଶ ହୋଇ ରହିଆସିଛି ।

କିଛିଦିନ ତଳେ ସହରରେ ବୁଲୁଥିବା ଜଣେ କୃଷକଙ୍କ ସହିତ ମୋର ଆକସ୍ମିକ ଭାବରେ ଦେଖାହୋଇଗଲା । ମୁଁ ପଚାରିଲି, ଭାଇ ! ତୁମେ ଜାଣିଛ ନା, ଆଜିକାଲି ରାଜନୀତିରେ ତୁମମାନଙ୍କ ବିଷୟରେ ଭାରି ଆଲୋଚନା ହେଉଛି । ଦେଶର ବଡ଼ ବଡ଼ ହିଗ୍‌ଗଜମାନଙ୍କର ଭବିଷ୍ୟତ ତୁମ ହାତରେ ରହିଛି ।

ବାବୁ ! ରାଜନୀତିରୁ ଆମକୁ କ'ଣ ମିଳିବ ? ଆମେ ହେଲୁ ଚଷା ଲୋକ, ମାଟିରେ ଖଟିବା ଆମ କାମ । ଧରଣୀର ଆମେ ସେବକ । ଭୂଇଁରୁ ଯାହା ମିଳିଲା ସେତିକିରେ ଆମେ ଖୁସି ।

ବାଃ ଭାଇ ! ତୁମେ ଜାଣିନାହଁ କି ତୁମପାଇଁ ଗୋଟାଏ ଲମ୍ବା ଦଶକ ଘୋଷଣା କରାଯାଉଛି । ସହରିଆମାନେ ତୁମକୁ ଶୋଷଣ କରୁଛନ୍ତି ବୋଲି ଜାଣିଛ ନା ନାହିଁ ?

ଏସବୁ ବଡ଼ ବଡ଼ କଥାରୁ, ବାବୁ, ଆମକୁ କ'ଣ ମିଳିବ ? ଯାହା ଆମେ ଅମଳ କରୁଛୁ ସେତିକି ନେଇ ସହରରେ ବିକି ଦେଇଆସୁଛୁ । ଆଉ ସହରରୁ ଔଷଧପତ୍ର, ଲୁଗା ପଟା ଓ ତେଲ ସାବୁନ ଆଦି ଆମର ଯାହା ଦରକାର ତାହା କିଣି ଆଣୁଛୁ । ଏଇସବୁ ଭିତରେ ଯଦି କୌଣସି ଶୋଷଣ ହୋଇଯାଉଛି, ସେକଥା ମୁଁ ଜାଣେନାହିଁ । ଆଉ ଯୋଉ ଦଶକବଶକ କଥା ଆପଣ କହୁଛନ୍ତି, ତାହା ମଧ୍ୟ ମୁଁ ଜାଣେନାହିଁ କି ସେସବୁ କଥା ମଧ୍ୟ ବୁଝେନାହିଁ । ମୁଁ କେବଳ ଏତିକି ଜାଣେ ଯେ ସ୍ୱାଧୀନତା ଲାଭ କରିବାର ଚାଳିଶି ବର୍ଷରୁ ଅଧିକ ହୋଇଗଲାଣି । ମାତ୍ର ଆମ ଗାଁକୁ ବିଜୁଳି ଯାଇନାହିଁ, ଏଯାଏଁ ସଡ଼କଟିଏ ମଧ୍ୟ ହୋଇପାରିଲାନାହିଁ । କେନାଲ ହବ ହବ ବୋଲି କୋଉ କାଳରୁ ଶୁଣି ଆସୁଛୁ, ମାତ୍ର ତାହାର ନାମ ଗନ୍ଧ ମଧ୍ୟ ନାହିଁ । ଆମେ ଯୋଉ ଅନ୍ଧାରରେ ଥିଲୁ ଏବେ ମଧ୍ୟ ସେହି ଅନ୍ଧାରରେ ପଡ଼ିରହିଛୁ । କିଏ କେତେ କଥା ସହରରେ କରି କହୁଛନ୍ତି । ଆପଣ ଆମ ଭଲ ପାଇଁ ପଦେ କହିଲେ ଆପଣଙ୍କ ପାଖରେ ଠିଆ ହୋଇଥିବା ଲୋକ ଆପଣଙ୍କୁ "କାହିଁକି ମିଛରେ କୁମ୍ଭୀର କାନ୍ଦଣା କରୁଛ" ବା "ଯାହାହେଉ ଆଉ ଦ'ପଇସା ମାରିବାର ପିହଲି ପଡ଼ିଗଲା" ବୋଲି କହି ଆପଣଙ୍କୁ ଗାଳି ଦେଉଛି । ଆମ ପାଇଁ କେହି ନାହାନ୍ତି । ଆମେ କେବଳ ଠାକୁରଙ୍କ ଭରସା କରି ମୁଠେ ଖାଇ ଦଣ୍ଡେ ଜୀଇଁ ରହିଛୁ ।

ଉକ୍ତ କୃଷକଙ୍କ କଥା ଶୁଣି ମୁଁ କହିଲି, ଭାଇ ! ତୁଚ୍ଛାରେ କାହିଁକି ମୋତେ ଥଟ୍ଟା କରୁଛ । ତୁମମାନଙ୍କର ସର୍ବାଙ୍ଗୀନ ବିକାଶ କରିବା ପାଇଁ, ତୁମମାନଙ୍କୁ ଜାତୀୟ ପ୍ରଗତିର କେନ୍ଦ୍ରସ୍ରୋତରେ ସାମିଲ କରିବା ପାଇଁ, ଆଜି ଦେଶର ରାଜଧାନୀ ଚଳଚଞ୍ଚଳ ହୋଇଉଠିଛି, ରାଜଧାନୀର ପ୍ରତି ଗଳିକନ୍ଦିରେ ଆଲୋଚନା ସମାଲୋଚନାର ଗରମାଗରମ ହାଓ୍ୱା ବହୁଛି । ସମସ୍ତେ ଉଚ୍ଚ ସ୍ୱରରେ କୃଷକମାନଙ୍କର ବିକାଶ ଏବଂ ଉନ୍ନତିର କଥା

କହୁଛନ୍ତି । ଆଉ ଦଳେ ଗଲ ଗୃଳିଶି ବର୍ଷର ସ୍ୱାଧୀନ ଭାରତରେ କୃଷକମାନଙ୍କ ପାଇଁ କ'ଣ କ'ଣ କରିଛନ୍ତି, ତାହାର ସୁଦୀର୍ଘ ତାଲିକା ଦେବାରେ ଲଗିପଡ଼ିଛନ୍ତି । ଭୂସଂସ୍କାର, କୃଷି ନିମିତ୍ତ ଋଣ, ପାରମ୍ପରିକ ପ୍ରଣାଳୀ ବଦଳରେ ଅଧିକ ଅମଳକ୍ଷମ ଯାନ୍ତ୍ରିକ ପ୍ରଣାଳୀ ପ୍ରବର୍ତ୍ତନ, ଜଳସେଚନର ସୁବିଧା ପାଇଁ ବହୁମୁଖୀ ନଦୀବନ୍ଧ ଯୋଜନା, ସବସିଡ଼ି ଦେଇ ଶସ୍ତାରେ ରାସାୟନିକ ସାରବଣ୍ଟନ ଓ ବିପଣନ, ଉନ୍ନତ କିସମର ବିହନ ଯୋଗାଣ, ରୋଗ ଓ ପୋକ ଦାଉରୁ ଫସଲ ଓ ଶସ୍ୟ ସଂରକ୍ଷଣ ନିମିତ୍ତ କୀଟନାଶକ ଔଷଧ ବଣ୍ଟନ, ଏତେ ସବୁ କରାଯାଇଛି, ଆଉ ତୁମେ କହୁଛ କ'ଣ ନାଁ କିଛି ହୋଇନାହିଁ ?

ଆରେ ଭାଇ ! ତୁମେ ଜାଣିନା, ଗଲ କେଇଦିନ ହେଲ ଦେଶର ବଡ଼ ବଡ଼ ନେତାମାନେ ଶୋଇବାକୁ ବେଳ ପାଉନାହାନ୍ତି, କେବଳ ତୁମମାନଙ୍କ ପାଇଁ, ତୁମେମାନେ ଯୋଉମାନେ ମାଟି ସାଙ୍ଗରେ ମାଟି ହୋଇ ଧୂନାର ଫସଲ ଅମଳ କରୁଛ, ତୁମେମାନେ, ଯେଉଁମାନେ ଏ ଦେଶର ଜନସଂଖ୍ୟାର ପଚ୍ଚଶ ଶତାଂଶରୁ ଅଧିକ, ସେମାନଙ୍କୁ ନ ଉଠାଇଲା ପର୍ଯ୍ୟନ୍ତ ଦେଶ ଉଠିପାରିବନାହିଁ । ଏଣୁ ବିଳମ୍ବିତ ହେଲେ ମଧ୍ୟ ଏବେ ସମସ୍ତଙ୍କର ଆଖି ତୁମମାନଙ୍କ ଉପରେ । ସମସ୍ତଙ୍କର ଚିନ୍ତା କୃଷକମାନଙ୍କର ସମସ୍ୟା ଉପରେ କେନ୍ଦ୍ରୀଭୂତ । ବରଂ ମୋତେ ଡର ଲଗୁଛି ଯେ ତୁମମାନଙ୍କ ନାଁରେ ହୁଏତ ଦେଶ ଗୋଟାଏ ଜଟିଳ ସଙ୍କଟର ସମ୍ମୁଖୀନ ହୋଇପାରେ । ଖାସ ଏଇଥିପାଇଁ ପୂରା ଦଶବର୍ଷକାଳ ତୁମମାନଙ୍କର ଉନ୍ନତି ସମ୍ପର୍କରେ ଆଲୋଚନା ହେବ, ଭିତ୍ତିପ୍ରବନ୍ଧ ଉପସ୍ଥାପିତ କରାଯିବ । ସମ୍ମାନମାଳା ଆୟୋଜନ ହେବ । ରୋଗର ସ୍ୱରୂପ ଓ ଲକ୍ଷଣ ନିର୍ଣ୍ଣୟ ନକଲେ ତ ଉପଯୁକ୍ତ ନିଦାନ ସମ୍ଭବ ନୁହେଁ । ଏଣୁ ଦଶବର୍ଷିଆ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଅଥଚ ତୁମେ କହୁଛ କ'ଣ ନାଁ ମୋତେ ସେଥିରୁ କ'ଣ ମିଳିବ ? ମୁଁ ସେସବୁ କିଛି ଜାଣେ ନାହିଁ ।

ବାବୁ ! ଅପଣଙ୍କର ଏସବୁ କଥା ଶୁଣିଲାକୁ ମୋତେ ଭାରି ଡର ଲାଗୁଛି । ବଡ଼ ବଡ଼ ଲୋକମାନେ ଯେତେବେଳେ ଆମପରି ସାମାନ୍ୟ ଲୋକଙ୍କ ପାଇଁ ଚିନ୍ତିତ ହୋଇପଡ଼ିଲେଣି ତେବେ ଜାଣନ୍ତୁ ବିପଦ ଆସିଗଲା । ସେଇଥିପାଇଁ ବାବୁ ! ମୋତେ କ୍ଷମା କରନ୍ତୁ । ମୋତେ ମୋ ବାଟରେ ଯିବାକୁ ଦିଅନ୍ତୁ । ତେଣେ ମୋର ବହୁତ କାମ ପଡ଼ିଛି । ମୁଁ ଯାଏ ।

ସେ ବୟସ୍କ କୃଷକ ଜଣକ ଗୃଲିଗଲା ପରେ ତାଙ୍କ କଥାକୁ ଅନ୍ତାନ୍ତର ମୁଁ ହିସାବ ତୁଳନା କରିବାକୁ ଚେଷ୍ଟାକଲି । କାଶ୍ମୀର ସମ୍ପର୍କରେ, ପଞ୍ଜାବ ସମ୍ପର୍କରେ, ଧର୍ମନିରପେକ୍ଷତା ସମ୍ପର୍କରେ ଆମେମାନେ ବହୁତ ଦିନରୁ ଚିନ୍ତା କଲେ, ବହୁତ ଚର୍ଚ୍ଚା କଲେ । ହେଲେ ଆଜି ପର୍ଯ୍ୟନ୍ତ ଆମେ କେବଳ ଚିନ୍ତାଚର୍ଚ୍ଚା କରିଗୃଲିଛେ । ମାତ୍ର ଦିନକୁ ଦିନ ସମସ୍ୟା ଜଟିଳରୁ ଅଧିକ ଜଟିଳ ହୋଇଗୃଲିଛି ସିନା, ଅନ୍ତହେବାର ସାମାନ୍ୟତମ ଲକ୍ଷଣ ଦେଖାଯାଉନାହିଁ । ଅଉ ଏବେ କୃଷକମାନଙ୍କ ପାଇଁ ଚିନ୍ତା କରିବାର ପାଳି ପଡ଼ିଛି ଓ ଆପଣ ମଧ୍ୟ ଏହି ମଉକାରେ ଅଳ୍ପବହୁତ ଚିନ୍ତାକରିଦେବାନ୍ତୁ ।

—o—

# ମୁଖ୍ୟମନ୍ତ୍ରୀଙ୍କ କେଶ

● ହୃଦୟେଶ

ମୁଖ୍ୟମନ୍ତ୍ରୀଙ୍କର କେଶ ଥିଲା ବଢ଼ିକେଶ । ବେଶ ଘନ ଏବଂ ଲମ୍ବା । ଯେତେବେଳେ କେଶର ମୁଣ୍ଡ ତଳକୁ ଓହ୍ଲାଇ ଯାଉଥିଲା ତାହା ଏକ ବହନ ମଫସଲିଆ କେଶଭଳି ଦିଶୁଥିଲା । ଯେତେବେଳେ ଉପରକୁ କରି ଦିଆଯାଏ, ସେତେବେଳେ ଅଧାସହଣ୍ଟି ମନେହୁଏ, ବୋଧହୁଏ କେଶସ୍ୱାମୀଙ୍କର ଗୋଷ୍ଠୀଏ ପାଦ ସହରରେ । ଆଖିରେ ଚଉଡ଼ା ଫ୍ରେମ୍‌ବାଲା ଚକମକିଆ ଚଷମା ଚଢ଼େଇ ଦେଲେ ସେ କେଶରେ ଅପେକ୍ଷାକୃତ ଗାମ୍ଭୀର୍ଯ୍ୟ ସହିତ ପ୍ରଶାସକୀୟ କ୍ଷମତାର ଆଭିଜାତ୍ୟ ଫୁଟି ଉଠୁଥିଲା । ସେ କେଶର ଅନ୍ୟ ବୈଶିଷ୍ଟ୍ୟ ଥିଲାଯେ ମୁହଁରେ ଫୁଟି ଉଠୁଥିବା ରାଜ, ଅରାଜ ପ୍ରୀତି ବୈରିତା ଆଦି ସମସ୍ତପ୍ରକାର ଭାବରାଜିକୁ ଲୁଚେଇ ଦେଇ ପାରୁଥିଲା ବା ଠିକଭାବରେ କହିଲେ ଲୁଚେଇଦେବାରେ ସଫଳସହାୟକ ସିଦ୍ଧ ହେଉଥିଲା । ସେଥିରେ ପ୍ରତିଫଳିତ ହେଉଥିଲା ରହସ୍ୟମୟତା । ତା'ସାଙ୍ଗକୁ ମୁଣ୍ଡବାଳର ତିନି-ଚତୁର୍ଥାଂଶ ଧଳା ହୋଇଥିବାରୁ ଏଇ କେଶ ହିଁ ଅଭିଜ୍ଞତା ଓ ଅନୁଭବସମ୍ପନ୍ନତା ପ୍ରତୀକରୂପେ ସହଜଆଦର ଜାଗ୍ରତ କରାଇ ଦେଉଥିଲା ।

ବାର୍ବେରିଟିଏ ପ୍ରତିଦିନ ସକାଳେ ମୁଖ୍ୟମନ୍ତ୍ରୀଙ୍କ ଦାଢ଼ୀକାଟିବାକୁ ଆସୁଥିଲା । ସେ କେତେ ମୁଖ୍ୟମନ୍ତ୍ରୀଙ୍କର ସେବା କରିବାରେ ସୌଭାଗ୍ୟ ପାଇସାରିଥିଲା । ଦାଢ଼ୀ କାଟିସାରିଲାପରେ ତାର ପରବର୍ତ୍ତୀ କାମ ହେଉଛି ମୁଖ୍ୟମନ୍ତ୍ରୀଙ୍କର କେଶକୁ ଗୋଟିଗୋଟିକରି ଆଙ୍ଗୁଳିରେ ପରଖିବା ଓ ସୀମାବାହାରକୁ ଗଲି ଆସିଥିବା ବାଳକୁ, ଯାହାର ସଂଖ୍ୟା ଗଣନାକଲେ ଦଶପାଞ୍ଚ ହେବ, କଇଁଚିରେ ଦରକାର ମୁତାବକ କାଟି ଦେଉଥିଲା । କେଶର ମୌଳିକ ଚରିତ୍ର ଅମାନିଆଁ ହେବା । ତା'ସତ୍ତ୍ୱେ ତାକୁ ସାଉଁଳିକରି ରଖିବା ଏକ ବଢ଼େଇ ପ୍ରଚେଷ୍ଟା । ନିଜର କ୍ଷୁର କି କଇଁଚି ଚଳେଇଲାବେଳେ ସେ ସାଧାରଣତଃ ନିଜର ବାକ୍‌ପଟୁତା ମଧ୍ୟ ଦେଖାଉଥିଲା । କୌଣସି ଭୂତପୂର୍ବ ଜନପ୍ରିୟ ମୁଖ୍ୟମନ୍ତ୍ରୀଙ୍କ ବିଷୟରେ ଆଲୋଚନା କରି ତାଙ୍କୁ ଆଉରି ଉଚ୍ଚ । ଆସନରେ ବସାଇଥିଲା । ସେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀଙ୍କର

ବାଲ ରେଶମୀସୂତାପରି କୋମଳ ଏବଂ ଉଜ୍ଜ୍ୱଳ ବୋଲି କହିବା ସଂଗେ ସଂଗେ ସଂସ୍ଥାରେ ଜଣେ ଦେଉଥିଲା ଯେ, "ହଜୁରଙ୍କର ଦାଢ଼ି ଏମିତି ଯେ ଆପଣ ଶୋଇଥିଲେ ମଧ୍ୟ ବେଶ ଆରାମରେ ସ୍ଥିର କରି ହେବ । ଅସଲ କଥା ହେଲା ମଣିଷର ଚାଲିଚଳନ ତାର ଚଲାଖବରା, ତାହାର ଚରିତ୍ର, ପ୍ରକୃତି ଆଦିର ପ୍ରଭାବ ତାହାର ଶରୀରର ସମସ୍ତ ଅଂଶରେ ପ୍ରତିଫଳିତ ହୋଇଥାଏ । ସେଇଥିପାଇଁ ଶାସ୍ତ୍ରରେ କାନ୍ତି ବା ସୁନ୍ଦରତା ସବୁଠାରେ ଦେଖାଯାଏ ନାହିଁ ।

ତାପରେ ମୁଖ୍ୟମନ୍ତ୍ରୀ ପଚାରିଥିଲେ, "ଜନ୍ତୁ ଲୋକଙ୍କର ଚେହେରା ଖରାପ କଡ଼ା ହେଉଥିବ ? ତୁମେ ହାତରେ ଛୁଉଁଛ, ଏଣୁ ତୁମକୁ ଠିକ ଜଣା ପଡୁଥିବ ।"

"ହଜୁର, ଘୋଡ଼ା ଲାଞ୍ଜର ବାଳ ଭଳି ଟାଣ । ଖୁରୁଣ୍ଟ ଗୁଡ଼ିପଟେ ଗୁଡ଼େଇଦେଲେ ଖୁରୁଣ୍ଟଙ୍କୁ କାଟି ସଫା କରିଦେବ । ହଜୁର, ଭୁଲ ହେଲେ ଯଦି କ୍ଷମା କରିବେ ତେବେ କହିବି । ଅରେ ଆଇନମନ୍ତ୍ରୀଙ୍କର ନିଜ ବାରିକ ଆସି ନଥିଲା । ସେଦିନ କୋଉ ଶଦେଶାଗତ ଟିମ୍ ଦେଖା କରିବାକୁ ଆସୁଥିଲେ । ଆଇନମନ୍ତ୍ରୀଙ୍କ ଡ୍ରାଇଭର ଗାଡ଼ି ନେଇ ଆସି ଏଇ ସେବକଙ୍କୁ ଡାକିନେଲା । ହଜୁର ମନ୍ତ୍ରୀଙ୍କର ବାଲକାଟିବାରେ ବହୁ ପରିଶ୍ରମ କରିବାକୁ ପଡ଼ିଲା । ଦାଢ଼ୀକୁ କିମିତି ନରମ କରିବାରେ ପନ୍ଦରମିନଟ ଲାଗିଗଲା । ତା'ପରଥର ଯେତେବେଳେ ମୋତେ ପୁଣି ଯିବାକୁ ପଡ଼ିଲା ସେତେବେଳେ ମୁଁ ସାଥିରେ ଦାଇଟା କ୍ଷୁର ନେଇକରି ଗଲି ।"

ମୁଖ୍ୟମନ୍ତ୍ରୀ ହସିବା ବିଷୟରେ ଭୟଙ୍କର ସଚେତନ ଥିଲେ, ଯଥେଷ୍ଟ ସାବଧାନ ରହୁଥିଲେ ଯେ କାହା ଆଗରେ କେବେ ଏବଂ କେତେ ହସ ବାହାର କରିବା ଦରକାର । ହେଲେ ନିଜ ଆଇନମନ୍ତ୍ରୀଙ୍କ ସମ୍ପର୍କରେ ନିଜ ବାରିକଠାରୁ ତାହାର ମନ୍ତବ୍ୟ ଶୁଣିଲାପରେ ତାଙ୍କ ମୁହଁରୁ ହସ ଯେମିତି ପିଚକାରୀଭଳି ବାହାରିଗଲା । ଆଇନମନ୍ତ୍ରୀ ମଧ୍ୟ ନିଶ ରଖିଛନ୍ତି । ସେ ସଦାବେଳେ ତାଙ୍କ ଗୋଷ୍ଠୀର ସଦସ୍ୟମାନଙ୍କୁ କହନ୍ତି ଯେ ତାଙ୍କ ନିଶ ମୁଖ୍ୟମନ୍ତ୍ରୀଙ୍କ ନିଶଠାରୁ ବଡ଼ । ଆଇନମନ୍ତ୍ରୀ ଏକଥା ପ୍ରତି କାହିଁକି ଲକ୍ଷ୍ୟ କରନ୍ତିନାହିଁ ଯେ ତାଙ୍କ ମୁହଁଟା କେତେ ବଡ଼ । ବାରିକଟି ତା'ର ବ୍ୟଂଜନାତ୍ମକ ମନ୍ତବ୍ୟରେ ତାଙ୍କୁ ଘୋଡ଼ା ସଙ୍ଗେ ସମାନ କରି କିଛି ଭୁଲ କରିନାହିଁ । କାଳେ ଯେ ସେ ଗୋଟାଏ ଘୋଡାମୁହଁ ପାଇଛନ୍ତି ତାନୁହେଁ ତାଙ୍କ ବୁଦ୍ଧି ମଧ୍ୟ ଘୋଡ଼ାର ବୁଦ୍ଧି ସାଙ୍ଗେ ସମାନ । ହାଇକମାଣ୍ଡଙ୍କ ଆଗରେ ମୁଖ୍ୟମନ୍ତ୍ରୀପଦ ପାଇଁ ସେ ନିଜକୁ ଯୋଗ୍ୟବୋଲି ଯୁକ୍ତି କରନ୍ତି ।

ମୁଖ୍ୟମନ୍ତ୍ରୀ ଗାଦାଧାରସାର ଯୋଗାସନ କରୁଥିଲେ । ତାଙ୍କୁ ଯୋଗାସନ ଶିଖାଉଥିବା ପାଇଁ ଜଣେ ବାନପ୍ରସ୍ଥୀ ଆସୁଥିଲେ, ଯିଏ କୋଣାର୍କ ମନ୍ଦିରଠାରେ ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତାଙ୍କପାଇଁ ଲାଭଦାୟକ ଆସନମାନ କରାଉଥିଲେ । ଆସନ କରିସାରିଲାପରେ ମୁଖ୍ୟମନ୍ତ୍ରୀ ଜଳଖିଆ ଖାଉଥିଲେ । ଜଳଖିଆରେ ସେ ଗୋଲାପଜଳରେ ବତୁରିଥିବା କସ୍ମିସ୍, ଦହିଆ ନହେଲେ ଗାଈର କ୍ଷୀର, କିଛି ଷ୍ଟ୍ୟୁଡ୍ ମେଓ୍ୱା ଖାଉଥିଲେ । ଚଉଷଠୀ ବର୍ଷ ହେଲେ ମଧ୍ୟ ତାଙ୍କ ଦେହରେ ମାଂସପେଶୀ ଟାଣ ଥିଲା, ଚର୍ମରେ ଅପୂର୍ବ ସ୍ନିଗ୍ଧତା ଥିଲା ଓ ଆଖିରେ ଔଜଜ୍ୱଲ୍ୟ, ଗାଲରେ କାଶ୍ମିରୀ ନାସ୍‌ପାତିର ରଙ୍ଗ । ସେ ବସ୍ତୁତଃ ପ୍ରିୟଦର୍ଶୀ ଥିଲେ ।

ବଗିଗୃହଟ ବାରଣ୍ଡାରେ ମୁଖ୍ୟମନ୍ତ୍ରୀ ଗୋଟାଏ ଆରାମ ଚୌକିରେ ବସିଗଲେ ଏବଂ ସମାଚାର ପତ୍ର ଓ ଖବରର 'କ୍ଲିପିଙ୍ଗ' ଦେଖିବାକୁ ଲାଗିଲେ । ସମ୍ବାଦପତ୍ର ପ୍ରଥମପୃଷ୍ଠାରେ ବେଶ ପ୍ରାଧାନ୍ୟ ଦିଆଯାଇ ତାଙ୍କର ସେହି ଭାଷଣର ରିପୋର୍ଟ ଛପା ହୋଇଥିଲା, ଯାହା ରାଜ୍ୟସ୍ତରୀୟ ସ୍ୱାଧୀନତା ସଂଗ୍ରାମୀ ସମ୍ମେଳନରେ ପ୍ରଦାନ କରିଥିଲେ । ସେ କହିଥିଲେ ସ୍ୱାଧୀନତା ସଂଗ୍ରାମୀମାନେ ଆମର ପ୍ରେରଣାର ଉତ୍ସ । ଦେଶକୁ ସ୍ୱାଧୀନ କରିବାପାଇଁ ସେମାନେ ସ୍ୱୀକାର କରିଥିବା ତ୍ୟାଗ, ଆତ୍ମବରଣ କରିଥିବା କଷ୍ଟ, ଅଙ୍ଗୀକାର କରିଥିବା ଯନ୍ତ୍ରଣାଲାଗି ଏ ଦେଶ ସଦାସର୍ବଦା ଋଣୀ ରହିବ । ଆଜି ଆମମାନଙ୍କ ଆଗରେ ବିଚ୍ଛିନ୍ନତାବାଦ, ଆଞ୍ଚଳିକତାବାଦ ଓ ସାମ୍ପ୍ରଦାୟିକତାବାଦ ଆଦି ଗୁରୁଗମ୍ଭୀର ବିଷମ ସମସ୍ୟାମାନ ଉପସ୍ଥିତ ହୋଇଛି । ଏହି ସମସ୍ୟାଗୁଡ଼ିକର ସମାଧାନ ପାଇଁ ଜନଚେତନାକୁ ସଠିକ ମାର୍ଗଦର୍ଶନ କରାଇବା ନିମିତ୍ତ, ଉପଯୁକ୍ତ ଦିଗ୍‌ଦର୍ଶନ କରାଇବା ନିମିତ୍ତ, ଦେଶରେ ଜାଗରଣ ସୃଷ୍ଟି କରିବାରେ ଏହି ସଂଗ୍ରାମୀମାନଙ୍କର ଅପରିହାର୍ଯ୍ୟ ଗୁରୁଦାୟିତ୍ୱ ଅଛି । ସେମାନେ ଆଜି ଦେଶର ପୁନଃନିର୍ମାଣ ପ୍ରକ୍ରିୟାରେ ଅକୁଣ୍ଠିତ ଚିତ୍ତରେ ସହଯୋଗ କରିବେ ବୋଲି ମୁଁ ପ୍ରାର୍ଥନା କରୁଛି । ମଣିଷ ଶରୀରରେ ବୃଦ୍ଧ ହୁଏ ନାହିଁ, ମନରେ ହୁଏ । ଯିଏ ମାନସିକ ସ୍ତରରେ ସକ୍ରିୟ ଅଛି ସିଏ କଦାପି ବୁଢ଼ା ହୋଇ ପାରିବନାହିଁ । ଆମ ସରକାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ସମସ୍ୟା ପ୍ରତି ସଚେତନ ଅଛି ଏବଂ ସେମାନଙ୍କୁ ଖୁବଶୀଘ୍ର ଆହୁରି କେତେକ ସୁବିଧା ଦେବାକୁ ଯାଉଛି ।" ସମସ୍ତଙ୍କ ମଧ୍ୟରେ ବର୍ଷୀୟାନ ସଂଗ୍ରାମୀଙ୍କୁ ଗୋଟାଏ ଶାଲ ଉପଢୌକନ ଆକାରରେ ଘୋଡାଇ ଦେଉଥିବାର ଫଟୋ ମଧ୍ୟ ସମ୍ବାଦ ସହିତ ଛପା ହୋଇଥିଲା ।

ଗୋଟିଏ ପତ୍ରିକାର ସଦ୍ୟତମ ସଂସ୍କରଣ ସେଇଲାଗେ ଆସିଥିଲା । ସେଥିରେ ତାଙ୍କର ସାକ୍ଷାତ୍‌କାର ପ୍ରକାଶିତ ହୋଇଥିଲା । ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ ଯେ, ଦଳୀୟ ନେତୃତ୍ୱ ଉପରେ ତାଙ୍କର ଦୃଢ଼ ଆସ୍ଥା ରହିଛି,

କାଟାଯ୍ୱତ୍ରରରେ, ରାଷ୍ଟ୍ରୀୟସ୍ତରରେ ତାଙ୍କ ଦଳର ଅନ୍ୟ କୌଣସି ବିକଳ୍ପନାହିଁ, ଦେଶକୁ କେବଳ ଏହି ଦଳହିଁ ଗୋଟିଏ ସୁଦୃଢ଼ ସ୍ଥିର ସରକାର ଏବଂ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଆଧାର କରିଥିବା ସ୍ୱଚ୍ଛପ୍ରଶାସନ ଦେଇପାରିବ । ତାଙ୍କ ପ୍ରଦେଶରେ ତାଙ୍କର ନେତୃତ୍ୱପାଇଁ କୌଣସି ବିପଦ ନାହିଁ । ଅନ୍ୟଏକ ପ୍ରଶ୍ନର ଉତ୍ତରଦେଇ ସେ କହିଥିଲେ ଯେ ଆମକୁ ଆମର ରାମ ଏବଂ ରହିମ୍‌ଙ୍କୁ ଆମର ବ୍ୟକ୍ତିଗତ ଧାର୍ମିକ ସ୍ତରରେ ସୀମିତ ରଖିବାକୁ ହେବ ତଥା ସେମାନଙ୍କୁ ରାଜନୀତିର ଆଖଡା ଭିତରକୁ ଟାଣିବା ଉଚିତ ହେବନାହିଁ । ସାରା ବିଶ୍ୱରେ ବ୍ୟବହୃତ ଅଳ୍ପକେତେକ ଭାଷାମଧ୍ୟରେ ଇଂରାଜୀ ଅନ୍ୟତମ, ଆମେ ତାହାର ଗୁରୁତ୍ୱକୁ ଅସ୍ୱୀକାର କରିପାରିବା ନାହିଁ । କିନ୍ତୁ ହିନ୍ଦୀ ଆମ ଦେଶର ରାଷ୍ଟ୍ରଭାଷା । ପ୍ରଶାସନ ଜନତାର ଭାଷାରେ ଚାଲିବା ଉଚିତ, ଯାହାଫଳରେ ପ୍ରଶାସନ ସହ ଜଡ଼ିତ ବ୍ୟକ୍ତି ଏବଂ ପ୍ରଶାସିତ ଜନତାଜନାର୍ଦ୍ଦନ ମଧ୍ୟରେ କୌଣସି ବାଧକତତ୍ତ୍ୱ ନରହେ ।

ଭାଷାସମ୍ବନ୍ଧିତ ତାଙ୍କର ଉତ୍ତରକୁ ମୁଖ୍ୟମନ୍ତ୍ରୀ ପୁଣିଥରେ ପଢ଼ିନେଲେ । ତାଙ୍କ ଚେହେରାରେ କୂଟନୀତିସୁଲଭ ଏକ ସୁରକ୍ଷାତ୍ମକଭାବ ଉକୁଟି ଉଠିଲା, ତାଙ୍କ ନାତି ନାତୁଣୀମାନେ କନ୍‌ଭେଣ୍ଟ ସ୍କୁଲରେ ପଢ଼ୁଛନ୍ତି, ସେଠି ଶିକ୍ଷାର ମାଧ୍ୟମ ଇଂରାଜୀ । ତାଙ୍କର ଇଂଜିନିଅର ଜୋଇଁ ଦୁଇବର୍ଷ ତଳୁ ଆମେରିକା ଯାଇଥିଲା । ଝିଅ ଜୋଇଁଙ୍କର ଚିଠିପତ୍ର ଇଂରାଜୀରେ ହିଁ ଆସୁଥିଲା । ସେଥିପାଇଁ ସେ ଇଂରାଜୀର ମହତ୍ତ୍ୱକୁ ଭୁଲେଇବଙ୍କେଇ ସ୍ୱୀକାର କରି ନେଉଥିଲେ, ଯାହା ଫଳରେ କେହି ଯେମିତି ତାଙ୍କର ଇଂରାଜୀପ୍ରୀତିକୁ ସମାଲୋଚନା କରି ତାଙ୍କୁ ଜନଅଦାଲତର କାଠଗଡ଼ାରେ ଠିଆ ନକରି ପାରିବେ । ତା'ପରେ ସେ ସଚିବାଳୟକୁ ଗଲେ ।

ଉପରଓଳା ରାଜଧାନୀରୁ ପ୍ରାୟ ଶହେ କିଲୋମିଟର ଦୂରରେ ଗୋଟାଏ ନୂଆ ଆୟୁର୍ବେଦୀୟ ଚିକିତ୍ସାଳୟର ଉଦ୍‌ଘାଟନ କରିବାକଥା । ସେ କାଲି ଉଦ୍‌ଘାଟନ କରିବେ । ଭାଷଣର ରୂପରେଖ ମଧ୍ୟ ପ୍ରସ୍ତୁତ ହୋଇ ଆସି ଯାଇଥିଲା । ସନ୍ଧ୍ୟା ସାତଟାବେଳକୁ ସେ ମୁଖ୍ୟମନ୍ତ୍ରୀ-ନିବାସକୁ ଫେରି ଆସିଲେ । ଦେଖାକରିବାକୁ ଆସିଥିବା ଲୋକମାନଙ୍କୁ ଫେରାଇ ଦିଆଗଲା ଯେ ଆଜି ମୁଖ୍ୟମନ୍ତ୍ରୀ କାହାରି ସହିତ ଦେଖାକରି ପାରିବେ ନାହିଁ ।

ପାଖ କୋଠରୀରେ ପତ୍ନୀ ତାଙ୍କର ଚାରିବର୍ଷର ନାତିକୁ ଗପ ଶୁଣାଉଥିଲେ । ଗପ ଶୁଣୁଶୁଣୁ ନାତି ଯେତେବେଳେ ରାଜମହଲ କେମିତି ବୋଲି ପଚାରିଲା, ପତ୍ନୀ ବୁଝେଇଲେ ଯେ ଯେମିତି ଏଇ କୋଠି ଦେଖୁଛୁ, ରାଜମହଲ ଠିକ ସେମିତିକଥା ଥିଲା । ସେଥିରେ ମଧ୍ୟ ଖୁବ ବଡ ବଡ଼ କୋଠରୀମାନ ଥାଏ । ଫୁଲରେ ଭର୍ତ୍ତି ହୋଇଯାଇଥିବା ବଗିଚା, ଆଉ ବଗିଚା ଭିତରେ ପାଣିର ଝରଣାମାନ । ପୁଣି

ଯେତେବେଳେ ରାଜାଙ୍କ ପ୍ରସଙ୍ଗ ଉଠିଲା ସେତେବେଳେ ପତ୍ନୀ ବୁଝେଇ ଗ୍ଭଲେ, "ରାଜା ଯେମିତି ଥିଲେ ଯେମିତି ତୋ ଜେଜେ । ତୋ' ଜେଜେଙ୍କର ଆଦେଶ ଯେମିତି ସମସ୍ତେ ମାନୁଛନ୍ତି, ତାଙ୍କ ସାମ୍ନାରେ ସମସ୍ତେ ଯୋଡ଼ହସ୍ତରେ ବିନମ୍ର ମୁଦ୍ରାରେ ଠିଆ ହୋଇ ରହୁଛନ୍ତି ଠିକ ସେଇମିତି ରାଜାଙ୍କର ଭୃତ୍ୟରୁ କଥା ବାହାରିବାମାତ୍ରକେ ସମସ୍ତେ ତାହାକୁ ପାଳନ କରନ୍ତି । ରାଜାଙ୍କ ଅଗରେ କେହି ମୁଣ୍ଡଟେକ ଠିଆ ହୁଅନ୍ତିନାହିଁ ।

ମୁଖ୍ୟମନ୍ତ୍ରୀ ପତ୍ନୀଙ୍କର କଥାଶୁଣି ହସି ହସି ପର୍ଦାଟେକ କୋଠରୀ ଭିତରେ ପ୍ରବେଶକଲେ, "ବର୍ଣ୍ଣି ! ମୁଁ ତ ରାଜାନୁହେଁ, ଜନତାର ସେବାକାରୀ ମାତ୍ର । ତୋ' ଜେଜମା ନିଶ୍ଚୟ ରାଣୀ ।"

"ନାକକୁ ଯୋଉ ହାତରେ ଇଚ୍ଛା ସେଇ ହାତରେ ଧରପାର, ମୁଁ ଯଦି ରାଣୀ ହେଲି ତେବେ ତେମେ ନିଶ୍ଚୟ ରାଜା ହେଇଗଲ ।"

ମୁଖ୍ୟମନ୍ତ୍ରୀଙ୍କ ମୁଖମଣ୍ଡଳରେ ହସର ଚୂପେଲ୍ଚର୍ଣ୍ଣ ବୋଳି ବୋଲି ସେ କୋଠରୀରୁ ବାହାରି ଆସିଲେ । ବାହାରି ଆସିବା ପୂର୍ବରୁ ନାତିକୁ କାତେଇଥିଲେ, ଗେଲ୍ କରିଥିଲେ । ମୁଖ୍ୟମନ୍ତ୍ରୀ ସନ୍ଧ୍ୟାବେଳେ ମଧ୍ୟ ସ୍ନାନ କରନ୍ତି, ଋତୁକୁ ଚାହିଁ ଥଣ୍ଡା ବା ଗରମ ପାଣିରେ । ଏଥିରେ ସାରାଦିନର କ୍ଳାନ୍ତି ଦୂର ହୋଇଯାଏ ଏବଂ ରୂପ ଫୁଲପରି କୋମଳତାରେ ଭରିଯାଏ ।

ଗାଧୋଇ ସାରି ସେ ତାଙ୍କ ଅଧ୍ୟୟନ କକ୍ଷକୁ ଆସିଲେ । ସମାଚାରର ସମୟ ହୋଇଯାଇଥିଲା । ରିମୋଟ କଣ୍ଟ୍ରୋଲର ବଟନ ଚପି ଟିଭି ଚଲେଇଦେଲେ । ଟି.ଭି ପରଦାରେ ସୋଭିଏତ ରୁଷ୍‌ରୁ ଆସିଥିବା ଗୋଟିଏ ଶିଷ୍ଟମଣ୍ଡଳ ସହିତ ପ୍ରଧାନମନ୍ତ୍ରୀଙ୍କ ସାକ୍ଷାତ କାର୍ଯ୍ୟକ୍ରମ ଦେଖାଇ ଦିଆଯାଉଥିଲା । କିଛି ସମୟ ପରେ ସୂଚନା ଏବଂ ପ୍ରସାରଣ ବିଭାଗର ମନ୍ତ୍ରୀ ଆନ୍ଧ୍ରପ୍ରଦେଶରେ ଗୋଟିଏ ଟି.ଭି ରିଲେ କେନ୍ଦ୍ର ଉଦ୍‌ଘାଟନ କରୁଥିବା ଦୃଶ୍ୟ ଦେଖାଇ ଦିଆଗଲା । ତାଙ୍କର ଚନ୍ଦ୍ର କ'ଣ ଟି ଭି ପରଦାରେ ଏମିତି ଦେଖାଇ ଦିଆଯାଇପାରୁଛି ? ଆଞ୍ଚଳିକ କାର୍ଯ୍ୟକ୍ରମରେ ଆସିବା, ଆସିବା ନୁହେଁ । ରାଷ୍ଟ୍ରୀୟ କାର୍ଯ୍ୟକ୍ରମର କଥା ଗୋଟାଏ ନିଆରା । ସମଗ୍ର ଦେଶ ତାହାକୁ ଦେଖୁଛି । ରାଷ୍ଟ୍ରୀୟ ଏବଂ ନେଟୱର୍କ କାର୍ଯ୍ୟକ୍ରମ ଉପରେ ଦିଲ୍ଲୀବାଲା କବ୍‌ଜାମାଡ଼ି ବସିଛନ୍ତି । ଏହା ଠିକ କାତ ନୁହେଁ । ସମାଚାର ପାଠିକା ସମ୍ବାଦ ପାଠ ଶେଷକରି ହସି ହସି ନମସ୍କାର ଜଣାଉଥିଲେ । ଏୟାର ହଷ୍ଟେସ୍ ପରି ଖବର ପଢ଼ିବା ପାଇଁ ସୁନ୍ଦର ସୁନ୍ଦର ଝିଅଙ୍କୁ ନିଯୁକ୍ତି ଦିଆଯାଉଛି । ଏମାନଙ୍କୁ ଦେଖି ମଣିଷ ଭୋକ, ଶୋଷ, କ୍ଳେଶ ଆଦି ସବୁ ଭୁଲିଯାଉଛି । କିଏ ଜଣେ ଯଥାର୍ଥରେ କହିଛନ୍ତି, ଯେ ନାରୀ ଏହି ସୃଷ୍ଟିର ସୁନ୍ଦରତମ ସର୍ଜନା ଅଟେ ।

ସଚିବ ମହାଶୟ କେତେକ ଜରୁରୀ ଏବଂ ଗୁରୁତ୍ୱପୂର୍ଣ୍ଣ ଫାଇଲ ନେଇ ଆସିଥିଲେ । ଅଧ୍ୟୟନ କରି ସେ ତା' ଉପରେ ଉଚିତ ଆଦେଶ ଦେଇଦେବେ ବୋଲି କହିଲେ । ଭଦ୍ରଲୋକ ଜଣେ ଚନ୍ଦାମୁଣ୍ଡିଆ, ଗାଲ ତାଙ୍କର ପଶିଯାଇଛି ଦାନ୍ତି ଭିତରକୁ, ଅଧା ବୟସର ଲୋକ । ହେଲେ ତାଙ୍କ କାମକୁ ଝୁଣିବାକୁ କେହି ନାହିଁ । ବିଜୁଳିମାର୍ଗେ କାମ କରିପକାନ୍ତି । ଫାଇଲ ଉପରେ ସେ ଯେଉଁ ମନ୍ତବ୍ୟ ଦିଅନ୍ତି ତାକୁ ଦେଖିଲେ ବୁଝିବେ । ଆଗ ଜଣେ ମହିଳା ସଚିବ ଥିଲେ । ବେଶ ସୁନ୍ଦର ଚେହେରାର, ଝଣ୍ଟାନାଙ୍କ ଝିଅଟିଏ । ସବୁବେଳେ ସଜେଇ ସୁଜେଇ ହୋଇଥାଏ । ନିଜ ସୌନ୍ଦର୍ଯ୍ୟ ପ୍ରତି ଯଥେଷ୍ଟ ସଚେତନ ଥିଲେ ସେ । ଆଗର ମୁଖ୍ୟମନ୍ତ୍ରୀଙ୍କଠାରୁ ସେ ବିଶେଷ କୃପା ଲାଭ କରିଥିଲେ । ତାଙ୍କୁ କେନ୍ଦ୍ରକରି ନାନା ପ୍ରକାର କଥା ଶୁଣା ଯାଉଥିଲା । ମୁଖ୍ୟମନ୍ତ୍ରୀ ହେଲାପରେ ଚିନ୍ତା କରିଥିଲେ ତାଙ୍କୁ ସେ ପଦବୀରୁ ହଟେଇବେ ବୋଲି । ନିଜର ଛବି କାହିଁକି ଅଯଥାରେ କଳଙ୍କିତ କରିଥାଆନ୍ତେ ସେ ? ତଥାପି ପୁଣି ବିଚାରିଲେ ଯେ ତୁରନ୍ତ ବଦଳେଇ ଦେଲେ କଥାଟା ଭଲ ନହୋଇପାରେ । ବରଂ ସେ ଥାଉ । ତାଙ୍କର ସ୍ୱରଟି ଅତି ମଧୁର । ସବୁବେଳେ ମୁହଁଟି ହସ ହସ । ତାଙ୍କ ସହିତ କାମ କଲେ କ୍ଲାନ୍ତି ଲାଗିବା ତ ଦୂରର କଥା ବରଂ ସ୍ଫୁର୍ତ୍ତି ମିଳେ । ତାଙ୍କର ମନେହେଲା ଯେ ମହିଳାଙ୍କୁ ବଦଳି କରିବାର ଏକମାତ୍ର କାରଣ ହେଉଛି ତାଙ୍କର ସୌନ୍ଦର୍ଯ୍ୟ ଓ ସେଥିପାଇଁ ବଦନାମ ହେବାର ଆଶଙ୍କା ମଧ୍ୟ ଅଛି । ଆଉ ଏଇଥିପାଇଁ ବଦଳେଇ ଦେବା ଉଚିତ ହେବନାହିଁ । ବିଦେଶରେ ବହୁ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ବ୍ୟକ୍ତିମାନଙ୍କର ବ୍ୟକ୍ତିଗତ ସବୁ ଅଧିକାଂଶତଃ ନାହିଁ । ଯାହାହେଉ ସେ ଶେଷକୁ ଡେପୁଟେସନରେ କେନ୍ଦ୍ରକୁ ଚାଲିଗଲେ । ଆଗର ମୁଖ୍ୟମନ୍ତ୍ରୀ କେନ୍ଦ୍ରରେ ବାଣିଜ୍ୟ ମନ୍ତ୍ରୀ ହୋଇ-ଯାଇଥିଲେ । ହୁଏତ ସେ ହିଁ ତାଙ୍କୁ ଡକେଇ ନେଇଗଲେ ।

ଫାଇଲ ଉପରେ ଯାହା ଆଦେଶ ଦେବା କଥା, ଦେଲେ । ସେଥିରୁ ଗୋଟିଏ ଫାଇଲ୍ କନୌଜିଆ ଇଣ୍ଡଷ୍ଟ୍ରିଆଲ ହାଉସର ଥିଲା । ସେମାନେ ଗୋଟାଏ ଫର୍ଟିଲାଇଜର ପ୍ଲାଣ୍ଟ ବସାଇବାକୁ ଚାହୁଁଥିଲେ । କେତେ ଗୁଡ଼ାଏ ସର୍ତ୍ତ ପୂରଣ କରିନଥିଲେ । ହେଲେ ସେ ଦିଗଟିକୁ ଆଖିବୁଜି ଦେଇ ହେବ । କାରଣ ପ୍ରଥମ କଥା ହେଉଛି ରାଜ୍ୟର ହିତ । ତେଣୁ ସେ ବିନା ଦ୍ୱିଧାରେ ଲାଇସେନ୍ସ ଦେଇଦେବା ପାଇଁ ଆଦେଶ ଦେଲେ ।

ପଲଙ୍କ ଉପରେ ଶୋଇବା ଆଗରୁ ସେ ଦର୍ପଣ ଆଗରେ କିଛି ସମୟ ପାଇଁ ଅଟକିଗଲେ । ତାଙ୍କ ଚେହେରାରେ ଭାରତୀୟ ସଂସ୍କୃତି ଓ ସଭ୍ୟତାର ରୂପଚିତ୍ର ଲକ୍ଷ୍ୟ କରିହେଉଥିଲା, ଅର୍ଥାତ ତାଙ୍କ ଦେଶର ଚିତ୍ର । ଅତୀତରେ ଯେତେବେଳେ ସେ ୟୁନିଭର୍ସିଟିର ଛାତ୍ର ଥିଲେ, ଛୋଟ ଛୋଟ ଦାଢ଼ି ରଖୁଥିଲେ । ତାଙ୍କର ରାଜନୈତିକ

ଗୁରୁ ଥିଲେ ସମ୍ପୂର୍ଣ୍ଣାନନ୍ଦ । ସମ୍ପୂର୍ଣ୍ଣାନନ୍ଦ ସର୍ବଦା କହୁଥିଲେ, ବ୍ୟକ୍ତି ଯେତେବେଳେ ସାଧାରଣ ସାର୍ବଜନୀନ ଜୀବନକୁ ଆସିବ ସେତେବେଳେ ତାହାର ଚାଲିଚଳଣ, ଆଚାର ବ୍ୟବହାର, ପୋଷାକପତ୍ରରେ ସେ ଜଣେ ସାଧାରଣ ବ୍ୟକ୍ତିପରି ହେବା ବାଞ୍ଛନୀୟ ! ଏଇଥିପାଇଁ ତ ସିନା ଶହ ଶହ ହଜାର ହଜାର, ଲୋକଙ୍କର ନେତା ହୋଇଥିଲେ । ସ୍ୱାଧୀନ ଭାରତରେ ନିର୍ବାଚିତ ହୋଇଗଲା ପରେ ସେଥିପାଇଁ ସେ ଗୃହୀମାନଙ୍କପରି ନିଶ ରଖିବାକୁ ଲାଗିଲେ । ଗ୍ରାମ୍ୟ ସଂସ୍କୃତିକୁ ତାହାର ଅପହୃତ ପ୍ରତିଷ୍ଠା ପୁନଃ ଫେରାଇ ଆଣିବାର ଏହା ଥିଲା ପ୍ରଥମ ପ୍ରଚେଷ୍ଟା ।

ମୁଖ୍ୟମନ୍ତ୍ରୀ ଦେଖିଲେ ଯେ ତାଙ୍କ ଆଗରେ ଗୋଟିଏ ସ୍ତ୍ରୀଲୋକ ଠିଆ ହୋଇଛି । ଆଗରୁ ସେ ବୋଧହୁଏ ଅନ୍ଧାର ଭିତରେ ବୁଡ଼ି ରହିଥିଲା । ଏବକୁ ସେ ଅନ୍ଧାର ହଟିଯାଇଛି । କେଉଁ ସୁଦୂର ମଫସଲ ଗାଁର ବୁଢ଼ୀଟିଏ । ତା' ମୁଣ୍ଡର ଖୋଷାଭଳିଆ ବାଳକେତେକ ମୁକୁଳା ରହିଛି । ଆଗରୁ କୋଉଠି ତାକୁ ଦେଖିଥିଲାପରି ମନେହେଲା । ସେ ତାକୁ ଚିହ୍ନିପାରିଲେ । ସିରୋଲି ଗାଁର ବୁଢ଼ୀଟି । ଜନକା ବା ସେଇଭଳିଆ ନାଁ ତାହାର । ତାହାର ପୁଅ ବୋଲି ଗୋଟିଏ । ପୁଅଟି ତା' ସ୍ତ୍ରୀକୁ ଠାକୁରଙ୍କ ଘରେ କାମ ନକରିବାକୁ କହିଲା । ତା'ର କିଛି ଦିନପରେ, ଦିନେ ସନ୍ଧ୍ୟାବେଳକୁ ବୋହୂଟି ଜଙ୍ଗଲରୁ କାଠ ଗୋଟେଇ ଫେରୁଥାଏ । ଦଳେ ଲୋକ ତାକୁ ଟେକିନେଇଗଲେ । ଦୁ'ଦିନ କାଳ ପୁଅ ଚାରିଆଡ଼େ ଖୋଜାଖୋଜି କଲା ମାତ୍ର ସ୍ତ୍ରୀକୁ କୋଉଠି ପାଇଲାନାହିଁ । ସେ ଥାନାକୁ ଗଲା । କିନ୍ତୁ ତା'ଠାରୁ ଥାନାରେ ରିପୋର୍ଟ ରଖାଗଲା ନାହିଁ । କୁହାଗଲା ଆଉ ଦୁଇଚାରି ଦିନ ଅପେକ୍ଷା କର, କାଳେ ମନକୁ ମନ ଫେରିଆସିବ । ମାଇପିଙ୍କ ମନକଥା ତ ସ୍ୱୟଂ ସୃଷ୍ଟିକର୍ତ୍ତା ମଧ୍ୟ ଜାଣିପାରନ୍ତି ନାହିଁ । ଆସିଲାପରେ ସେ ସ୍ତ୍ରୀ ନିଜେ ରିପୋର୍ଟ ଲେଖେଇବ, ସେଇଟା ହିଁ ଅସଲ ରିପୋର୍ଟ ହେବ । ଆଉ ଦିନେ ଜନକାର ପୁଅ ଆସି କହୁଥିଲା ଯେ ଠାକୁରଙ୍କ ଲୋକେ ଯେମିତି ତା' ସ୍ତ୍ରୀକୁ ଟେକି ନେଇଯାଇଛନ୍ତି, ସେମିତି ସେ ମଧ୍ୟ ଠାକୁର ପରିବାରର କୌଣସି ସ୍ତ୍ରୀକୁ ଉଠେଇନେବ । ଦିନେ ସନ୍ଧ୍ୟାବେଳେ ସେ ଠାକୁରଙ୍କ ଘର ପାଖରେ ଚକକର ମାରୁଥିଲା । ଶେଷକୁ ତା' ଶବ ନଈରୁ ମିଳିଥିଲା । ଖବର କାଗଜବାଲାଏ ସାକ୍ଷାତ ଶାଗୁଣା ଭଳିଆ । ଏହି ଭଳିଆ ଖବର ସେମାନଙ୍କ ପାଇଁ ମୁର୍ଦ୍ଦାର ଓ ତା'ର ଖୋଜଖବର ନେଇ ସେମାନେ କେଳେଇକୁଟି କରିପକାନ୍ତି । ଯେତେବେଳେ ଖବର କାଗଜବାଲାଏ ଆଉ ରଖେଇ ବସେଇ ଦେଲେନାହିଁ, ଫିଦିନ କରମ କସମର ଖବର ଛାପିବାରେ ଲାଗିଲେ, ସାରା ପ୍ରଦେଶ ସତେ ଯେମିତି ଉଠିଲା ଦହଲି, ମୁଖ୍ୟମନ୍ତ୍ରୀ ସେଇଠୁ ସେ ଗାଁକୁ ଗଲେ । ସେ ହୋଟାଟାର ବୁଢ଼ୀମା ଆଖିରେ ଥିଲା ସକରୁଣ ଲୁହ ଓ ହୃଦୟରେ ଜଳୁଥିଲା ପ୍ରତିହିଂସାର ବହ୍ନି । ସେ କହୁଥିଲା ଯେ ତା' ବୋହୂକୁ ଯେଉଁମାନେ ଉଠେଇ ନେଇଛନ୍ତି ସେହିମାନେ ତା' ପୁଅକୁ ମଧ୍ୟ ମାରିଛନ୍ତି । ହତ୍ୟାକାରୀଙ୍କୁ ଫାଶୀଖୁଣ୍ଟରେ ଝୁଲେଇ

ଦିଆଯାଉ । ତାହାହେଲେ ଯାଇ ତା' ପ୍ରାଣରେ ଶାନ୍ତି ଲଭିବ, ମନରୁ ତାପ କମିବ ।
ସେ ପୁଅଟିର ବଧୂହତ୍ୟା ବୃଦ୍ଧାକୁ ସାନ୍ତ୍ୱନା ଦେଲେ । ଅପରାଧୀମାନଙ୍କୁ ଗ୍ରେଫ୍ତାର କରିବେ ନାହିଁ ।
ଆଇନ ଅନୁସାରେ କଠୋର ଦଣ୍ଡ ଦିଆଯିବ । ଏହାପରେ ପୁଣି ଦିନେ ସେ ବୁଢ଼ୀ
ତାଙ୍କ ପାଖକୁ ଆସିଥିଲା । କହିଲା ପୁଲିସ ଅଫିସର ଠାକୁର ଜାତିର, ବିଧାୟକ ମଧ୍ୟ
ଠାକୁର ଜାତିର । ବିଧାୟକଙ୍କ ଉପରେ ଦିଲ୍ଲୀରେ ବଡ଼ ନେତା ହେଉଛନ୍ତି ।
ଏମାନେ ସମସ୍ତେ ପ୍ରକୃତ ଅପରାଧୀକୁ ଖସେଇ ଦେବେ । ସମସ୍ତେ ଜାଣିଛନ୍ତି ଯେ
ଠାକୁର ଗଜରାଜ ସିଂହ ଏବଂ ତାଙ୍କ ଭାଇ ମହାସିଂହ ଆଗ ମୋ ବୋହୂକୁ ହରଣଚାଲ
କଲେ ଓ ତା'ପରେ ପୁଅକୁ ହାତଗୋଡ଼ ବାନ୍ଧି ନଈରେ ଫୋପାଡ଼ିଦେଲେ । ସେ
ଦୁଃଖିଅରେ ବୁଢ଼ୀକୁ ସାହସ ଦେଇ କହିଥିଲେ, ଯିଏ ଯେତେ ପ୍ରଭାବଶାଳୀ ହେଉନା
କାହିଁକି, ଆଇନ ହାତରୁ ସେ ମୋଟେ ଖସିଯାଇ ପାରିବନାହିଁ । ଆଇନ ଆଖିରେ
ଅପରାଧୀ କେବଳ ଅପରାଧୀ । ମାମଲାର ନ୍ୟାୟ ହେବ । ଏବେ ଯଦି ପୁଲିସକୁ
ଯଦି ଗଜରାଜ ସିଂହ ଓ ମହାସିଂହଙ୍କ ବିରୁଦ୍ଧରେ ସାକ୍ଷୀ ପ୍ରମାଣ ନ ମିଳିବ ତେବେ
ସେମାନେ ତ ଅନ୍ଧ ମନରୁ ସାକ୍ଷୀ ପ୍ରମାଣ ଗଢ଼ିପାରିବେ ନାହିଁ । ତା'ଛଡ଼ା ସେମାନଙ୍କ
ପକ୍ଷରେ କହିବା ପାଇଁ ତ ଲୋକଙ୍କର ଅଭାବ ନାହିଁ । ଅତି ସାମାନ୍ୟ ପ୍ରମାଣ ଆଉ ଗାଁର
ଜଣେ ଦି'ଜଣଙ୍କ ବିରୁଦ୍ଧରେ ମିଳିଥିଲା । ସେମାନଙ୍କ ସାଙ୍ଗରେ ବୁଢ଼ୀର ପୁଅ ନଈ
ଆଡ଼କୁ ଯିବାର ଦେଖାଯାଇଥିଲା । ପୁଲିସ ସେ ଲୋକ ଦୁଇଜଣଙ୍କୁ ଗ୍ରେପ୍ତାର କରି
ଜେଲକୁ ପଠେଇ ଦେଇଛି । ପରେ ସେମାନେ ଅଦାଲତରୁ ଖଲାସ ହୋଇଗଲେ ।
ଅଦାଲତ ନିର୍ଣ୍ଣୟ କଲା ଯେ ମୃତକ ଦେହି ଲୋକମାନଙ୍କ ଦ୍ୱାରା ବନ୍ଧା ହୋଇ ନଈରେ
ଫିଙ୍ଗାଯିବା ଅପେକ୍ଷା ନିଜ ସ୍ତ୍ରୀ ଅପହୃତ ହେବାର ଦୁଃଖ, ଲଜ୍ଜା ଏବଂ ଅପମାନରେ
ଭାଙ୍ଗିପଡ଼ି, ମାନସିକ ଭାରସାମ୍ୟ ହରେଇ ସ୍ୱୟଂ ଆତ୍ମହତ୍ୟା କରିବାର ସମ୍ଭାବନାକୁ ମଧ୍ୟ
ଏଡ଼େଇ ଦିଆଯାଇନପାରେ । ପ୍ରଥମେ ପ୍ରଥମେ ଏହି ଘଟଣାକୁ କେନ୍ଦ୍ରକରି ବିରୋଧୀ
ଦଳମାନେ ସରକାରକୁ ବଦନାମ କରିବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କଲେ । ମାତ୍ର
କ୍ରମେ ସେମାନଙ୍କର ସ୍ୱର ନୀରବ ହୋଇଗଲା, ଯେମିତି ରାଜନୀତିରେ ପ୍ରାୟ ଘଟିଥାଏ ।
ଆଇନମନ୍ତ୍ରୀ ମଧ୍ୟ ସେତେବେଳେ ପ୍ରତିପକ୍ଷମାନଙ୍କୁ ଜିସ୍ତୁକେଇଥିଲେ, ମାତ୍ର ଯେମିତି
ତାଙ୍କର ଗୋଟାଏ ପୁତୁରା ନାଁରେ ଡକାୟତି ଅଭିଯୋଗକୁ ନେଇ ତଦନ୍ତ ଆରମ୍ଭ
ହୋଇଗଲା ସେଇଠୁ ସେ ଏକାବେଳକେ ଚୁପ୍ ହୋଇଗଲେ । ଅଦାଲତ ଘଟଣାକୁ
ସବୁଦିନ ପାଇଁ ଶେଷ କରିଦେଲା ।

ସେହି ବୁଢ଼ା ସ୍ତ୍ରୀଲୋକଟି ଏକଦମ ତାଙ୍କ ପଲଙ୍କ ପାଖକୁ ଲାଗି ଆସି ଠିଆ
ହୋଇଗଲା ଏବଂ ଦାନ୍ତ କାମୁଡ଼ି କହିବାକୁ ଆରମ୍ଭକଲା, "ମୋ ପୁଅର ହତ୍ୟାକାରୀମାନେ
ଝିଗୁଭଳିଆ ଷଣ୍ଢ ଭଳି ଦିବାଲୋକରେ ବୁଲୁଛନ୍ତି, ତାହାହେଲେ ଏଇଆ ତୋର ନ୍ୟାୟ ?
ତୋ ପୁଲିସ, ତୋ ଅଦାଲତ, ତୋ ଶାସନ ସମସ୍ତେ ବଡ଼ଲୋକଙ୍କ ପକ୍ଷ ନେଉଛନ୍ତି ।

କାରଣ ମୁଁ ହତ୍ୟା କରାଯାଇଥିବା ପୁଅର ମା । ମୁଁ ଚୁପ ହୋଇ ବସି ପାରିବିନାହିଁ । ମୋ ଭିତରେ ହୁରୁ ହୁରୁ ହୋଇ ନିଆଁ ଜଳୁଛି ।'' କହି କହି ସ୍ତ୍ରୀଲୋକଟି ଦୁଇ ହାତରେ ତାଙ୍କର ଯତ୍ନବର୍ଦ୍ଧିତ ନିଶ ଦୁଇଟାକୁ ଧରି ଟାଣିବାକୁ ଆରମ୍ଭ କଲା ।

ହଠାତ ତାଙ୍କର ନିଦ ଭାଙ୍ଗିଗଲା । ଗମ୍‌ଗମ ହୋଇ ଝାଳ ବୋହିଯାଉଥାଏ । ଦେହରୁ । କପାଳରୁ ଝାଳ ପୋଛିନେଲେ । ଏଅାର କଣ୍ଡିସନର କ'ଣ ଠିକ ଭାବରେ କାମ କରୁ ନାହିଁକି ? ମୁଣ୍ଡପାଖରେ ରଖା ହୋଇଥିବା ଟେବୁଲ ଉପରୁ ପାଣି ଜଗ୍‌ଟା ଉଠେଇନେଇ ଢକ୍ ଢକ୍‌କରି ପାଣି ପିଇଗଲେ । ସେଇ ବୁଢ଼ୀ ସ୍ତ୍ରୀଲୋକଟି ପ୍ରତି ତାଙ୍କର ଏକ ବିଶେଷ ଧରଣର ସମ୍ବେଦନାଶୀଳ ମନୋଭାବ ସୃଷ୍ଟି ହୋଇଥିଲା । ମାତ୍ର ତା'ବୋଲି ଏହି ସମ୍ବେଦନଶୀଳତାର ଅର୍ଥ ନୁହେଁ ଯେ ଅପରିତ୍ରିକାରିଣୀ ଯାହା ଚାହିଁବ ତାହା ହୋଇଯିବ । ବହୁତ କଥା ଦେଖିବାକୁ ହେବ । କ୍ଷମତାରେ ଥିବା ଲୋକଟି ଆଗରେ କେବଳ ବର୍ତ୍ତମାନକୁ ଦେଖିଲେ ଚଳିବନାହିଁ, ଭବିଷ୍ୟତ ପ୍ରତି ମଧ୍ୟ ଦୃଷ୍ଟି ରଖିବାକୁ ହେବ । ସ୍ତ୍ରୀଲୋକଟିର କଥା ସେ ମୁଣ୍ଡରୁ ବାହାର କରି ଶୋଇ ଗଲେ ।

ଗୁରିଦିନପରେ ମୁଖ୍ୟମନ୍ତ୍ରୀ ସ୍ୱପ୍ନରେ ଦେଖିଲେ ଯେ ଜଣେ ଚଷମାପିନ୍ଧିଥିବା ପତଳା ଲୋକଟିଏ ତାଙ୍କ ସାମ୍ନାରେ ଠିଆହୋଇଅଛି । ଲୋକଟି ତା' ନାଁ ମୋହନଲାଲ ବୋଲି କହିଲା । ତାଙ୍କର ମନେ ପଡ଼ିଲା ଯେ ମୋହନଲାଲ ବୋଲି ଲୋକଟିଏ ପାଖ୍ ଦଶକୋଡ଼ିଏଟି ଦରଖାସ୍ତ ତାଙ୍କ ପାଖକୁ ପଠେଥିଲା । କେତେକ ସାଧାରଣ ଡାକରେ ଓ ଆଉ କେତେକ ରେଜିଷ୍ଟ୍ରୀ ଡ଼ାକରେ ଅାସିଥିଲା । ସବୁଦରଖାସ୍ତ ତାଙ୍କର ବ୍ୟକ୍ତିଗତ ନାମରେ ଅାସିଥିଲା ଓ ତା'ଉଲକୁ ମୁଖ୍ୟମନ୍ତ୍ରୀ ପଦବୀର ଉଲ୍ଲେଖ କରାଯାଇଥିଲା । ଏପରି ଦରଖାସ୍ତ ପଠେଇବାର କାରଣ ବୋଧହୁଏ ପ୍ରାର୍ଥନାପତ୍ର ମୁଖ୍ୟମନ୍ତ୍ରୀଙ୍କର ଦୃଷ୍ଟିରେ ନିଶ୍ଚୟ ଯେମିତି ପଡ଼େ ଓ କାର୍ଯ୍ୟାଳୟରେ ଉପେକ୍ଷିତ ହୋଇ କୌଣସି ଫାଇଲ ଭିତରେ ଯେମିତି ଚାପି ନରହେ । ସେ ମଧ୍ୟ ଗୋଟାଏ ଦୁଇଟା ଯେ ନିଜେ ନପଢ଼ିଛନ୍ତି ନୁହେଁ । ଦରଖାସ୍ତରେ ସହରର ନାମୋଲ୍ଲେଖ କରି କୁହାଯାଇଥିଲା ଯେ, ଦରଖାସ୍ତକାରୀ ସେଠାର ନିବାସୀ ଏବଂ ତାଙ୍କର ଦୁଇଶହ ବର୍ଗମିଟରର ଜାଗାଖଣ୍ଡିଏ ଅଛି । ଅଫିସର୍ସ କଲୋନୀର ଜମିରୁ ଏହା ଏକ ଅଂଶବୋଲି କହି ଜିଲ୍ଲାଧୀଶ ଅଫିସର୍ସ କ୍ଲବ ପାଇଁ ସେ ଜାଗାଟିକୁ ବାଡ ଘେରେଇଛନ୍ତି । ଜମିର ମାଲିକାନା ଋଣି ବର୍ଷହେଲା ତାଙ୍କ ନାଁରେ ଅଛି । ସେଥିରେ ତାଙ୍କର ଛ'ଟା ଶିଶୁଗଛ ଥିଲା ଯାହାକୁ କାଟି ନେଇଛନ୍ତି । ଅର୍ଥାଭାବରୁ ସେ ସେହି ଜାଗାରେ କୌଣସି କନଷ୍ଟ୍ରକ୍‌ସନ କରି ପାରିନାହାନ୍ତି । ଏବେ ବଜାର ଦରରେ ସେ ଜାଗାର ମୂଲ୍ୟ ପଚିଶି ହଜାରରୁ ବେଶୀ ହେବ ସିନା, କମ୍ ନୁହେଁ । ଗଛରଦାମ ମଧ୍ୟ

ପାଞ୍ଚହଜାର ହେବ । ସେ ଜିଲ୍ଲାଧୀଶଙ୍କୁ ଦେଖାକରି ଆପତ୍ତି କରିଥିଲେ । ଜିଲ୍ଲାଧୀଶ କହିଲେ ଯେ, ଜମିଟା ସରକାରୀ ଓ ତହସିଲର କାଗଜପତ୍ରରେ ପଇସା ଦାଖଲ କରିଯାଇଛି । ଏହି ନିଲାମ ଅବୈଧ ଅଟେ ଓ କାଗଜପତ୍ର ଏବେ ଏବେ କରାଯାଇଛି । ଦରଖାସ୍ତକାରୀ ଏଥିପାଇଁ କୋର୍ଟ କଚେରୀକୁ ଯାଉନାହାନ୍ତି କାରଣ ସେ ଭଲ ରୂପେ ଜାଣନ୍ତି ଯେ ତାଙ୍କ ଜୀବଦ୍ଦଶା ଭିତରେ ମକଦ୍ଦମା ଫଇସଲା ହୋଇ ପାରିବ ନାହିଁ । ତାଙ୍କର ଗୋଟାଏ ମକଦ୍ଦମା ଆଜିକୁ ପନ୍ଦର ବର୍ଷ ହେଲା କୋର୍ଟରେ ବିଚାରାଧୀନ ଅଛି । ଦରଖାସ୍ତରେ ପ୍ରାର୍ଥନା କରାଯାଇଅଛି ଯେ ଉକ୍ତ ଜମିରେ କୌଣସି ସରକାରୀ ନିର୍ମାଣକାର୍ଯ୍ୟ କରାନଯାଉ ଏବଂ ତଦନ୍ତକରି ଉକ୍ତ ଜମି ଓ କଟାଯାଉଥିବା ଗଛର ଉଚିତ ମୂଲ୍ୟ ତାଙ୍କୁ ଦିଆଯାଉ । ସେ ଆହୁରି ଲେଖିଥିଲେ ଯେ ତାଙ୍କ ପୁଅ ସୈନ୍ୟବାହିନୀରେ ଥିଲେ ଓ ଗତ ବଙ୍ଗଳାଦେଶ ଯୁଦ୍ଧରେ ପ୍ରାଣ ହରେଇଥିଲେ । ସେ ଜଣେ ଅବସରପ୍ରାପ୍ତ ଶିକ୍ଷକ । ୧୯୮୦ ମସିହାରେ ରାଷ୍ଟ୍ରପତି ପୁରସ୍କାର ପାଇଁ ଜିଲ୍ଲା ବିଦ୍ୟାଳୟ ନିରୀକ୍ଷକ ତାଙ୍କ ନାମ ସୁପାରିଶ କରିଥିଲେ । ଗଲା ଦୁଇବର୍ଷଧରି ତାଙ୍କ ଅଣ୍ଟା ଧରିଛି ଯାହା ଫଳରେ ସେ ବେଶୀ ଚଳବୁଲ କରିପାରୁ ନାହାନ୍ତି ।

ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟ ଏହି ପ୍ରାର୍ଥନାପତ୍ରକୁ ଗୃହମନ୍ତ୍ରୀଙ୍କ କାର୍ଯ୍ୟାଳୟକୁ ପଠାଇଦେଇଥିଲେ । କାରଣ ତାଙ୍କରି ଅଧୀନରେ ସାଧାରଣ ପ୍ରଶାସନବିଭାଗ ରହିଥିଲା । ଆଠ ଦଶଦିନତଳେ ସନ୍ଧ୍ୟାରେ ଗୃହମନ୍ତ୍ରୀ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ଆସିଥିଲେ । ଯୋଗକୁ ସେହିଦିନ ମୋହନଲାଲଙ୍କର ଅନୁସ୍ମାରକ ପତ୍ର ଆଉଏକ ପ୍ରାର୍ଥନାପତ୍ର ଆସି ପହଞ୍ଚିଥିଲା । ମୁଖ୍ୟମନ୍ତ୍ରୀ ସେ ସମ୍ବନ୍ଧରେ ଗୃହମନ୍ତ୍ରୀଙ୍କୁ କହିଲେ ।

"ଆଗରୁ ମୋପାଖକୁ ମଧ୍ୟ ତାଙ୍କର ପ୍ରାର୍ଥନାପତ୍ର ଆସିଥିଲା । ଏବେ ଆପଣଙ୍କ ପାଖକୁ ପଠେଇ ଦେଉଛି ।" "ପ୍ରାର୍ଥନାପତ୍ର ସହିତ ପଟ୍ଟାର ଫଟୋକପି ସେ ପଠାଉଛନ୍ତି । ପଟ୍ଟାରୁ ଯାହା ଜଣାଯାଉଛି ସେ ଜମି ତାଙ୍କର ।" "ଜିଲ୍ଲାଧୀଶଙ୍କ ପାଖରେ ସେ ଜମିକୁ ସରକାରୀ କହିବାପାଇଁ ନିଶ୍ଚୟ କିଛି ପ୍ରମାଣ ଥିବ ।"

"କାହା କଥା ଠିକ, ଜାଣିବାପାଇ କମିଶନର ବା ଅନ୍ୟ କେହି ଉଚ୍ଚାଧିକାରୀଙ୍କ ଦ୍ୱାରା ତଦନ୍ତ କରାଇନିଅନ୍ତୁ । ବେଳେବେଳେ ଜିଲ୍ଲାଧିକାରୀ 'ଓଭରଡ୍ରାଇଙ୍ଗ' ମଧ୍ୟ କରିଥାଆନ୍ତି । ମୋହନଲାଲ ଠିକକଥା ଲେଖିଛନ୍ତି ଯେ କୋର୍ଟ କଚେରୀରେ ମକଦ୍ଦମା କରିବା ଗୋଟାଏ ଦୀର୍ଘ ପଇସାଖର୍ଚ୍ଚ କାରବାର । ସେ ଭାରୀ ବିବ୍ରତ ହେଉଛନ୍ତି । ମୋର ତାଂକ ପ୍ରତି ସହାନୁଭୂତି ଏଇଥିପାଇଁ ଯେ ତାଂକର ଯୁବକ ପୁଅ ଦେଶପାଇଁ ଯୁଦ୍ଧକରି ପ୍ରାଣବଳି ଦେଇଥିଲେ ।" ମୁଖ୍ୟମନ୍ତ୍ରୀ କହିଥିଲେ । "ତାହାହେଲେ ଆଉ

କିଛୁ ତ୍ୟାଗ କରିଯାଉ । ଜମିଖଣ୍ଡକ ତ ଜିଲ୍ଲାଧୀଶଙ୍କ ପାଖକୁ ବା ଅନ୍ୟ କୌଣସି ଅଧିକାରୀଙ୍କ ପାଖକୁ ଯାଉନାହିଁ । ସରକାର ନେଉଛନ୍ତି । ସରକାର କହିଲେ ତ ଦେଶ ।" ଗୃହମନ୍ତ୍ରୀ ଦାନ୍ତ ଚିପିଚିପି ହସି ଦେଲେ, ପୁଣି କହିଲେ, "ଶୁଣନ୍ତୁ, ଏଇଟି ତ ଗୋଟାଏ ଛୋଟିଆ ସମସ୍ୟା । ଆମେ ଯଦି ଏହାର ଉପରେ ଏତେ ସମୟ ଦେବା ତେବେ ଆମର ସବୁ ସମୟତକ ଏଇଥିରେ ଯିବ ।"

ତାହାପରେ ଗୃହମନ୍ତ୍ରୀ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉଠାଇଲେ ଯେ, ଦୁଇମାସପରେ ବିଧାନ ପରିଷଦର ଦଶଟି ସ୍ଥାନ ପାଇଁ ଯେଉଁ ନିର୍ବାଚନ ହେବ, ସେଥିରେ ନିଜ ଲୋକଙ୍କୁ ଟିକେଟ ଦେବାପାଇଁ ଆଇନମନ୍ତ୍ରୀ ପ୍ରବଳ ଚେଷ୍ଟା କରିବେ । ତାଙ୍କ ବଳକୁ କମେଇବା ପାଇଁ ତାଙ୍କ ଲୋକଙ୍କୁ ଟିକେଟ ନଦେବା ଭଲହେବ । ଦୁଇଟି ସ୍ଥାନ ସଂଖ୍ୟାଲଘୁଙ୍କୁ, ଗୋଟିଏ ସ୍ଥାନ ମହିଳାଙ୍କୁ କହି ନୀତିଗତ ସ୍ତରରେ ତାଙ୍କୁ ପ୍ରତିରୋଧ କରିଯାଇ ପାରିବ । ମହିଳା ସିଟ ପାଇଁ ରାଜେଶ୍ୱରୀ ସିହ୍ନା ଠିକ୍ ହେବେ । ସେ ଜଣେ ପାରିବାର ସ୍ତ୍ରୀଲୋକ । ଗୃହମନ୍ତ୍ରୀ ପୁନଃ କହିଲେ ଯେ ପଶ୍ଚିମ ଇଲାକାପରେ ବିକାଶଯୋଜନା ଅନୁଧ୍ୟାନ କରିବା ପାଇଁ କେନ୍ଦ୍ର ସରକାର ଗୋଟିଏ ପ୍ରତିନିଧିମଣ୍ଡଳ ସେଠାକୁ ପଠାଉଛନ୍ତି ।

ମୋହନଲାଲ ମୁହଁ ଝାଙ୍କିକରି ପଚାରିଲା, "ମୋ ଦରଖାସ୍ତ ଉପରେ ଆପଣ କ'ଣ କଲେ ? କହନ୍ତୁ, କ'ଣ କଲେ ? ଅଣ୍ଟାରେ ଭୟଙ୍କର ଯନ୍ତ୍ରଣା ସତ୍ତ୍ୱେ ମୁଁ ଏତେ ଦୂରରୁ ଆସିଛି । ଲୋକେ କହୁଛନ୍ତି ଯେ ସିଧା ଆଙ୍ଗୁଠିରେ ଘିଅ ବାହାରିବ ନାହିଁ ।" ମୋହନଲାଲ ଦୁଇ ହାତରେ ତାଙ୍କର ନିଶକୁ ଜୋରକରି ଧରିଲା । ମୁଖ୍ୟମନ୍ତ୍ରୀଙ୍କ ଦେହରୁ ଅଣ୍ଡାଝାଳ ବୋହିଗଲା ଓ ନିଦ ଭାଙ୍ଗିଗଲା । ତା'ଆର ରାତି ମୁଖ୍ୟମନ୍ତ୍ରୀ ପୁଣି ସ୍ୱପ୍ନ ଦେଖିଲେ । ଏଥର ତାଙ୍କ ଆଗରେ ଦଶବାରଜଣ ଲୋକ ଏକାଠି ଆସି ଠିଆ ହୋଇଥିଲେ । ବହୁ କଷ୍ଟରେ ପ୍ରଥମେ ସେ ଗୋଟାଏ ଲୋକକୁ ଚିହ୍ନି ପାରିଲେ । ତା'ପରେ ଗେଡ଼ାହେଇ ଲୋକଟାକୁ ଓ ପରେ ପରେ ଅନ୍ୟମାନଙ୍କୁ । ଛ'ମାସତଳେ ଗୋଟାଏ ସରକାରୀ ଚିନିକଳର ଛାତ ଭୁଷୁଡ଼ି ପଡ଼ିଥିଲା । କାମ କରୁଥିବା ଆଠଜଣ ଶ୍ରମିକଙ୍କର ତତ୍କାଳ ଘଟଣାସ୍ଥଳରେ ମୃତ୍ୟୁ ହୋଇଥିଲା । ଡାକ୍ତରଖାନାରେ ଆଉ ଦୁଇଜଣଙ୍କର ମୃତ୍ୟୁ ହୋଇଥିଲା । ପନ୍ଦରଜଣ ଗୁରୁତର ଭାବରେ ଆହତ ହୋଇଥିଲେ । ମୁଖ୍ୟମନ୍ତ୍ରୀ ସେଦିନ ନିକଟସ୍ଥ ଗୋଟାଏ ଜାଗାରେ ସେତୁଉଦ୍‌ଘାଟନ କରୁଥିଲେ । ଯେମିତି ଖବର ପାଇଛନ୍ତି ସେ ତୁରନ୍ତ ଘଟଣାସ୍ଥଳରେ ପହଞ୍ଚିଲେ । ଉଦ୍ଧାରକାର୍ଯ୍ୟ ଜୋରସୋରରେ ଆରମ୍ଭ ହୋଇ ଯାଇଥିଲା ଓ ଭଗ୍ନସ୍ତୂପତଳୁ ଚାପିହୋଇ ଯାଇଥିବା ଲୋକଙ୍କୁ ବାହାରକୁ କଢ଼ା ଯାଉଥିଲା । ମଲା ଲୋକଙ୍କର ଚେହେରା ବିକୃତ ହୋଇଯାଇଥିଲା ତଥା ଜୀବନ୍ତ ଲୋକମାନେ ଯନ୍ତ୍ରଣାରେ ଛଟପଟ ହେଉଥିଲେ । ଜଣେ ବ୍ୟକ୍ତି ଓ ତାଙ୍କ ପତ୍ନୀ ମିଲରେ

କାମ୍‌କରୁଥିଲେ ଏବଂ ତାହାଙ୍କ ସହିତ ମରିଗଲେ । ସେମାନଙ୍କର ବର୍ଷକର ପିଲାଟିଏ ଥିଲା । ପିଲାଟିକୁ ପୋଲଠାରୁ କିଛି ଦୂରରେ ଥିବା ଶ୍ରମିକ ବସ୍ତିରେ ଅନ୍ୟଜଣେ ସ୍ତ୍ରୀଲୋକ ପାଖରେ ଛାଡି ସେମାନେ କାମକୁ ଆସୁଥିଲେ । ସେ ସ୍ତ୍ରୀଲୋକଟି ପିଲାଟିକୁ ଧରି ଦୁର୍ଘଟଣାସ୍ଥଳକୁ ଆସିଥାଉଥିଲା । ମୁଖ୍ୟମନ୍ତ୍ରୀ ଅବୋଧ ଶିଶୁଟିକୁ କାଖେଇ ନେଇଥିଲେ । ତାଙ୍କ ଆଖିରୁ ଲୁହ ଗଡିପଡୁଥିଲା । ପରଦିନ ସମ୍ବାଦପତ୍ରରେ ଯେଉଁ ଫଟୋ ବାହାରିଥିଲା ସେଥିରେ ତାଙ୍କର ଏହି କାନ୍ଦୁଥିବା ଅବସ୍ଥାର ଚିତ୍ର ଥିଲା । ତାଙ୍କର ଘୋଷଣା ମଧ୍ୟ ପ୍ରକାଶିତ ହୋଇଥିଲା ଯେ ପ୍ରତ୍ୟେକ ମୃତବ୍ୟକ୍ତିଙ୍କ ପରିବାରକୁ ପଚିଶହଜାର ଓ ଗୁରୁତର ଭାବରେ ଆହତ ହୋଇଥିବା ଲୋକଙ୍କୁ ଦୁଇହଜାର, ସାମାନ୍ୟ ଆଘାତପ୍ରାପ୍ତ ବ୍ୟକ୍ତିଙ୍କୁ ପାଞ୍ଚଶହ ଲେଖା ଟଙ୍କା ଦିଆଯିବ । ମାତ୍ର ଦୁଇଦିନ ପୂର୍ବରୁ ସେ ପୋଲ ତିଆରି ହୋଇଥିଲା । ସେ ଏକଥା ମଧ୍ୟ ଘୋଷଣା କରିଥିଲେ ଯେ ପୋଲ ଭୁଶୁଡ଼ି ପଡିବାର କାରଣ ସମ୍ପର୍କରେ ଏକ ବିଶେଷଜ୍ଞ କମିଟି ଦ୍ୱାରା ତଦନ୍ତ କରାଯିବ ତଥା ତଦନ୍ତ ନସରିବା ପର୍ଯ୍ୟନ୍ତ ପୋଲ ନିର୍ମାଣ କରିଥିବା ଠିକାଦାରଙ୍କ ନାଁ ବ୍ଲାକ୍ ଲିଷ୍ଟରେ ରହିବ ।

ବିଧାନସଭାରେ ପ୍ରତିପକ୍ଷ ପ୍ରବଳବିରୋଧ କରିଥିଲେ ଯେ ଠିକାଦାର ବାପାକୁ ସିନା ସରକାର କଳାତାଲିକାଭୁକ୍ତ କରିଦେଲେ ମାତ୍ର ଠିକାଦାର ପୁଅକୁ ନୁହେଁ, ବରଂ ସ୍ୱାଂପରେ, ଦୁର୍ଘଟଣା ଘଟିଲା ପରେ ମଧ୍ୟ ଠିକାଦାରଙ୍କ ପୁଅକୁ ଭୈରବଘାଟ ପୋଲ ନିର୍ମାଣ ପାଇଁ ଏଗାରକୋଟି ଟଙ୍କାର ଠିକା ଦିଆଯାଇଅଛି । ଖାଲି ସେତିକି ନୁହେଁ, ଏବେ ଏବେ ସରିଥିବା ଉପନିର୍ବାଚନରେ ଏହି ଠିକାଦାରଙ୍କର କେଇଖଣ୍ଡ ଜିପ ବ୍ୟବହୃତ ହୋଇଥିଲା, ଯହିଁରେ ଜଣେକ କେନ୍ଦ୍ରୀୟ ରାଜ୍ୟମନ୍ତ୍ରୀ ନିର୍ବାଚିତ ହୋଇଗଲେ । ଏହାର ଉତ୍ତରରେ ପ୍ରତିପକ୍ଷକୁ ସଫଳ ଭାବରେ ହଟାଇ ଦେବାକୁ ଯାଇ କହିଥିଲେ, "ଆଇନର ସାମାନ୍ୟତମ ଜ୍ଞାନ ଥିବା ବ୍ୟକ୍ତି ସ୍ୱୀକାର କରିବ ଯେ ପିତା କରିଥିବା ଅପରାଧ ପାଇଁ ପୁତ୍ରକୁ ଦଣ୍ଡ ଦିଆଯାଇ ପାରିବନାହିଁ । ବିପକ୍ଷକୁ ଆକ୍ରମଣ କରିବାକୁ ଯିବା ପୂର୍ବରୁ, ଦୋଷାରୋପ କଲା ପୂର୍ବରୁ ନିଜକୁ ଆତ୍ମସମୀକ୍ଷା କରିବା, ନିଜ ଦୋଷଦୁର୍ବଳତା ପ୍ରତି ସଚେତନ ହେବା ଏକାନ୍ତ ଆବଶ୍ୟକ । ଆଜି ଯଦି କ୍ଷମତାସୀନ ଦଳରେ ବସିଥିବା ବ୍ୟକ୍ତି ଆପଣମାନଙ୍କ ବିରୁଦ୍ଧରେ ସେହିପରି ଦୋଷାରୋପ କରି ତଦନ୍ତ ଦାବୀ କରିବେ ତାହାହେଲେ ବିରୋଧୀଦଳର ଅନେକ ରଥୀ ମହାରଥୀ ନିଶ୍ଚିତ ବିପଦରେ ପଡ଼ିଯିବେ । ବିରୋଧୀଦଳର ମାତ୍ର ଗୋଟିଏ କାର୍ଯ୍ୟକ୍ରମ ସେମାନେ କେମିତି ଏହି ଦୁର୍ଘଟଣାରୁ ରାଜନୈତିକ ଫାଇଦା ଉଠାଇବେ ।" ମୁଖ୍ୟମନ୍ତ୍ରୀଙ୍କର ଆକ୍ରମଣାତ୍ମକ ଭାଷଣପରେ ବିରୋଧୀଦଳ ଆଉ ଏ ବିଷୟକୁ ବେଶୀ ଦୂର ଆଗେଇନେଇ ନଥିଲେ । ମୁଖ୍ୟମନ୍ତ୍ରୀ ପ୍ରତିରକ୍ଷା ସହିତ ପ୍ରତ୍ୟାକ୍ରମଣ କରିବାରେ କୁଶଳୀ ଥିଲେ ।

ଯେଉଁମାନେ ଏହି ଦୁର୍ଘଟଣାରେ ମୃତ୍ୟୁବରଣ କରିଥିଲେ, ସେମାନେ ପୁନର୍ଜୀବିତ ହୋଇ କ୍ରୋଧିତ ମର୍କଟଦଳ ପରି କେଁକାରି ଉଠି ମୁଖ୍ୟମନ୍ତ୍ରୀଙ୍କ ଆଡ଼କୁ ଧାଇଁଗଲେ ଓ ତାଙ୍କ କଣ୍ଠନଳୀ ଧରି ଟଣାଟଣି କରିବାରେ ଲାଗିଲେ ।

ମୁଖ୍ୟମନ୍ତ୍ରୀଙ୍କୁ ବିଶେଷ ଚିନ୍ତା ମାଡିବସିଲା, ମାଡ଼ିବସିଲା ନୁହେଁ, ବିଚଳିତ ଓ ବିବ୍ରତ କରି ପକେଇଲା । ଖାଲିବିବ୍ରତ କଲାନାହିଁ, ଭୀତତ୍ରସ୍ତ କରେଇଦେଲା । ଆଜି ଯାଏଁ ଏଭଳି କେବେ ଘଟି ନଥିଲା । ଏକଥା ନୁହେଁ ଯେ ସେ ଶୋଇଲାବେଳେ ସ୍ୱପ୍ନ ଦେଖନ୍ତିନାହିଁ । ହେଲେ ତାହା ଭିନ୍ନ ଧରଣର ଥିଲା । ଅନେକ ସ୍ୱପ୍ନରେ ସେ ଆମୋଦିତ ହେଉଥିଲେ । ମଧୁର ସୁଖଦ ଆଶାବର୍ଦ୍ଧକ ସ୍ୱପ୍ନଦେଖି ସେ ଉଲ୍ଲସିତ ହେଉଥିଲେ । ଥରେ ସେ ସ୍ୱପ୍ନ ଦେଖିଲେ ଯେ ଲାଲକିଲ୍ଲା ଉପରେ ତିରଙ୍ଗା ପତାକା ଉତ୍ତୋଳନ କରିଥିଲେ । ଚାରିପଟେ ଲୋକଙ୍କର ଭିଡ଼ରେ ଥାଟ ପଟାଳି ଲାଗିଛି । ସେ ଉପସ୍ଥିତ ଜନତାକୁ ଉଦ୍‌ବୋଧନ ଦେଲେ । ମଝିରେ ମଝିରେ ଲୋକମାନେ ତାଙ୍କ ମତକୁ ସମର୍ଥନ କରି ତାଳି ବଜାଉଥିଲେ । ଜିନ୍ଦାବାଦର ଧ୍ୱନି ଦେଉଥିଲେ ଲୋକେ । ଆଉ ଦିନେ ଦେଖିଲେ ଯେ ତାଙ୍କ ସ୍ୱତନ୍ତ୍ର ଉଡାଜାହାଜର ଦ୍ୱାର ଖୋଲି ଯାଇଛି । ସେ ମେଲବୁର୍ଣ୍ଣର ଦେଇ ଓହ୍ଲେଇ ଆସୁଛନ୍ତି, ପଛେ ପଛେ ତାଙ୍କର ସ୍ତ୍ରୀ । ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ସେ ଦେଶର ପ୍ରଧାନମନ୍ତ୍ରୀ ସସ୍ତ୍ରୀକ ବିମାନ ବନ୍ଦରକୁ ଆସିଥିଲେ । ସେ ଗାର୍ଡ ଅଫ ଅନର ନେଲେ । ସାମ୍ବାଦିକମାନଙ୍କ ଦ୍ୱାରା ପଚରା ଯାଇଥିବା ଜାତୀୟ ଏବଂ ଆନ୍ତର୍ଜାତୀୟ ପ୍ରଶ୍ନ ଗୁଡିକର ଉତ୍ତର, ଯଥେଷ୍ଟ ଆତ୍ମବିଶ୍ୱାସ ସହ, ପ୍ରଦାନ କରିଥିଲେ । ଗୋଷ୍ଠୀନିରପେକ୍ଷତା, ପଞ୍ଚଶୀଳ ସିଦ୍ଧାନ୍ତକୁ ସେ ତାଙ୍କ ଦେଶର ବୈଦେଶିକ ନୀତିର ମୂଳାଧାର ବୋଲି ବର୍ଣ୍ଣନା କରିଥିଲେ ଯେ ବିଶ୍ୱଶାନ୍ତି ପ୍ରତିଷ୍ଠା କରିବାରେ ଏହି ସିଦ୍ଧାନ୍ତ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ । ଚୀନ ସହିତ ଉତ୍ତମ ସମ୍ପର୍କ ରକ୍ଷା କରିବା ତାଙ୍କ ସରକାରର ଏକାନ୍ତ କାମନା ଓ ସେଥିନିମନ୍ତେ ସଦା ତତ୍ପର ମାତ୍ର ତାହା ସହିତ ଦେଖିବାକୁ ହେବ ଯେ ଦେଶର ସ୍ୱାର୍ଥ ଯେପରି ଉପେକ୍ଷିତ ନହୁଏ । ଜଣେ ବ୍ରିଟିଶ ସାମ୍ବାଦିକ କାଶ୍ମୀରରେ ଗଣଭୋଟ ସମ୍ପର୍କରେ ଯେତେବେଳେ ପ୍ରଶ୍ନକଲେ ସେ ଓଲଟି ପଚାରି ବସିଲେ, "ଆପଣଙ୍କର ସରକାର ଆୟର୍ଲ୍ୟାଣ୍ଡରେ ଜନମତ କରାଇବାକୁ ପ୍ରସ୍ତୁତ କି ?" ଅନ୍ୟ ସାମ୍ବାଦିକମାନେ ଖୁବ ଜୋରରେ ହସିଉଠିଲେ ଯେତେବେଳେ, ସେତେବେଳେ ପରିସ୍ଥିତିକୁ ସହଜ କରି ହସି ହସି ସେ କହିଥିଲେ "କୌଣସି ସାର୍ବଭୌମ ରାଷ୍ଟ୍ର ତାହାର ଅଭ୍ୟନ୍ତରୀଣ ବ୍ୟାପାରରେ ଅନ୍ୟ ଦେଶର ଅନାବଶ୍ୟକ ହସ୍ତକ୍ଷେପକୁ ସ୍ୱୀକାର କରିବ ନାହିଁ ।" ଆଉ ଥରେ ସେ ସ୍ୱପ୍ନ ଦେଖିଲେ ଯେ ଫିଲ୍ମ ସମାରୋହ ହେଉଛି ଏବଂ ସେ ପୁରସ୍କାର ବିତରଣ କରୁଛନ୍ତି । ଉକ୍ତ ଉତ୍ସବରେ ରାଜ ବବ୍‌ବର ଅଛନ୍ତି, ସ୍ମିତା ପାଟିଲ ଅଛନ୍ତି, ଶବ୍‌ନା ଆଜ୍‌ମୀ, ରେଖା ଅଛନ୍ତି ।

ଏଣୁ ତେଣୁ ସ୍ୱପ୍ନ ମଧ୍ୟ ବେଳେବେଳେ ଦେଖୁଥିଲେ ! କିନ୍ତୁ ସେସବୁ ସ୍ୱପ୍ନ ଆସୁଥିଲେ ଓ ଚାଲିଯାଉଥିଲେ, ସାମାନ୍ୟତମ ଚିହ୍ନ ବା ପ୍ରଭାବ ସୃଷ୍ଟି ନକରି । ପ୍ରତ୍ୟକ୍ଷ କାରଣ ଜାଣିଗଲା ପରେ ସେଗୁଡ଼ିକ ଅତଶୀଘ୍ର ଭୁଲି ହୋଇଯାଉଥିଲେ । କିନ୍ତୁ ଦିଶକୁ ନେଇ କେତେକ ସ୍ୱପ୍ନ ନିୟମିତ ଦେଖୁଥିଲେ । ସେଗୁଡ଼ିକ ଚେତନାର ଦ୍ୱାରରେ ଭୟଙ୍କର ଆଘାତ ଦେଉଥିଲେ । ସ୍ୱପ୍ନର ସେ ଶିକାର ହେଉଥିଲେ, ଦର୍ଶକ ମଧ୍ୟ ହେଉଥିଲେ । ସେ ଦେଖୁଥିଲେ ଯେ ଲୋକମାନେ ସମ୍ପୂର୍ଣ୍ଣ ଆକ୍ରୋଶ ରଖି ତାଙ୍କ ଦିଶକୁ ଟାଣୁଛନ୍ତି । ସେମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ହେଉଛି ତାଙ୍କ ଦିଶକୁ ମୂଳରୁ ଓପାଡ଼ିଦେବା । ଶତ୍ରୁ ଗୁଡ଼ାକ ମଧ୍ୟ ଏଇ ପ୍ରକ୍ରିୟାରେ ଭାଗନେଉଥିଲେ । କୌଣସି ସମ୍ଭାବ୍ୟ ବିପଦର ଲକ୍ଷଣ ନୁହେଁ ତ ?

ମୁଖ୍ୟମନ୍ତ୍ରୀ ଜ୍ୟୋତିଷ ବିଦ୍ୟା ଉପରେ ଗଭୀର ଆସ୍ଥା ରଖିଥିଲେ । ତାଙ୍କ ଜାତକରେ ରାଜଯୋଗ ସୃଷ୍ଟିକରି ଗ୍ରହମାନେ ଅବସ୍ଥାନ କରୁଥିଲେ ବୋଲି ତାଙ୍କୁ ଯାହା କୁହାଯାଇଥିଲା, ତାହା ଘଟିଥିଲା । ସେତେବେଳେ ତାଙ୍କ ବୟସ ମାତ୍ର ବାର ତେରବର୍ଷ ମାତ୍ର । ଘର ଅଗଣାରେ ଗୋଟାଏ ନିମ୍ବ ଗଛଉପରେ ବସି କୁଆଟିଏ ତାଙ୍କ ଉପରେ ଧଡ଼୍ କିନା ଗୋଟାଏ ରୂପାଗିନା ପକେଇଦେଲା । ଗିନାରେ ଘିଅ ଲାଗିଥିଲା, ସିନ୍ଦୂର ଚନ୍ଦନ ମଧ୍ୟ ଲାଗିଥିଲା । ଯୋଗକୁ ଦୁ'ଘଣ୍ଟା ପରେ ଜଣେ ସାଧୁମହାରାଜ ଆସିଥିଲେ । ଲମ୍ବା ଜଟ ଏବଂ ଦାଢ଼ୀବାଲା । ବୋଉ ସାଧୁ ମହାରାଜଙ୍କୁ କୁଆ ରୂପାଗିନା ପକେଇବା କଥା କହିଥିଲା । ସେ ସାଧୁ ପ୍ରଥମେ ତାଙ୍କ ହାତ ଦେଖିଲେ, ପୁଣିତାଙ୍କ ଶଙ୍ଖ ଚକ୍ର ଗୁଡ଼ିକୁ ଗଣନାକରି କହିଥିଲେ "ମୋ ଜ୍ୟୋତିଷ ଶାସ୍ତ୍ର କହୁଛି, ଏ ପିଲା ଯଶ ଏବଂ ଐଶ୍ୱର୍ଯ୍ୟ ଉଭୟର ଅଧିକାରୀ । ଗିନାଟା ପୂଜାରେ ବ୍ୟବହୃତ ଗିନା । ଅର୍ଥାତ ଏ ପିଲା ଅନ୍ୟମାନଙ୍କର ପୂଜ୍ୟ ହେବ । ଏହାର ଚାରିଆଡ଼େ ଜୟଜୟକାର ହେବ । ସେ ସାମାନ୍ୟ କୁଆ ନୁହେଁ, ଭୁଷଣ୍ଡିକାକ ନିଜେ ପ୍ରକଟିତ ହୋଇ ତାକୁ ଏଇ ପ୍ରସାଦ ଦେଇଗଲେ । ଦେଖ ! ତୋ କୋଳକୁ ଏ ବାଳକ ଧନ୍ୟ କରିବ । ତୁ ଅତ୍ୟନ୍ତ ଭାଗ୍ୟଶାଳିନୀ ।"

ମା' ଆନନ୍ଦରେ ଗଦ୍‌ଗଦ ହୋଇ ସାଧୁ ମହାରାଜଙ୍କୁ ଚାରଣା ପଇସା, ଅଟା, ଡ଼ାଲି, ଚାଉଳ, ଗୁଡ଼ର ଗଣ୍ଠା ସଜାଡ଼ି ଦେଇଥିଲା ।

ଦ୍ୱାଦଶଶ୍ରେଣୀ ପାସକରି ଯେତେବେଳେ ସେ ଉଚ୍ଚ ଶିକ୍ଷାପାଇଁ ବିଶ୍ୱବିଦ୍ୟାଳୟରେ ପଢ଼ୁଥିଲେ ସେତେବେଳେ ଛାତ୍ରସଂଘ ଅନ୍ଦର ଗରମାଗରମ କାର୍ଯ୍ୟକ୍ରମରେ ଭାଗ ନେଇଥିଲେ । ପ୍ରଫେସର ଏବଂ ପ୍ରୋକ୍ଟରମାନଙ୍କ ସହିତ ଟକ୍‌କର ଦେଇ ନିଜର ଶକ୍ତି ଓ କ୍ଷମତା ପ୍ରତିଷ୍ଠିତ କରିବାକୁ ଚେଷ୍ଟା କରିଥିଲେ । ଜ୍ୟୋତିଷମାନଙ୍କର ଭବିଷ୍ୟବାଣୀର ଅବବୋଧ ତାଙ୍କୁ ସବୁବେଳେ ଶକ୍ତିର ଇଞ୍ଜେକ୍‌ସନ ପରି କାମ

କରୁଥିଲା । ସେ ଗ୍ରନ୍ଥାଗାରର ଅଧ୍ୟକ୍ଷ ହୋଇଗଲେ । ତା'ପରେ ଆରମ୍ଭହେଲା ଓକିଲାତି । ଏଇ ପେଶାରେ ସେ ନୂତନ ସୁଯୋଗ ପାଇଲେ । ଇତି ମଧ୍ୟରେ ସାଧାରଣ ନିର୍ବାଚନ ହେବ ବୋଲି ଘୋଷଣା କରାଗଲା । ସେ ବିଧାନସଭା ପାଇଁ ଠିଆହେଲେ ସ୍ୱାଧୀନ ପ୍ରାର୍ଥୀ ଭାବରେ । ତାଙ୍କ କ୍ଷେତ୍ରରେ ଚଉଦଜଣ ପ୍ରାର୍ଥୀ ଥିଲେ । ବିଶ୍ୱବିଦ୍ୟାଳୟରୁ ସେ ଭାଷଣ ଦେବାର କଳା ଶିଖିଆସିଥିଲେ । ଗାଁ ଗହଳର ସାଧାରଣ ଭାଷାରେ ଯେତେବେଳେ ଭାଷଣ ଦେଉଥିଲେ, କେତେବେଳେ ରାଗିକରି, କେତେବେଳେ ବିନମ୍ରଭାବରେ, କେତେବେଳେ ଅଛୋ ପରିହାସର ପୁଟ ଦେଇ କଥା କହୁଥିଲେ, ସେତେବେଳେ ଗ୍ରାମୀଣ ମତଦାତାଙ୍କ ଉପରେ ଯାଦୁକରୀ ପ୍ରଭାବ ପଡୁଥିଲା । ସେ ନିର୍ବାଚନ ମଣ୍ଡଳୀରେ ଅନେକ ସ୍ଥାନ ବୁଲି ବୁଲି ବୁଲୁଥିଲେ । ଖରା ଆଉ ଧୂଳିରୁ ରକ୍ଷା ପାଇବାପାଇଁ ମୁଣ୍ଡରେ କେବଳ ଗାମୁଛାଖଣ୍ଡେ ପକାଉଥିଲେ । ଭୋଟଦାନର ଚବିଶି ଘଣ୍ଟା ପୂର୍ବରୁ ଜନୈକ ପ୍ରାର୍ଥୀଙ୍କ ପକ୍ଷରୁ ପ୍ରଚାର ପତ୍ର ବଣ୍ଟାଗଲା ଯେ ସେ ତାଙ୍କ ସପକ୍ଷରେ ନିର୍ବାଚନରୁ ଓହରି ଯାଉଛନ୍ତି । ଏହି ପ୍ରଚାରକୁ ଖଣ୍ଡନ କରିବାପାଇଁ ବିଚରା ପ୍ରାର୍ଥୀଙ୍କୁ ସମୟ ସୁଯୋଗ ମିଳିଲାନାହିଁ । ସେ ହାରିଗଲେ । ସେ କ୍ଷମତାସୀନ ପାର୍ଟିରେ ସାମିଲ ହୋଇଗଲେ । କାରଣ ସେହି ଦଳ ଦେଶ ଏବଂ ଜନତାର ସର୍ବାଙ୍ଗୀନ କଲ୍ୟାଣ କରି ପାରିବ । ପରବର୍ତ୍ତୀ ନିର୍ବାଚନରେ ସେ ପାର୍ଟିଟିକେଟରେ ଠିଆହୋଇ ଜିତିଥିଲେ ଏବଂ ପ୍ରଥମେ ଉପମନ୍ତ୍ରୀ ଓ ପରେ ମନ୍ତ୍ରୀ ହୋଇଗଲେ । ବେଳକୁବେଳ ସେ ନିଜର ସ୍ଥିତି ଦୃଢ଼କରି ଚାଲିଥିଲେ, ଯୋଗ୍ୟତାର ଆଧାରଉପରେ ଯେପରି ହାଇକମାଣ୍ଡ ତାଙ୍କର ଇଚ୍ଛା ଅନିଚ୍ଛା ପ୍ରତି ସମୁଚିତ ଗୁରୁତ୍ୱ ଦିଏ । ଇତିମଧ୍ୟରେ ପ୍ରଦେଶରେ ହରିଜନମାନଙ୍କ ଉପରେ ଅତ୍ୟାଚାରର ପ୍ରାବଲ୍ୟ ନିଈବତିପରି ମାଡ଼ି ଆସିଥିଲା । ଗୋଟାଏ ଗାଁରେ ହରିଜନଙ୍କ ପୂରାସାହିଟା ନିଆଁ ଲଗାଇ ଦିଆଯାଇଥିଲା । ଆଉ ଗୋଟାଏ ଗାଁରେ ଦିନ ଦିପହରରେ ଦୁଇଜଣ ହରିଜନଙ୍କୁ ହତ୍ୟା କରାଗଲା । ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ପ୍ରବଳ ସମାଲୋଚନା ହେଲା । ଗୋଟିଏ ମୁଖ୍ୟଦପ୍ତର ଆଗରେ ସଶସ୍ତ୍ର ପୁଲିସବାହିନୀର ଗୋଟାଏ କମ୍ପାନୀ ଶାସକବିରୋଧୀ ସ୍ଲୋଗାନ ଦେବାକୁ ଲଗିଲେ ଓ ଦୁଇଘଣ୍ଟା ପର୍ଯ୍ୟନ୍ତ ଘେରାଉ କଲାପରେ ନିଜନିଜର ଅସ୍ତ୍ରଶସ୍ତ୍ର ସମର୍ପଣ କଲେ । ଏହି ଘଟଣାକୁ ନେଇ ଜାତୀୟ ସମ୍ବାଦପତ୍ର ମାନଙ୍କରେ ଅନେକ ଦିନ ଯାଏଁ ପ୍ରତିକୂଳ ମନ୍ତବ୍ୟ ପ୍ରକାଶିତ ହେବାରେ ଲଗିଲା । ସପ୍ତାହକ

ପରେ ସାତଜଣ ସଦସ୍ୟ ବିଶିଷ୍ଟ ଗୋଟାଏ ହରିଜନ ପରିବାରକୁ ହତ୍ୟାକରିଗଲା । ମୁଖ୍ୟମନ୍ତ୍ରୀଙ୍କୁ ଦିଲ୍ଲୀରୁ ଡ଼ାକରା ଆସିଲା । ପରଦିନ ସେ ମଧ୍ୟ ଦିଲ୍ଲୀରେ ପହଞ୍ଚିଲେ । ସେଠାରେ ସ୍ଥିର ହେଲା ଯେ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେବେ ଏବଂ ସେ ମୁଖ୍ୟମନ୍ତ୍ରୀ ହେବେ । ମୁଖ୍ୟମନ୍ତ୍ରୀଙ୍କ ସମର୍ଥକମାନେ କହିଲେ ଏହା ଏକ ଭୟଙ୍କର ଷଡ଼ଯନ୍ତ୍ର ଯହିଁରେ କେତେ ଜଣ ଦଳୀୟ ନେତାଙ୍କର ହାତ ଅଛି, କିନ୍ତୁ ହାଇକମାଣ୍ଡ ସେଥିପ୍ରତି କର୍ଣ୍ଣପାତ କଲେ ନାହିଁ । ପୂର୍ବ ନେତୃତ୍ୱରେ ଦଳ ଦୁର୍ବଳ ହୋଇଯାଉଥିଲା । ନୂତନ ନେତୃତ୍ୱର ଆବଶ୍ୟକତା ଦେଖାଦେଇଥିଲା । ସେ ମୁଖ୍ୟମନ୍ତ୍ରୀ ହୋଇଗଲେ ।

ତାଙ୍କର ମନେପଡ଼ିଲା ଯେ ସ୍ୱପ୍ନରେ ଯେଉଁ ଦିଶବାମିଜଣ ଲୋକ ତାଙ୍କ ନିଶକୁ ଓପାଡ଼ୁଥିଲେ ସେମାନଙ୍କ ମଧ୍ୟରେ ସାତଜଣିଆ ମୃତ ହରିଜନ ପରିବାରର ସ୍ତ୍ରୀଲୋକଟି ମଧ୍ୟ ଥିଲା, ଯାହାର ଆଗ ଦାନ୍ତ ଦୁଇଟି ଭାଙ୍ଗି ଯାଇଥିଲା । ସେତେବେଳେ ସେ ତାକୁ ଚିହ୍ନି ପାରିନଥିଲେ, କିନ୍ତୁ ଏବେ ତାକୁ ଚିହ୍ନିବା କରିବାରେ ଅସୁବିଧା ନାହିଁ । ସେ ଶୁଣିଥିଲେ ଯେ ମନ୍ଦ ଲୋକଙ୍କୁ ସ୍ୱପ୍ନ ଦେଖିବା ଅପଶକୁନ ଅଟେ । ତାଙ୍କର କ'ଣ କିଛି ଅନିଷ୍ଟ ହେବାକୁ ଯାଉଛି କି ?

ଜ୍ୟୋତିଷଙ୍କର ସାହାଯ୍ୟ ନେବା ଜରୁରି ମନେକରିଥିଲେ । ଜ୍ୟୋତିଷ ହିସାବରେ ଆଚାର୍ଯ୍ୟ ବୃହସ୍ପତିଙ୍କର ବେଶ ନାଁ ଡାକ ଥିଲା । ବଡ଼ ବଡ଼ ରାଜନୀତିଜ୍ଞ, ଉଦ୍ୟୋଗପତି, ଗ୍ଲାମର ଦୁନିଆ ସହିତ ସମ୍ପୃକ୍ତ ବିଗ୍‌ଗଜମାନେ ତାଙ୍କର ଭକ୍ତ ଥିଲେ । ବେଳେବେଳେ ସେ ମଧ୍ୟ ବିଦେଶ ଯାତ୍ରା କରୁଥିଲେ । ଜାତକ ଗଣନା କରି ଜ୍ୟୋତିଷାଚାର୍ଯ୍ୟ କହିଥିଲେ, "ଶନିଙ୍କର ବକ୍ରଦୃଷ୍ଟି ପଡ଼ିଛି । ରାହୁର ଯୋଗ ମଧ୍ୟ ଅନୁକୂଳ ନୁହେଁ । ଆପଣ ଆପଣଙ୍କ ନିଶ-ମୋହ ପରିତ୍ୟାଗ କରନ୍ତୁ । ଏବେ ନିଶ ନରଖିବା ଲାଭଦାୟକ ହେବ ।"

"ମହାରାଜଜୀ ! ମୁଁ ଯେବେଠାରୁ ଦେଶସେବାକୁ ବ୍ରତରୂପେ ଗ୍ରହଣ କଲି ସେବେଠାରୁ ନିଶ ରଖିବା ଆରମ୍ଭ କଲି । ଏବେ ନିଶ କାଟିଦେବା ଅସୁନ୍ଦର ହେବ ।" ମୁଖ୍ୟମନ୍ତ୍ରୀଙ୍କ ଚେହେରାରେ ଦୁଶ୍ଚିନ୍ତାର ଝଲକ ପ୍ରକାଶିତ ହେଲା ।

"କୌଣସି ବସ୍ତୁ ଉପରେ ଯଦି କୌଣସି ଗ୍ରହର କୁଦୃଷ୍ଟି ପଡ଼େ ତେବେ ଉକ୍ତ ବସ୍ତୁକୁ ସ୍ୱତଃ ପରିତ୍ୟାଗ କରିବା ବାଞ୍ଛନୀୟ । ଏହାଦ୍ୱାରା ସେ ଲୋକ ଅପମାନଜନକ

ଙ୍କିଧରୁ ରକ୍ଷା ପାଇଯାଏ । ଆପଣ ପବ୍ଲିକ ଲାଇଫରେ ଅଛନ୍ତି । ମନ ରଖିବା ଆପଣଙ୍କ ପାଇଁ ଅନାବଶ୍ୟକୀୟ ହୋଇପାରେ ।'' କ୍ୟୋଦଙ୍କାପାଗ୍ରପୀୟ ନିର୍ଣ୍ଣୟାତ୍ମକ ସ୍ୱରରେ କହିଲେ ।

ସ୍ୱପ୍ନରେ ମୁଖ୍ୟମନ୍ତ୍ରୀ ଯେତେବେଳେ ସେଇ ଏକାଭଳିଆ ସ୍ୱପ୍ନ ଦେଖିଲେ, ସେ ନିଜର ନିଶକାଟି ସଫା କରିଦେଲେ । ଆଇନମନ୍ତ୍ରୀ ପଛପଟରୁ ସେ ଆଘାତ କଲା ସ୍ୱରରେ କହିଲେ, "ମୁଁ ଏବେ ବୈଜ୍ଞାନିକ ଦୃଷ୍ଟିକୋଣକୁ ଗ୍ରହଣ କରୁଛି । ଦେଶକୁ ଏକବିଂଶ ଶତାବ୍ଦୀକୁ ନେଇଯିବାକୁ ପଡ଼ିବ !'' ଏବେ ସେ ଦେଖିଲେ ଯେ ତାଙ୍କ ଚେହେରା ପଣ୍ଡିତ ଜବାହାରଲାଲ୍ ନେହେରୁଙ୍କ ପରି ଦେଖାଯାଉଛି ।

ମୁଖ୍ୟମନ୍ତ୍ରୀ ଖବର କାଗଜର କ୍ଲିପିଙ୍ଗ ଦେଖୁଥିଲେ । କୃଷିଜମି ବାହାରେ ଇଣ୍ଡଷ୍ଟ୍ରି କରିବାକୁ ଆଉ ଲାଇସେନ୍ସ ଦିଆଯିବ ନାହିଁ ବୋଲି ସେ ଯେଉଁ ବକ୍ତୃତା ଦେଇଥିଲେ ତାହାହିଁ ଛପା ହୋଇଥିଲା । ଏହା ଫଳରେ ଜନବସତି ଅଞ୍ଚଳକୁ ପ୍ରଦୂଷଣରୁ ମୁକ୍ତ କରାଯାଇପାରିବ । ପ୍ରଦେଶ ରାଜଧାନୀ ଓ ଦିଲ୍ଲୀ ମଧ୍ୟରେ ଥିବା ଶହଶହ କିଲୋମିଟର ଜାତୀୟ ରାଜପଥକୁ ଚାରି ଲେନ୍ ରାସ୍ତାରେ ପରିଣତ କରାଯିବ, ଯାହା ଫଳରେ ଯାନବାହନ ଦୁର୍ଘଟଣାର ସଂଖ୍ୟା ରୋକାଯାଇପାରିବ । ଏହି ଯୋଜନା ତିନୋଟି, ପର୍ଯ୍ୟାୟରେ ସମ୍ପୂର୍ଣ୍ଣ କରାଯିବ ଓ ଏଥିପାଇଁ ଆର୍ଥିକ ସହାୟତା ନିମିତ୍ତ କେନ୍ଦ୍ରକୁ ଲେଖାଯାଇଛି । ଗୋଟାଏ ଖବର କାଗଜ ସମ୍ବାଦ ସହିତ ମୁଖ୍ୟମନ୍ତ୍ରୀଙ୍କର ନିଶଥିବା ଫଟ ମଧ୍ୟ ଛପିଥିଲା ।

ସମ୍ବାଦପତ୍ରଟି ରାଜ୍ୟ ରାଜଧାନୀ ବ୍ୟତୀତ ପ୍ରଦେଶର ଅନ୍ୟ ଚାରୋଟି ମହାନଗରରୁ ବାହାରୁଥିଲା । ହେଲେ ତାହା କ୍ଷୁଦ୍ର ସମ୍ବାଦପତ୍ର ତାଲିକାରେ ରହିଥିଲା ଓ ତହିଁରୁ ଲାଭ ଉଠାଉଥିଲା । ସେ କର୍ମଚାରୀମାନଙ୍କୁ ବହୁତ କମ ଦରମା ଦେଉଥିଲେ । ଯେଉଁ ସହ ସମ୍ପାଦକଟି ବାରଘଣ୍ଟା ଚଉଦ ଘଣ୍ଟା ଲୋଖା ପରିଶ୍ରମ କରି ସମୁଦାୟ କାଗଜଟିର ଲେ' ଆଉଟ କରୁଥିଲା ଓ ଏହି ସମ୍ବାଦଟିକୁ ପ୍ରକାଶ ପାଇଁ ନିଜ ଟେବୁଲରୁ ପଠାଇଥିଲା, ସେ ମାସକୁ ମାତ୍ର ସାତଶହ ଟଙ୍କା ଦରମା ପାଉଥିଲା । ସେ ସମାଜ ଶାସ୍ତ୍ରରେ ଏମ.ଏ କରିଥିଲେ । ଯଦି କେହି ତାକୁ କେବେ କହୁଥିଲା ଯେ ବ୍ୟାଙ୍କ ବା ସରକାରୀ

କାର୍ଯ୍ୟାଳୟର ଚପରାଶିଟିଏ ମଧ୍ୟ ତାଙ୍କଠାରୁ ଯଥେଷ୍ଟ ଅଧିକ ଟଙ୍କା ବେତନ ପାଉଛି, ସେତେବେଳେ ସେ ପ୍ରକୃତ ସତ୍ୟକୁ ଲୁଚେଇ କହୁଥିଲ ଯେ ସାମ୍ବାଦିକତାରେ ତାହାର ଯଥେଷ୍ଟ ସଉକ ଅଛି ।

ଟେଲିଫୋନର ଅପର ପ୍ରାନ୍ତରେ ଖବର କାଗଜର ମାଲିକ ତଥା ସମ୍ପାଦକଙ୍କୁ କହୁଥିଲେ, "ଆପଣଙ୍କ କାଗଜରେ ଭୁଲ ଫଟ କାହିଁକି ଛପାଗଲା ? ସୂଚନା ବିଭାଗ ସବୁ ଖବର କାଗଜକୁ ନୂଆ ଫଟ ଯୋଗାଇ ଦେଇଛନ୍ତି । ଆପଣମାନେ ସାତତାଳ ପଙ୍କ ଭିତରେ ତାଲା ବନ୍ଦ ବାକ୍ସରୁ କଥା ବାହାର କରି ତୋଫାନ ସୃଷ୍ଟି କରୁଛନ୍ତି ଆଉ ଏଇ ଖବରଟା ପାଇପାରିଲେ ନାହିଁ ଯେ ମୁଁ ନାଲି କାଟିସାରିଛି । ନାଲି କାଟିବା କୋଉ ଆଜିର କଥା । ଦୁଇଦିନ ହେଲା ଘଟିଲାଣି । ଆପଣ ଯାହାକୁ ଅସାବଧାନତା ବୋଲି କହୁଛନ୍ତି ? ଏହାକୁ ଜାଣିଶୁଣି କରାଯାଇଥିବା ଗଣ୍ଡଗୋଳ ବୋଲି କାହିଁକି ନ କହିବ ?"

ମୁଖ୍ୟମନ୍ତ୍ରୀଙ୍କ କ୍ରୋଧକୁ ପ୍ରଶମିତ କରିବା ପାଇଁ ବିଚରା ସେହି ସହସମ୍ପାଦକଙ୍କୁ ବରଖାସ୍ତ କରିଦିଆଗଲା ।

—*—

# କି ହେଲା ରେ !

## □ ସୁବାଷ କୁମାର

ନିର୍ବାଚନର ଫଳାଫଳ ପୂରା ବାହାରି ଯାଇଥାଏ । ଆମ ଅଞ୍ଚଳର ଦୁଇଜଣ ପ୍ରାର୍ଥୀ ଡାକ୍ତରଖାନାରେ ପଡ଼ିଥାନ୍ତି । ତୃତୀୟ ପ୍ରାର୍ଥୀ ଜଣଙ୍କ ତାଙ୍କ ଗେଟରେ ଗୋଟାଏ ବିରାଟ ଫଳକରେ 'ଭିତରେ ପ୍ରବେଶ ନିଷେଧ' ଲେଖି ଟାଙ୍ଗି ଦେଇ ଥାଆନ୍ତି । ଜଣେ ସ୍ୱାଧୀନ ପ୍ରାର୍ଥୀ (ଯାହାଙ୍କର ଅମାନତ ରହିବାର ସମ୍ଭାବନା ନଥିଲା ଓ ବୁଡ଼ି ଯାଇଥିଲା ମଧ୍ୟ) ଙ୍କର ଘରକୁ ଯାଇ ଦେଖିଲି ଯେ ଦୁଆର ଭିତରୁ ବନ୍ଦ ଥିଲା ଏବଂ ବାହାରେ ନେମ ପ୍ଲେଟରେ 'ଆଉଟ' ବୋଲି ଲେଖା ହୋଇଥିଲା । କିନ୍ତୁ ସେ ଭିତରେ ନିଶ୍ଚିତଭାବରେ ଥିଲେ । କେଜାଣି ମନଦୁଃଖରେ ସେ ଏଭଳି ଭୁଲଟାଏ କରି ପକେଇଥିଲେ । ପାଖ ପଡ଼ୋଶୀମାନେ କବାଟ ଭାଙ୍ଗି ତାଙ୍କୁ ବାହାରକୁ ଆଣିଲେ ।

ଭୂତପୂର୍ବ ପ୍ରାର୍ଥୀଙ୍କୁ ବାହାରକୁ ଜମାରୁ ଆସିବାକୁ ଭଲ ଲାଗୁନଥାଏ । ସେ ପୁଣି ଘର ଭିତରକୁ ପଳାଉଥାଆନ୍ତି । ଆଉ ତାଙ୍କ ପଛେ ପଛେ ଯାଇ ପଡ଼ିଶାର ଲୋକମାନେ । ହୁଅନ୍ତୁ ପଛେ 'ନିର୍ଦ୍ଦଳୀୟ ପ୍ରାର୍ଥୀ, ହେଲେ କୌଣସି ପରାଜିତ ପ୍ରାର୍ଥୀଙ୍କୁ ଏକୁଟିଆ ଛାଡ଼ିଦେବା ପ୍ରତିବେଶୀ ସହିତାରେ ନାହିଁ । ପରାଜିତ ଓ ଅମାନତ ହରେଇଥିବା ପ୍ରାର୍ଥୀ ଜଣଙ୍କ ପ୍ରତିବେଶୀମାନଙ୍କୁ ଦେଖି କ୍ରୋଧ ଏବଂ ଘୃଣାରେ ନାସିକା କୁଞ୍ଚନ କରିବାକୁ ଲାଗୁଥିଲେ । ଲାଗୁଥିଲେ ସଫା ସଫା କହି ଦିଅନ୍ତେ, ଥାଉ ଥାଉ ବେଶୀ ଭଲେଇ ହେବା ଲୋଡ଼ାନାହିଁ । ଆଜି ହ୍ୟାପ ବାହାରି ଆସିଲେ ନିଜ ହାତରୁ ପଇସା ଖର୍ଚ୍ଚ କରି ଚା ପିଆଇବାକୁ ! ଆଉ ସେଦିନ ମାଗଣାରେ ଖଣ୍ଡିଏ ଭୋଟ ଦେଲାବେଳକୁ କେତେ ମୋଡ ଭଡ଼ ହେଲେ । ଖଣ୍ଡିଏ ଭୋଟ ଦେଇ ଦେଇଥିଲେ ଯେମିତି ପ୍ରଣବ ଅଶୁଦ୍ଧ ହୋଇ ଯାଇଥାଆନ୍ତା । ହେଲେ କୌଣସି ନେତା ନିଜର ଭବିଷ୍ୟତକୁ ନଷ୍ଟ କରିଦେବା ଚାହାନ୍ତି ନାହିଁ । ତେଣୁ ସେ ନିଜ ମନର କ୍ଷୋଭ ମନ ଭିତରେ ଚାପି ରଖି ବିମର୍ଷ ସ୍ୱରରେ କହିବାକୁ ଆରମ୍ଭକଲେ, 'ହଅ ! ମୁଁ ଆପଣମାନଙ୍କର କଏ ଯେ ମୋ ପାଇଁ ଏତେ ଭବ୍ୟ ଆୟୋଜନ କରାଯାଉଛି ?''

ଛିଃ ଛିଃ ଏମିତି କାହିଁକି ଆପଣ ଭାବୁଛନ୍ତି ? ଆମେ କଣ ଜାଣିଥିଲୁ ଯେ ଆପଣ ଏତେ ସିରିୟସ୍‌ଲି ନିର୍ବାଚନ ଲଢୁଥିଲେ ? ତା'ଛଡ଼ା ନିର୍ବାଚନ ଓ ହାରି ଖେଳରେ ରଙ୍ଗବେରଙ୍ଗ ହେଲେ, ରୂପ ବିରୂପ ହେଲେ କେହି ଖରାପ ଭାବନ୍ତିନାହିଁ, ଜଣେ ପଡ଼ୋଶୀ ସାହସ ସଞ୍ଚୟ କରି ପରସ୍ଥିତିକୁ ହାଲୁକା କରିବାକୁ ଯାଇ କହିଲା ।

'ହରି ହେଲ' ଦ୍ୱିତୀୟ ପ୍ରତିବେଶୀ କହିବାକୁ ଆରମ୍ଭକଲେ, "ଇୟେ ସରକାରତ ବେଶୀଦିନ ରହିବ ନାହିଁ । ଦେଖିବେ ନାହିଁ ଆଉ ମାସ କେଇଟାରେ ପୁଣି ନିର୍ବାଚନ ହେବ । ସେତେବେଳେ ଆପଣ ପୁଣି ମନ ସ୍ଥିରକରି ନିର୍ବାଚନ ଲଢିବେ । ଏମିତି ମନ ମାରି ବସିଲେ କ'ଣ ଚଳିବ ? ଉଠନ୍ତୁ, ଖିଆ ପିଆ କରନ୍ତୁ । ପୁଣି ଶକ୍ତି ସଞ୍ଚୟ କରି ଅଣ୍ଟା ଭିଡ଼ନ୍ତୁ । କେବେ ନା କେବେ ଆପଣ ନିଶ୍ଚୟ ଜିତିବେ । ଆଉ ତା ଛଡ଼ା ହାରିବାର ତ ପୁଣି ଗୋଟାଏ ସୀମା ଅଛି ନା ନାହିଁ ?"

ଆଗନ୍ତୁକମାନେ କାଇଣ୍ଡ୍‌ଲି ଏଠ୍ ଯାଆନ୍ତି । କିଛି ପାଇଁ ଆଉ ବେଶୀ ଚ୍ୟୁନ ଲଗାନ୍ତିନାହିଁ । ପରାଜିତ ପ୍ରାର୍ଥୀ ଜଣକ ହତାଶ ଦାର୍ଶନିକପରି ବାଷ୍ପାକୁଳ ସ୍ୱରରେ କଥାଟିକେ କହି ପକାଇଲେ । କିନ୍ତୁ ଲୋକମାନେ ତାଙ୍କୁ ଗ୍ରୁଡ଼୍ ଛନ୍ତି କେତେକେ । କେଜାଣି ଏକୁଟିଆରେ କ'ଣ ବୋଲି କ'ଣ କରିଦେଇ ପାରନ୍ତି । ନିଜ ନିଜ ଭିତରେ ଆଲୋଚନା କରି ସେମାନଙ୍କର ସିଦ୍ଧାନ୍ତ ଶୁଣାଇ ଦେଲେ, 'ପାଗଳ, ପ୍ରେମିକ ଓ ଓ ନେତାମାନଙ୍କ କଥାକୁ ଖରାପ ଭାବିବା କଥା ନୁହେଁ । ଏମାନେ ତ ତୁଣ୍ଡକୁ ଯାହା ଆସେ ତାହା କହି ପକାନ୍ତି । ସିଏ ଆମ ସାଙ୍ଗରେ ଯେତେ ଶତ୍ରୁତା ହେଲେ ମଧ୍ୟ ଆମେ ଭଲ ଅମର ପ୍ରତିବେଶୀ ଧର୍ମ ଗ୍ରୁଡ଼ିବା କାହିଁକି ? ତାଛଡ଼ା ତାଙ୍କ ଦାୟିତ୍ୱ ଆମ ଛଡ଼ା ଆଉ କିଏ କାହିଁକି ନେବେ ?

ନିର୍ବାଚନର ଫଳାଫଳ ଘୋଷିତ ହୋଇ ସାରିଥାଏ ଆଉ ସେହି ଫଳର ଛବି ବହୁ ଲୋକଙ୍କ ଚେହେରାରୁ ବାରିହେଉଥାଏ । ଆମ ଖବରପତ୍ରରେ ଅନେକ ଶୁଖିଲା ଶୋଡାଳିଆ ଚେହେରା ଫୁଟ ଦ୍ଭୁଲୁଥିଲେ ଯେଉଁମାନଙ୍କର ଚେହେରାରୁ ସ୍ପଷ୍ଟ ଭାବରେ ନିର୍ବାଚନର ପରିଣାମ ଲକ୍ଷ୍ୟ କରି ହେଉଥିଲା । ଏଇମିତି ଜଣେ ଅଭିଜ୍ଞ ରାଜନେତା ଚେହେରା କହୁଥିଲା ଯେ ଏ ଦେଶର ଭୋଟରମାନଙ୍କ କଥା ନ କହିଲେ ଭଲ । ଭୋଟର ମହତ୍ତ୍ୱ ବୁଝନ୍ତିନାହିଁ ନିରକ୍ଷର ଓ ନାବାଳକ । ତାଛଡ଼ା କୋଉ କଥାକୁ ବୁଝି ବିଚାରି ଭୋଟଦିଅନ୍ତି ଯେ ? ନିର୍ବାଚନ ଇସ୍ତାହାର ନ ପଢି ବୁଝି ପାରନ୍ତିନାହିଁ । ଅଭିଜ୍ଞତାର ମୂଲ୍ୟ ମଧ୍ୟ ବୁଝନ୍ତି ନାହିଁ । ଗଲା ପଚାଶି ବର୍ଷ ଧରି ଦେଖି ଆସୁଛି । ଏଥରକ ତ ସେମାନେ ଏକଦମ ବଡ଼ଜବର କାମ କଲେ । ନିଜ ମୂର୍ଖାମିରୁ ଦେଶଟାକୁ ଅତି କମରେ ଦେଢ଼ ଡଜନ ପ୍ରଧାନମନ୍ତ୍ରୀ ପାଇବାରୁ ବଞ୍ଚିତ କରିଦେଲେ । ଏତେ ଉପେକ୍ଷା ! କ'ଣ ଯେ ହେବ ଏ ଦେଶର ଭବିଷ୍ୟତ ।

କୁହାଯାଏ ନିର୍ବାଚନ ଓ ଯୁଦ୍ଧରେ ସବୁ କିଛି ହୋଇପାରେ । ହେଲେ ଏଥରକ ମହାଭାରତରେ ନିର୍ବାଚନ ଅଙ୍ଗନ ଅଦ୍ଭୁତ ଏବଂ ଅଧାମର୍ମ ଲୋକଙ୍କ ଦ୍ୱାରା ଭରିଯାଇଛି । ଏକଥା ସ୍ପଷ୍ଟ ଯେ ନିର୍ବାଚନରେ ଜନତା ଅତ୍ୟନ୍ତ ନିଷ୍ଠୁର ଭାବରେ ତାର ଆମନ୍ତ୍ରଣ ଜାରି ରଖିଥିଲା । ଏଥର ଖେଳରେ ବିରାଟ ବିପର୍ଯ୍ୟସ୍ତ ହେଲା ଏବଂ ଜନତାର ଏମିତି ପକ୍କା ଅଭ୍ୟାସ ହୋଇଗଲାଣି ଯେ ଖାଲି ଆଉଟ କଲେ ଚଳୁନ, ଷ୍ଟ୍ରେଚରରେ ବୋହି ପାଭିଲିୟନ ଯାଏଁ ପଠେଇ ଦେଇ ପାରୁଛି । ନିର୍ବାଚନ ପୂର୍ବରୁ କଫି ହାଉସରେ ଭୀଷଣ ଗରମାଗରମ ଆଲୋଚନା ଚାଲିଥିଲା । ହେଲେ ସାଧାରଣ ଭୋଟଦାତାମାନେ ଏକ ବିଚିତ୍ର ନୀରବତା ରକ୍ଷା କରିଥିଲେ । ଦେଶ ବିଦେଶର ବଡ଼ ବଡ଼ ପଣ୍ଡିତ ଓ ଜ୍ୟୋତିଷମାନେ ସେମାନଙ୍କର ମୁହଁ ଖୋଲେଇ ପାରିଲେ ନାହିଁ । ଏବେ କିନ୍ତୁ ଜନତା କୁଟିଲ ହସଟିଏ ହସୁଥିଲା ଓ କଫି ହାଉସରେ ଅଖଣ୍ଡ ନୀରବତା ଛାଇ ଯାଇଥିଲା । ନିର୍ବାଚନର ଫଳାଫଳ ପାର୍ଟି ଅଫିସରେ ଝୁଲୁଥିବା ତାଲା ଉପରେ ଅଙ୍କିତ ହୋଇଥିଲା ଓ ବ୍ୟାଣ୍ଡବାଜା ସହିତ ରଙ୍ଗ ବେରଙ୍ଗି ଶୋଭାଯାତ୍ରାର ଉଚ୍ଛୃଙ୍ଖଳ ସ୍ଲୋଗାନ ଓ ବାଣଫୁଟା ଭିତରେ ପ୍ରକାଶ ପାଉଥିଲା ।

ଜଣେ ଭୂତପୂର୍ବ ମତଦାତା ( ଗଣତନ୍ତ୍ରରେ ଯାହାର ଭବିଷ୍ୟତ ଏକାନ୍ତ ଉଜ୍ଜ୍ୱଳ ) ଏଇ ସମସ୍ତ ତମ୍ବୁତୋଫାନ ହୋହଲ୍ଲା, ପାଟିଗୋଳରେ ଅସନ୍ତୁଷ୍ଟ ହୋଇ କହୁଥିଲା ' ଆରେ ବାବୁ ଏତେ ପାଟିଗୋଳରୁ କଅଣ ମିଳିବ ? ଏଗୁଡାକ ଏଠି ଏମିତି ଉପୁଡିଆ କାହିଁକି ହେଉଛନ୍ତି, କିଛି ବୁଝି ହେଉନାହିଁ । ଯଦି ଭୋଟ ପାଇଗଲ, ତେବେ ପାଟନା-ଦିଲ୍ଲୀ ଯାଅ ଏବଂ ଆମକୁ ଶାନ୍ତିରେ ରହିବାକୁ ଦିଅ । ଯାଅ, ଏବଂ ଯେନତେନ ପ୍ରକାରେଣ ପାଞ୍ଚବରଷ ମଉଜ କରିବାର ବନ୍ଦୋବସ୍ତ କର, ଖାଅ ପିଅ ଶୁଅ । ଯାଅ, ଯାଅ । ଶୁଅ ଏବଂ ଶୋଇବାକୁ ଦିଅ ।”

ହେଲେ ପାଟିଗୋଳ ନକରି ଭୁନ ହେଇଯିବେ, ସେମିତିଆ ନେତା କେମିତି ? ନେତାମାନେ ତ ଢୋଲ ପିଟି ପିଟି ଲଢ଼ କରନ୍ତି । ଏଇ ଯାହା ଏବେ ଏବେ ନିର୍ବାଚନ ମଞ୍ଚ ଉପରେ ପରାଜିତ ନେତାମାନଙ୍କ ସହିତ ଘଟିଯାଇଛି, ସେଇଟା କମାଲୁ ଟ୍ରାଜେଡ଼ି ନୁହେଁ କାରଣ ବହୁତ ହାରିଯାଇଥିବା ନେତା ଖୁସି ଖୁସି ହୋଇଥିବାର ଦେଖାଯାଉଛନ୍ତି । ଏକମାତ୍ର ସନ୍ତୋଷ ଯେ ଆମେ ତ ବୁଡିଗଲୁ ସତ ହେଲେ ତୁମକୁ ମଧ୍ୟ ସାଙ୍ଗରେ ନେଇ ବୁଡିଗଲୁ । କେତେକ ଏଇଥି ପାଇଁ ହର୍ଷୋତ୍ଫୁଲ୍ଲ ଯେ "ରାଧାଗୋବିନ୍ଦଙ୍କ ଯୁଗଳ ମୂରତି ହୃଦୟରେ ଧରିବାକୁ ମନ ଡାକିଲାରେ, କଦମ୍ବ ମୂଳେ ମୁରଲୀ ବାଜିଲାରେ ।” ଏମିତି ତ ହରେନାମ ସଙ୍କୀର୍ତ୍ତନ କ୍ଷେତ୍ରରେ ମଧ୍ୟ ରାଜନୀତି କରିଯାଇପାରେ । ସେଠି ହେଁଜଗାଳିର ମାତ୍ରା କୋଉ କମ ଯେ ! ଏବେ ତ ଲୋକସଭାରେ ମୁଖ୍ୟ ବିରୋଧୀ ଦଳ କିଏ ହେବ ତାହା ସ୍ପଷ୍ଟ ଜଣା ହୋଇଗଲା ।

ରାଜନୀତି ଏକୁଟିଆ ହେଉନ । ସାରା ପରିବାର, ଭାଇ ବନ୍ଧୁ କୁଟୁମ୍ବଙ୍କୁ ନେଇ ହେଉଛି, ସମସ୍ତେ ଗୋଟାଏ ଗୋଟାଏ ଦଳକୁ ଜାବୁଡ଼ି ଧରିଛନ୍ତି । ଏ ଭାଇ ଗୋଟାଏ ଦଳରୁ ଅସିଲଣି ତ ସେ ଭାଇ ଅଉ ଗୋଟାଏ ଦଳରୁ । ସ୍ୱାମୀ ସ୍ତ୍ରୀ ଭାଇ ଭଉଣୀ ଗୋଟେ ଦଳରେ । ଫଳରେ ସଂସଦ ଭିତରକୁ ଯେମିତି ହେଉ ନିଜ ଲୋକ ପୁଳାଏ ପଶିଗଲେ ହେଲା । ସଂଖ୍ୟାଗରିଷ୍ଠ ଦଳ ଓ ବିରୋଧୀ ଦଳ ସବୁ ସମାନ । କାରଣ ସବୁଠି ଗୋଟାଏ ସୂତ୍ର ଭିତରେ ରହିଛି, ସମ୍ପର୍କ ତ, ଭାଇ ବିରାଦରୀର । ତେବେ ଭୋଟରମାନେ ସବୁବେଳେ ନ୍ୟାୟ କରନ୍ତି ନାହିଁ । କଏ ପୁଅ ମାଇପ ସମେତ ସମୂଳେ ହାରିଯାଉଛି ତ କଏ ଶାଶୁ ଶଶୁର ଶାଳୀ ଶଳା ହୋଇ ସଦେ ଭିତରେ ପଶିଯାଉଛି । ଛିଃ ଛିଃ ଘୋର ଅନ୍ୟାୟ ଇଏ । କାହାକୁ ମେଞ୍ଚେ ତ କାହାକୁ ଖେଞ୍ଚେ ।

ହେଲେ ଯୁଗରେ, ହିଏ ପାନାଗ୍ରତ୍ରରେ ହେଉ କି ବାଗପଡତ୍ରର, ନ୍ୟାୟ ଅନ୍ୟାୟ କଥା କୋଉ ଦେଖାଯାଏ ଯେ ! ବର୍ତ୍ତମାନକୁ ଆମ ମତଦାତାମାନେ ନିଜ ନିଜ ଢଙ୍ଗରେ ନ୍ୟାୟ ଦେଇ ସାରିଛନ୍ତି । ସଂସଦ ଭିତରେ ଏକରସତା ଭରି ଦେବାକୁ ସେମାନେ ଚାହିଁ ନାହାନ୍ତି ! ଯେଉଁଠି ସେଠି ଗୋଟିଏ ଶୈଳୀର ଗାଳି ଫକିତ, ହାତ ଉଠାଉଠି ; ଯୋତା ମରାମରି ଟଣାଓଟରା ଭିଡ଼ାଭିଡ଼ି ହେଉଛି ସେଠି ମତଦାତା ନୂଆ ନୂଆ ଆକ୍ଟର—ବମ୍ବେଇ, ମାନ୍ଦ୍ରାଜ, କଲିକତା ହାଇଦ୍ରାବାଦ ପର୍ଯ୍ୟନ୍ତ ଯାଇ ଗୋଟେଇ ଆଣିଛନ୍ତି । ମାଡ଼ପିଟ, ନାଚଗୀତ ସିନେମା ଥିଏଟର ସକଳ ଉପାୟରେ ସଂସଦର ମନୋରଞ୍ଜନ ନିମିତ୍ତ ସୁଯୋଗ ଆଣି ଦେଇଛନ୍ତି । ସିନେମା ବାଲାଙ୍କୁ ସଂସଦ ସିନେମାରେ ପରମାନେଣ୍ଟ ଭାବରେ ମୁକରର କରିବାର ବେଳ ଆସି ପହଞ୍ଚିଛି ।

ଫଳାଫଳ ଆମ ଆଗରେ ଥୁଆ ହୋଇଛି ହେଲେ ପରିଣାମର ଭିନ୍ନ ଭିନ୍ନ ବ୍ୟାଖ୍ୟା କରାଯାଉଛି ଯାହା । କଏ ଏଇ ପରିଣାମ ପାଇଁ ଭୋଟରମାନଙ୍କୁ ଦାୟୀ କଲଣି ତ କଏ ରାହୁ-କେତୁ-ଶନି-ମଙ୍ଗଳ ଆଦି ଚତୁଃଗ୍ରହ କୁଟକୁ । କଏ କାହାର ଜିତିବା ନେଇ ଖୁସି ତ କଏ କାହାର ହାରିବାରେ ଆନନ୍ଦିତ । ଆମର ତ ବିଜୟୀ ଦଳରେ ଅନେକ ଦୁଃଖୀ ଏବଂ ପରାଜିତମାନଙ୍କ ଭିତରେ ଅନେକ ସୁଖୀ ଦେଖା-ଯାଉଛନ୍ତି । ଭୋଟର ଫଳ ବାହାରିଗଲା ପରେ ହିଁ ବିଜୟୀ ଦଳରେ ଅସନ୍ତୁଷ୍ଟ ଗୋଷ୍ଠୀ ଜନ୍ମ ନେବାର ମୁହୂର୍ତ୍ତ ଆସି ପହଞ୍ଚି ଯାଏ, ଆଉ ସେଇ ମୁହୂର୍ତ୍ତରେ ପରାଜିତ ଗୋଷ୍ଠୀର ଆନନ୍ଦ କହିଲେ ନସରେ । ବିଜୟୀ ଦଳରେ ଅସନ୍ତୁଷ୍ଟ ଗୋଷ୍ଠୀ ଜନ୍ମ ନେଲେ ପରାଜିତ ଦଳ ସନ୍ତୁଷ୍ଟ ହୁଅନ୍ତି । ଏକଥା ମଧ୍ୟ ସତ୍ୟ ନୁହେଁ ଯେ ପରାଜିତ ଗୋଷ୍ଠୀରେ ଅସନ୍ତୁଷ୍ଟ ନଥାନ୍ତି । ଥରେ ବିରୋଧୀଦଳର ଏଇମିତିକା ଜଣେ ଅସନ୍ତୁଷ୍ଟ ହୋଇଥିବା ବ୍ୟକ୍ତି ବଡ଼ ସନ୍ତୁଷ୍ଟ ଭାବରେ ରହସ୍ୟ ଖୋଲି କହୁଥିଲେ, 'କଥା ହେଉଛି ଆମେ ତ ସବୁବେଳେ ବିରୋଧୀ ହୋଇ ରହି ଆସିଛୁ । ଯେବେହେଲେ ବି ଆମେ

କ୍ଷମତା ପାଇନାହୁଁ । ହେଲେ ଗଲା କେଇ ବର୍ଷ ହେଲା ଆମ ବିରୋଧୀ ଦଳର ଭୂମିକା ମଧ୍ୟ କ୍ଷମତାସୀନ ଦଳ ଗ୍ରହଣ କରିଛି । କ ବିରୋଧୀ ଦଳ କ ଦରକାରୀ ଦଳ, ସବୁକୁ ଅସନ୍ତୁଷ୍ଟ ଗୋଷ୍ଠୀ ଚଳାଇଥାନ୍ତି । ଆଉ ସେମାନଙ୍କ ପାଇଁ ହାରିବା ଜିତିବା ଉଭୟ ସମାନ । ଆମେ ସବୁ ପ୍ରକାର ସ୍ଥିତିରେ ଖୁସି ।

ହେଇପାରେ ସେ ଭଦ୍ରଲୋକ ଠିକ୍ କହୁଛନ୍ତି । ନିର୍ବାଚନ ବିଶ୍ଳେଷକ ଓ ବିଜ୍ଞାନୀର ପଣ୍ଡିତ ରାଜନୈତିକ କ୍ଷେତ୍ରରେ ବାମ-ଦକ୍ଷିଣର ଧ୍ରୁବୀକରଣ [Polarisation] ର କଥା ଉଠାନ୍ତି । ହେଲେ ନିର୍ବାଚନ ପରିଣାମ ତ ସବୁ ଦଳକୁ ଏକା ଭଳିଆ ବୋଲି ପ୍ରମାଣ କରୁଛି । ଏଣୁ ପାର୍ଟିମାନଙ୍କର ଏକତା ପାଇଁ ଆମକୁ ନିର୍ବାଚନୀ ବୁଲଡୋଜରର ପ୍ରୟୋଗ କରିବାକୁ ହେବ ।

ନିର୍ବାଚନର ଫଳାଫଳ ଆମ ଆଗରେ ଥୁଆ ହେଇଛି । ନେତା ସଂସଦ ଏବଂ ହେଠାରୁ ବିଦେଶ ଯାତ୍ରାର ଯୋଜନାକୁ କ୍ରିୟାନ୍ୱିତ କରିବା ପାଇଁ ଦର୍ଶି ଦୌଡ଼ ଦର୍ଶି ଉଡ଼ାଣ ଆରମ୍ଭ କରି ସାରିଲେଣି । ଭଗବାନ ଚାହିଁଲେ ନିର୍ବାଚନ ମଣ୍ଡଳମାନଙ୍କରେ ଆଗାମୀ ପାଞ୍ଚବର୍ଷ ପାଇଁ ଶାନ୍ତି ବିରାଜମାନ କରିବ । ଏବକୁ ସହରମାନଙ୍କରେ ଚିରି ପୁରୁଣା ନିର୍ବାଚନୀ ପୋଷ୍ଟରମାନ ଝୁଲୁଛନ୍ତି । କାନ୍ଥମାନଙ୍କରେ ଲେଖାଯାଇଥିବା ନିର୍ବାଚନୀ ସ୍ଲୋଗାନ ଗୁଡ଼ିକ, ପଢିବା ପାଇଁ ରହିଯାଇଥିବା ମତଦାତାଙ୍କ ମନରେ ବିରକ୍ତି ଭରି ଦେଉଛି ।

—※—

# ଚାଲ ଆର୍ଯ୍ୟପୁତ୍ର ! ରାୟବରେଲି ଚାଲ !

**□ କେ. ପି. ସାକସେନା**

ଆରେ ବାପରେ; ଏଏ କି କଳା ! ମନେ ଦଉଲକ୍ଷଣି କଲଜାର ବାଁ । ଉଡ଼ରୁ ଗୋଟାଏ କ'ଣ ବାହାରି ଆସୁଛି । ମନ ଲକ୍ଷ୍ନୌ ପରତାପଗଡ଼ ମଝିରେ ଛଟପଟ ହେବାକୁ ଲାଗୁଛି, ଆମ୍ଭାରୁ ଖାଲି ନରୁଡା ଇଂରାଜୀ ଭକ୍ ଭକ୍ ହୋଇ ବାହାରି ପଡ଼ୁଛି । ଓ୍ୱାନ୍ସ ଅପନ ଏ ଟାଇମ୍ ଦେୟାର ଓ୍ୱାଜ ରାୟବରେଲି, ହିନ୍ଦୁସ୍ଥାନର ପ୍ରତ୍ୟେକ ସଡ଼କ ରାୟବରେଲିରୁ ଆରମ୍ଭ ହୋଇ ସେଇ ରାୟବରେଲିରେ ସମାପ୍ତ ହୋଇଥାଏ । ପରମ ବ୍ରହ୍ମାଙ୍କ ପରି ରାୟବରେଲି କହିଲେ ସାରା ଦେଶଟାକୁ ବୁଝାଏ, ଦେଶ କହିଲେ ରାୟବରେଲିକୁ । ରାୟବରେଲିକୁ ଛିଙ୍କ ଆସିଲେ ସାରା ଦେଶଟା ଯାକ ନାସିକାରୋଗଗ୍ରସ୍ତ ହୋଇ ନାକ ପୋଛିବାରେ ଲାଗିଯାଏ । ମୁଁ କୋୟାମ୍ବାଟୁର ବା କୋଚ୍ଚାୟାମ ବି ଯାଉଥିଲି ଆଉ ଛତ୍ରପିରୁ ଆସିଛି ବୋଲି କହିଲେ ଲୋକମାନେ ଖୁସି ହୋଇ ପଚାରୁଥିଲେ, ଅଚ୍ଛା ! ରାୟବରେଲିର ? ଏବେ ଆମ ରାୟବରେଲି ଅବସ୍ଥା କେମିତି ? ମୁଁ ମୂଳତଃ କେବଳ ବରେଲି ( ବାଂଶବରେଲି ) ର ଅଧିବାସୀ, ହେଲେ ସେମାନଙ୍କ ରାୟରେ ମୁଁ ରାୟବରେଲିର ଅଧିବାସୀ । ସାରା ଦେଶର ରାଜନୀତି ଏଠୁ ଫୁଟିକରି ବାହାରେ । ବଛରଓ୍ୱାଁ ବା ଝଣ୍ଟାହାର ଦେଇ ପାସ୍ କଲାବେଳେ ମନେ ହେଉଥିଲା ଯେ ସତେ ଯେମିତି ମୁଁ ହିନ୍ଦୁସ୍ଥାନରେ ପହଞ୍ଚୁଛି । ରାୟବରେଲି ଗୋଟାଏ ବଡ଼ ଓଭରକୋଟ ଯାହାର ପକେଟରେ ସମଗ୍ର ଦେଶଟା ଖୁନ୍ଦାଖୁନ୍ଦି ହୋଇ ପଶିଯାଇଛି ।

ରାୟବରେଲିର ସବୁ ଭଙ୍ଗାରୁଜା ଘରଗୁଡ଼ାକ ମଧ୍ୟ ସେତେବେଳେ ଲଣ୍ଡନର ଟେନ୍ ଡାଉନିଙ୍ଗ ଷ୍ଟ୍ରିଟର ଭବ୍ୟ ପ୍ରାସାଦପରି ଦେଖାଯାଉଥିଲା । ପ୍ରତ୍ୟେକ ରାୟବରେଲିୟାନ ମାଟି ଉପରୁ ଦୁଇଖଣ୍ଡେ ଉଞ୍ଚାରେ ହୁମାୟୁନ ପରି ହୁମ୍ମୁ ହୁମ୍ମୁ ହୋଇ ଚାଲୁଥାଆନ୍ତି । ଆଗରେ ପଛରେ ଗୋଟାଏ ଲେଙ୍ଗୁଟି ମାରି ହାବୁଡ଼ଗଲେ ଅଫିସର ବାବୁର ଧଡ଼ାଧଡ଼ ଚୌକିରୁ ଉଠି ପଡ଼ୁଥିଲା । ତା ଫାଇଲକୁ ମଧ୍ୟ ଫଟାଫଟ କରି ଦିଆଯାଉଥିଲା । ଯଦିଓ ଅନେକ ରାୟବରେଲିଆନ୍ ଇନ୍ଦିରାଜୀଙ୍କ ଫଟ ମଧ୍ୟ

ଦେଖି ନଥିଲେ ତଥାପି ସେମାନେ ଏମିତି ଫୋକସ୍ ଜଞ୍ଜାକରି ରହିଥିଲେ ଯେ ସତେ ଯେମିତି ମାଡ଼ାମ୍ ନଇତ ଆସି ତାଙ୍କ ଘରେ ଗୁ'ଜଲଖିଆ କରୁଥିଲେ । ସେତେବେଳକୁ ସାଗର ଏବଂ ଚୋପ୍ରା ନିଜର ରାମାୟଣ ଓ ମହାଭାରତ ନେଇ ଟିଭିରେ ପଶି ନଥାନ୍ତି । ତଥାପି ମଧ୍ୟ ରାଜନୀତିରେ ପ୍ରବେଶ କରିବାକୁ ଉତ୍କଣ୍ଠିତ ହେଉଥିବା ନବଯୁବକ ନିଜ ବାପାଙ୍କୁ ଯାଇ କହୁଥିଲା, 'ପିତାଶ୍ରୀ ! ଆଶୀର୍ବାଦ ଦିଅନ୍ତୁ, ମୁଁ ରାୟବରେଲି ଯାଉଛି ।'' 'ଆଉ ପୁଅକୁ ଆଶୀର୍ବାଦ ଦେଇ ବାପ କହୁଥିଲା, ''ଯାଅ ଆର୍ଯ୍ୟପୁତ୍ର ! ରାୟବରେଲି ତୁମର ରକ୍ଷା କରୁ । କଂଗ୍ରେସ ଆଇକୁ ପ୍ରାପ୍ତଂ ଭବ ।'' ଆଉ କେତେ ଯେ ଅକର୍ମଣିଆ, ନୀଚକର୍ମୀ ବଦମାସ ଆର୍ଯ୍ୟପୁତ୍ର ସେହି ସମୟରେ କଂଗ୍ରେସ ଆଇର ଝଲକ ଝୁଣ୍ଟରେ ମାରି ରାୟବରେଲିରୁ ଦେଶସାରା ବ୍ୟାପିଗଲେ । ବିକାଶ ଏବଂ ପ୍ରଗତିର ପ୍ରତ୍ୟେକ ଯୋଜନା ଉଦ୍ଦିଷ୍ଟ ଥିଲା ରାୟବରେଲି ପାଇଁ । ପ୍ରତ୍ୟେକ ନେତା ନିଜ ନିଜ ପିତୃଶ୍ରାଦ୍ଧ ଅବସରରେ ଏହି ନିର୍ବାଚନମଣ୍ଡଳୀର ଜଳ ପାଣିରେ ଗାଧୋଇ ନିଜକୁ ପୁଣ୍ୟବନ୍ତ, ଶୁଚିମନ୍ତ କରି ତୋଳୁଥିଲେ । ସେତେବେଳେ ତ କେତେଜଣ ସଜେସନ ଦେଇଥିଲେ ଯେ କୁମ୍ଭମେଳାକୁ ପ୍ରୟାଗରୁ ସ୍ଥାନାନ୍ତରିତ କରି ରାୟବରେଲିକୁ ନେଇ ଆସାଯାଉ । ସବୁଠୁ ବଡ଼ କଥା ଏମିତି ହେଲା ରାୟବରେଲି ଯେ ସେ ଭୂଇଁରେ ପାଦ ଦେଲାକ୍ଷଣି ପ୍ରତ୍ୟେକ ପାର୍ଟିର ସମସ୍ତ ପାପ ଧୋଇ ହୋଇ ଯାଉଥିଲା । ଅବନୀ ମଣ୍ଡଳେ ସେ ତ ପତିତପାବନୀ ।

ପୁଣି କେଜାଣି କ'ଣ ହେଲା ? କୋଉ ଡାହାଣୀ ଆଖି ପକେଇ ଦେଲା, କୋଉ ପିତାଶୁଣିର ହାଇ ପଡ଼ିଲା, ବାହୁବନ୍ଧନ ଖୋଲିଗଲା, କୋର୍ଟ କଚେରି ସମନ ଓ୍ବାରେଣ୍ଟ ହେଲା, ଅଗାବଗା ଗଭର୍ଣ୍ଣମେଣ୍ଟ ଆସିଲା ଆଉ ମହାନ ରାୟବରେଲିରେ ଧୂଳି ଉଡ଼ିଲା । ବାସୁଦେବ ରୋହିଣୀ ସ୍ଥାନରେ ଦେବକୀର ହାତ ଧରିଲେ । ଆଉ ରାୟବରେଲିର ମଙ୍ଗଳସୂତ୍ର ଅମେଥି ଗଳାରେ ପଡ଼ିଲା । ପୁରା ଇଣ୍ଡିଆ ଆମେଥିମୟ ହୋଇଗଲା ଆଉ ଆର୍ଯ୍ୟପୁତ୍ରଗଣ ରାୟବରେଲିର ଷ୍ପେଲିଙ୍ଗ ମଧ୍ୟ ଭୁଲିଗଲେ । ଏମିତିକି ରାୟବରେଲି ଓ ବରେଲି ଦୁଇଟା ଭିନ୍ନ ଭିନ୍ନ ସହର ଅଛି ବୋଲି ମଧ୍ୟ ଲୋକେ ଭୁଲିଗଲେ ।

ମାତ୍ର ତା ନୁହେଁ । ଧୈର୍ଯ୍ୟଧରରେ ପାପିମନା । ବିଶ୍ୱସ୍ତ ସୂତ୍ରରୁ ଜଣାଯାଇଛି ଯେ ରାୟବରେଲିର ଝଙ୍ଗାଫୁଙ୍କା ଆରମ୍ଭ ହୋଇ ଯାଇଛି । ଫାମିଲି ପାମିଲି ଆରମ୍ଭ ହୋଇଛି । ଆମେଥିବାଲା ଏବେ ମୁହଁ କରି ବସିଛନ୍ତି । ଇଏ କିମିତି କଥା ବା ? ଆମର ରାୟବରେଲିର ତାରୁଣ୍ୟ ବିପକ୍ଷ ଦଳର ଅରୁଣିମା ତଳେ ରୁଦ୍ଧଶ୍ୱାସ ହୋଇ ପଡ଼ି ରହିବ ? ଆମେ ଦେଖିବା ଏବଂ ଦେଖିକରି ରହିବା ଯେ ଇଏ ଜାଗା ଆମର, ରହୁ ଯେ ଯୋଗ୍ୟ ମହାତ୍ମଲେ । ସେଇମିତି ତାର ସ୍ଥିତି ରହିବ, ସମ୍ମାନ ରହିବ । ଅବନୀ

ଚଳନ୍ତ ହୋଇ ରହିବ । ଠିକ ଯେମିତି ଥିଲା, ଓ୍ୱାନ୍ସ ଅପନ ଏ ଟାଇମ ! ଲୋକମାନେ ଏକ ଅରେକ ବଳି ବଳୀୟାର, ଏକକୁ ଅରେକ ବଳି ବାହାଦୂର, ଏହାକୁ ଆରେକ ବଳି ଗୋଲମି ଆଉ ସ୍ୱତନ୍ତ୍ରକୁ ଦୌଡ଼େଇ ଦେଇଥିବା ରାୟବରେଲି । ଯେଉଁ କ୍ୟାପଟେନମାନଙ୍କୁ ଆମେଥିରେ ନିଯୁକ୍ତ କରାଯାଇଥିଲା, ସେମାନଙ୍କୁ ଏବେ ଏହି ସହରର ଦାୟିତ୍ୱ ଅର୍ପଣ କରାଯାଇଛି । ଆମେଥି ବି ଆମର ରାୟବରେଲି ବି ଆମର । ଆପଣ ପଛେ ମୁଙ୍ଗେରୀଲାଲ ହୋଇ ହସିନ୍ ସପନେ ଦେଖି ଚାଲନ୍ତୁ । ଆଉ ଯୁକ୍ତି ଚାଲନ୍ତୁ ଏକତା ଆଣିବାର ନିଶାରେ । ହେଲେ ଏବକୁ ଘୋଡ଼ାକ ଯାକ ଜାଗା କାନ ପାତି ବସିଛନ୍ତି, ଅଉ ସ୍ୱାଗତ ଜଣାଇ କହୁଛନ୍ତି, ଆସ ଯୁବରାଜ, ଯୁଦ୍ଧର ଘୋଡ଼ାକୁ ଆମର ଭୂଇଁରେ ଯୋଚ । ଯୁବରାଜ ତ ଅମେଥିରୁ ଶଙ୍ଖ ଫୁଙ୍କି ସାରିଲେଣି । ଆଉ ମୋର ରାୟବରେଲି । ତୁମକୁ ବି ତୁମ ଆଶୀର୍ବାଦ ମିଳିବା ଚାହି । ଆମେ କାଇଁ ଥିଲୁ ତକ ଆମର ଜୀବନରେ ଘରଦ୍ୱାରରେ ଥାଳି ଦେବୁ ନାହିଁ ପରସିବାକୁ, କସ୍ମିନ୍ କାଳେ ନୁହେଁ ।

ଏଇମିତି ତ ଇଣ୍ଡିଆ ଇଜ ଆମେଥି । ଆମେଥି ଇଜ୍ ଇଣ୍ଡିଆ । ହେଲେ ରାୟବରେଲିର ଝଗଡ଼ାପୋଛା ମଧ୍ୟ ଆରମ୍ଭ ହୋଇଗଲଣି । ମୁଁ ଖାଲି ଖୁସି ଯେ ପୁରୁଣା ମହାରାଣୀଙ୍କ ପଲଙ୍କ ଉପରେ ବସିବାକୁ କେହି ପସନ୍ଦ କରୁନାହାନ୍ତି । ନାରାୟଣ (ଦତ୍ତ)ଙ୍କ କୃପା ଚାହିଲେ ରାୟବରେଲି ଅହିଅସୁଲକ୍ଷଣୀ ହୋଇ ରହିଥିବେ । ମୁଁ ଖାଲି ବରେଲିର । ଏଣୁ ଗୋଟାଏ କିଛି ନିଷ୍ପତ୍ତି ଘୋଷଣା କରି ରାୟବରେଲି କଥାରେ ଗୋଡ଼ ପୂରେଇବାକୁ ଚାହୁଁନାହିଁ । ହେଲେ ତା ଆଖିରେ ଯେଉଁ ଯନ୍ତ୍ରଣା, ଆଶଙ୍କା ବନ୍ଦୀହୋଇ ରହିଛି ତାଙ୍କୁ କେମିତି ବା ଭୁଲି ପାରିବ ? ତା ଛଡ଼ା ଜାଗା ଦୁଇଟା ଭିତରେ କେଉଁଠି ବା ଦୂରତା ? ଖୁବ୍ ବେଶୀରେ ଷାଠିଏ କି.ମି. । ଗ୍ରେଟିଆ ମୋଟିଆ ପାଞ୍ଚୁଟା ଷ୍ଟେସନ ଜମାରୁ ଦୁଇଟା ଯାକ ଜାଗା ଭିତରେ । ଆମେଥିରେ ଲୋବାନ୍ ଜଳେଇଲେ ବାସ୍ନାରେ ରାୟବରେଲି ମହକି ଉଠିବ । ଖାଲି ଯାହା ପବନର ଗତି ଉପରେ କଥା । ଜନାବ୍ ! ଆପଣଙ୍କର ଚରଣ ଦାସ ଟାଲି ଏତିକି ପ୍ରାର୍ଥନା କରୁଛି ଯେ ରାୟବରେଲିର ମଥାର ସିନ୍ଦୂର ଟୋପା ସେଇମିତି ରହୁ । କେତେ ବରଷର ସଧବା ମାଇପିଟାକୁ ହଠାତ ବିଧବା କରିବା ଠିକ ହେବ ନାହିଁ । ବରେଲି ଉପରେ ତ ଦୃଷ୍ଟି ଦେବାର ନାହିଁ । ବରଂ ଲକ୍ଷ୍ନୌରେ ବସି ମୁଁ ରାୟବରେଲିର ରୂପମାଧୁରୀ ଉପଭୋଗ କରୁଥିବି ।

—*—

# ବଡ ହେଉଥିବା ଲୋକମାନେ

□ ରାମଧାରୀ ସିଂହ ଦିବାକର

(ଜନ୍ମ : ଜାନୁଆରୀ ପନ୍ଦର, ୧୯୪୫ ବିହାର ପ୍ରଦେଶାନ୍ତର୍ଗତ ନରପତଗଂଜ (ପୂର୍ଣ୍ଣିଆ ଜିଲ୍ଲା) ଠାରେ । ଉଲ୍ଲେଖ ଯୋଗ୍ୟ ରଚନା ! "ନୂଆ ଗାଁରେ", "ପୃଥକ ପୃଥକ ଅପରିଚୟ" "ମାଟିରୁ ସ୍ୱର୍ଗ ଯାଉଥିବା" (ଗଳ୍ପ ସଂଗ୍ରହ), "ପଞ୍ଚମୀ ତତ୍ତ୍ୱ ପୁରୁଷ" (ଉପନ୍ୟାସ) । ସଂପ୍ରତି ଦରଭଙ୍ଗା ବିଶ୍ୱବିଦ୍ୟାଳୟ ଅଧିନସ୍ଥ ସି ଏମ୍ କଲେଜ, ହିନ୍ଦୀ ଭାଷା ଓ ସାହିତ୍ୟ ବିଭାଗର ପ୍ରଫେସର । ଯୋଗାଯୋଗ. ୨ ଟିଚର୍ସ କ୍ୱାର୍ଟର୍ସ, କଲବାଟ, ଶୁଧଙ୍କର ପୁର, ଦରଭଙ୍ଗା ।)

କୋଉ ବା ଗୁଡ଼ାଏ ଦିନର ପାର୍ଥକ୍ୟ ! ତଥାପି ଗାଁକୁ ଫେରି ଆସନ୍ତେ ବିନ୍ଦାବାବୁ ଗୋଟାଏ ଅଲଗା ପ୍ରକାରର ଆନନ୍ଦ ଅନୁଭବ କରୁଥିଲେ । ପାଞ୍ଚ ଛ'ମାସ ତଳେ ସେ ଗାଁକୁ ଆସିଥିଲେ । ସେତେବେଳେ ବୋଉର ଦେହଖରାପ ହୋଇଥିଲା । ଖବର ପାଇଲା ମାତ୍ରେ ଆସିଥିଲେ । କିନ୍ତୁ ଏଥରକ ଗୋଟାଏ ବିଶେଷ ଉଦ୍ଦେଶ୍ୟନେଇ ଆସିଥିଲେ । ଆଉ ସେଇ ବିଶେଷ ଉଦ୍ଦେଶ୍ୟ କଥା ଭାବିଲାବେଳକୁ ଏକ ବିଚିତ୍ର ଧରଣର ଆନ୍ତରିକ ଆନନ୍ଦରେ ସେ କୁରୁକି ଉଠୁଥିଲେ । ବିଦେଶରେ ବନ୍ଧହୋଇ ଯାଉଥିବା ମନକୁ ମୂଳ ମମତାର ଅମୀୟ ସ୍ପର୍ଶରେ ଆହ୍ଲାଦିତ କରୁଥିବା ଭାବନାର ମୂଳହେଉଛି ଗାଁ-ଘର । ଅଭାବ, ବେକାରୀ ଓ ପାରସ୍ପରିକ କଳିତକରାଳ ପାଇଁ ଗାଁ ଛାଡ଼ିବାକୁ ପଡ଼ିଥିଲେ ମଧ୍ୟ ସହର ବିଦେଶରେ ଥିଲାବେଳେ, ଗାଁ-ଘର ପାଇଁ ମନରେ ଗୋଟାଏ ଦୁର୍ନିବାର ଆକର୍ଷଣ ସବୁଦା ରହିଥାଏ । କିନ୍ତୁ ବିନ୍ଦାବାବୁଙ୍କ କଥା ଅଲଗା । କୌଣସି ଆବେଗ ବା ଭାବପ୍ରବଣତାର ବଶବର୍ତ୍ତୀ ହୋଇ ସେ ଗାଁକୁ ଆସନ୍ତିନାହିଁ, ଗାଁରେ ଛାଡ଼ିଯାଇଥିବା ପରିବାରଟିର ବାର ଭଲମନ୍ଦରେ ତାଙ୍କୁ ଆସିବାକୁ ପଡ଼େ ଓ ତାହା ପୁଣି ପ୍ରତି ଗ୍ରୀଷ୍ମମାସରେ । ସବୁବେଳେ କିଛି ନା କିଛି ସମସ୍ୟା ଦେଖାଦିଏ ଓ ସେ ଗାଁକୁ ଆସନ୍ତି ।

ହେଲେ ଏଥରକ କିନ୍ତୁ କଥାଟା ସମ୍ପୂର୍ଣ୍ଣ ଅଲଗା । କୌଣସି ସମସ୍ୟା ଲାଗି ଏଥରକ ସେ ଗାଁକୁ ଆସିନାହାନ୍ତି, ଅନେକ ବର୍ଷପରେ ତିନଭାଇଯାକ ଏକାଠି ହେବେ ।

ବୋଉ ଥିବ । ଅନୁ ଭଉଣୀ ବି ଥିବ । ଆଉ ଭିନ୍ନ ଭାଇ ସେମାନଙ୍କର ପିଲାପିଲି ଧରି ଆସିଥିବେ । ସମସ୍ତେ ଏକାଠି କୋଇଦିନ ନିଜ ଘରେ ନିଜଗାଁରେ ରହିବେ ଏକାଠି ଖିଆପିଆ, ଗପସପ, ମଉଜମଜଲିସ ହେବ । ଦୁଃଖନାହିଁ କି ସମସ୍ୟାନାହିଁ । ଏଣୁ ରହିବାଟା ସମ୍ପୂର୍ଣ୍ଣ ଖୁସିବାସିର ଯୋଜନା । ଏ ସୁଯୋଗ ତ ମୋଟେ ମିଳେନାହିଁ । ଯାହାଠାରୁ ବଳି ଆଉ ବଡ଼ କଥା କ'ଣ ଅଛି ? ବନ୍ଧାବାବୁଙ୍କ ପାଇଁ ? ସେ ତିନିଯାକ ସାନଭାଇଙ୍କୁ ଏଥିପାଇଁ ବୁଝାବୁଝି କରି ମନେଇବାରେ ବନ୍ଧାବାବୁଙ୍କୁ ଯଥେଷ୍ଟ ଚେଷ୍ଟା କରିବାକୁ ପଡ଼ୁଛି । ଡ.ଏସ୍. ପି କମଳେଶଙ୍କୁ କେତେବେଳେ ବା ବେଳ ମିଳୁଛି ଯେ ? ଆଉ ବାକି ରହିଲା ରାଜେଶର କଥା । ତା' ଗୃହକର୍ମରେ ଖାଲି ଉପୁରି ପଇସା । ଉପୁରି ପଇସା ଗୋଟାଇବାରେ ସେ ଏତେ ବ୍ୟସ୍ତ ଯେ ଗାଁ, ଘର, ଭାଇମାନଙ୍କ କଥା କେତେବେଳେ ଭାବିବ ? କେବେ କେମିତି ବର୍ଷେ ଦି'ବର୍ଷରେ ସେ ଯାଇ ଭାଇମାନଙ୍କୁ ଦେଖାକରି ଆସୁଥିଲେ, କିନ୍ତୁ ବୋଉ ଆଉ ବାଳବିଧବା ଭଉଣୀ ଅନୁ ·· । ସେମାନେ ସବୁବେଳେ ବ୍ୟସ୍ତ ହେଉଥିଲେ ଦୁହିଁଙ୍କ ପାଇଁ । ଅଉ ନାଁ କମଳେଶ ନାଁ ରାଜେଶ କେହି ଠିକିଏ ହେଲେ ବୋଉ କି ଅନୁ କେମିତି ଅଛନ୍ତି, କେମିତି ଚଳୁଛନ୍ତି, ଯୋଉତକ ଜମିବାଡ଼ି ଅଛି ସେତକ କେମିତି ଅଛି, ଭୁଲରେ ବି ପୁଛା ଭାବୁ ନଥିଲେ । ଯଦିବା କେବେ ବନ୍ଧାବାବୁ ସାନଭାଇମାନଙ୍କୁ ଏସବୁ କଥା କହନ୍ତି, ସେମାନେ ନିଜ ନିଜ ଭାଷାରେ ସେଇ ଗୋଟିଏ କଥା କହନ୍ତି, ଭାଇ ! ଆପଣ ତ ଅଛନ୍ତି, ସବୁ ବୁଝାବୁଝି କରୁଛନ୍ତି । ଟଙ୍କା ପଇସା ଦରକାର ଯଦି ନେଇ ଯାଆନ୍ତୁ । ଆପଣ ଥାଉ ଥାଉ ଆମେ ବା କ'ଣ ଅଧିକା କରିପାରିବୁ ? ତା'ଛଡ଼ା ସେସବୁ କଥା ବୁଝିବାପାଇଁ ଆମର ମଧ୍ୟ ବେଳ କାହିଁ ଯେ ?

ଏବେ ବହୁ ବୁଝାଶୁଝାରେ କେତେକଷ୍ଟରେ ବେଳ ମିଳିଛି, କମଳେଶ ଓ ରାଜେଶଙ୍କୁ । ସେ ପୁଣି ଦୁଇ ତିନିଦିନ ପାଇଁ । ବହୁ ବର୍ଷପରେ ଦୁହେଁ ଗାଁକୁ ଆସୁଛନ୍ତି । ଖାଲି ଆସୁଛନ୍ତି ନୁହେଁ, ପିଲାଙ୍କୁ ଧରି, ସାରା ପରିବାର ଏକାଠି ହେବେ । ଗଲା ପାଞ୍ଚ ଛ'ମାସ ହେଲା ଏଇ ଗୋଟାଏ ଚିନ୍ତା ଲାଗିଥିଲା ବନ୍ଧାବାବୁଙ୍କୁ । କେତେ ନା କେତେ ଚିଠି ଲେଖିଥିଲେ । କମଳେଶ ଓ ରାଜେଶ, ଦୁହିଁଙ୍କୁ ଅଲଗା, ଅଲଗା ଭେଟି କଥାବାର୍ତ୍ତା କରିଥିଲେ । କେତେ ପ୍ରକାରେ କାକୁତିମିନତି ହେଲାଭଳିଆ ବୁଝାଶୁଝା କରିଥିଲେ । ତା'ପରେ ଯାଇଁ ଭାଇ ଦି'ଜଣଯାକ ନିଜନିଜ ପିଲାଛୁଆଙ୍କୁ ନେଇ ଗାଁକୁ ଆସିବା ପାଇଁ ରାଜି ହେଲେ । ରାମନବମୀକୁ ଆସିବା-ପାଇଁ ସ୍ଥିରହେଲା । କିନ୍ତୁ ସେତକବେଳେ କମଳେଶର ସୁବିଧା ହେଲାନାହିଁ । କହିଲା ଯେ, ରାମନବମୀବେଳକୁ ସାମ୍ପ୍ରଦାୟିକ ଦଙ୍ଗାହାଙ୍ଗାମାଲାଗି ପୁଲିସବାଲାଙ୍କର ନାକୁଆଣୀ ବେଳ ଯେଇଟା । ଆଖିରେ ଏପ୍ରିଲ ପାଞ୍ଚ ତାରିଖଟାକୁ ଧାର୍ଯ୍ୟକରାଗଲା ।

ଆଜି ଏପ୍ରିଲ ପାଞ୍ଚ ତାରିଖ ନୁହେଁ, ଛ'ତାରିଖ। ବନ୍ଧାବାବୁ ପିଲାଙ୍କୁ ନେଇ ଗାଁରେ ପହଞ୍ଚୁଛନ୍ତି। କାଲିଠାରୁ କମଳେଶ ଓ ରାଜେଶ ଆସି ପହଞ୍ଚିଯାଇଥିବେ। ସ୍ତ୍ରୀକୁ କହନ୍ତି ବିଧିର ବିଡମ୍ବନା। ନିଜେ ଦିନ ଧାର୍ଯ୍ୟକଲେ। ନିଜେ ସବୁ ଯୋଜନାକଲେ, ହେଲେ ନିଜଆଡ଼ୁ ହେଲାହେଲି। ଗୋଟିଏ ଦିନ ପରେ ଯାଇ ଗାଁରେ ପହଞ୍ଚୁଛନ୍ତି। ସେ ହେଲେ କଅଣ କରିପାରିଥାଆନ୍ତେ? ନଗରନିଗମର ସ୍କୁଲମାନଙ୍କରେ ଦରମାମିଳିବାରେ କୌଣସି ଠିକ୍‌ଠିକଣା ନାହିଁ, ଶେଷକୁ ଯେତେବେଳେ ଦରମା ମିଳିବନାହିଁ ବୋଲି ଜାଣିଲେ, ଯା'ଠାରୁ ତା'ଠାରୁ ଧାରଉଧାର କରି ଗାଁକୁ ବାହାରିଲେ। ସ୍ତ୍ରୀ, ସବାବଡ଼ ଝିଅ ଶାରଦା ଆଉ ସବା ସାନପୁଅ କିଶୋରଙ୍କୁ ସାଙ୍ଗରେ ଆଣିଲେ।

ବାଟସାରା ସେ ଖାଲି ଘରେ ପହଞ୍ଚିବା କଥା ଭାବିଚାଲିଥିଲେ। ସାନଭାଇ ଦୁହିଁଙ୍କୁ ଗାଁ। ଘରେ ଦେଖିବାର ସମ୍ଭାବନା ସୁଖରେ ସେ ଅଭିଭୂତ ହୋଇପଡୁଥିଲେ। ଦୁଇ ଭାଇଯାକ କେମିତି ସମ୍ମାନାସ୍ପଦ ପଦରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି! କମଳେଶ ଡ଼ି ଏସ୍ ପି ଏବଂ ସାନ ରାଜେଶ ସୀମା-ଶୁଳ୍କ-ଅଧିକାରୀ। ଚଳିବରଷ ରାଜେଶ ଗୋଟାଏ ଗାଡ଼ି କିଣିଛି। କମଳେଶ ତ ପୁଲିସ ଜିପ୍‌ରେ ଆସିଥିବ। ଗାଁର ସେଇ ଭଙ୍ଗାଦଦରା, ଆପାତତଃ ପରିତ୍ୟକ୍ତ ଘରର ଦୁଆରମୁହଁରେ ଦୁଇଦୁଇଟା ଗାଡ଼ି ଠିଆ ହୋଇଥିବ। ପିଲାଛୁଆଙ୍କର ଗହଳଚହଳ ଲାଗିଥିବ। ଦୁଇଭାଇ, ସେମାନଙ୍କର ଦୁଇ ସ୍ତ୍ରୀ, ପିଲାଏ···ନିର୍ଜନ ଘରଟାରେ ନୂତନ ଜୀବନ ସଞ୍ଚାର କରୁଥିବେ।

ଯେବେ ବି ବନ୍ଧାବାବୁ ସାନଭାଇ ଦୁହିଁଙ୍କ କଥା ଭାବନ୍ତି, ସେତେବେ ତାଙ୍କର ମନ ଏକ ବିଶିଷ୍ଟ ସାତ୍ତ୍ୱିକ ଅହଂଙ୍କାରରେ ଭରିଉଠେ। ନିଜ ଉପରେ ତାଙ୍କର ଗର୍ବ ଆସେ। କମଳେଶ ଓ ରାଜେଶଙ୍କୁ ପାଠ ପଢ଼େଇ ମଣିଷ କରିବାପାଇଁ ତାଙ୍କୁ କି କଠୋର ସଂଗ୍ରାମ କରିବାକୁ ନ ପଡ଼ିଛି! ଆଇ ଏ ପ୍ରଥମ ଶ୍ରେଣୀରେ ପାସ୍‌କରି ସେ ବି ଏ ରେ ନାଁ ଲେଖାଇଥାଆନ୍ତି ଯେ ବାପାଙ୍କର ଦେହାନ୍ତ ହେଲା। କମଳେଶ ହାଇସ୍କୁଲ ହଷ୍ଟେଲରେ ରହି ପଢ଼ୁଥାଏ, ସେତେବେଳକୁ ତା'ର ନବମ। ରାଜେଶ ମାଇନର ପାସ କରିଥାଏ, ଘରର ଆର୍ଥିକ ପରିସ୍ଥିତି କଥା ନକହିଲେ ଭଲ। ଜମି ବୋଇଲେ ଛ'ମାଣ, ସେଥିକରୁ ଯାହାମିଳେ ତହିଁରେ କଷ୍ଟେମଷ୍ଟେ ଖୋରାକି ଉଠିଯାଏ, ଯୋଗକୁ ପାଟଣା ସଚିବାଳୟରେ ଚାକିରି କରୁଥିବା ପିଉସା ପାଟନାରେ ତାଙ୍କ ପାଇଁ ଚାକିରିଖଣ୍ଡିଏ ଯୋଗାଡ଼ କରିଦେଲେ, ନଗରନିଗମର ମାଇନର ସ୍କୁଲରେ ଶିକ୍ଷକତାର ଚାକିରି। ବନ୍ଧାବାବୁ ଭାବିଲେ, ପାଟନାରେ ଯଦି ରହିବ ତାହାହେଲେ ଭାଇ ଦୁହିଁଙ୍କର ପଢ଼ାପଢ଼ି ଯଥାକଥା ହୋଇପାରିବ। ବାହାରେ ରଖି ପଢ଼େଇବାର, ପୁଣି ଦୁଇ ଦୁଇଟା ଭାଇଙ୍କୁ ପଢ଼େଇବାର ବଳ କୋଉଠି

ଅଛି ଯେ ? ଶେଷକୁ ସେ କମଳେଶ ଓ ବ୍ରଜେଶଙ୍କୁ ସାଙ୍ଗରେ ପାଟଣା ନେଇଗଲେ । ତାହାର ମାସ କେତୋଟା ପରେ ବୋଉ ଧର୍ଦ୍ଧନ ରୋଗରେ ପଡ଼ିଲା । ନଳୀଗୋଡ଼ ହାଡ଼ ଭିତରେ ଗୋଟାଏ କ'ଣ ରୋଗ ହେଲା ଯେ ପାଟଣା ଡାକ୍ତରଖାନାରେ ଛଅମାସ ଯାଏଁ ବୋଉ ରହିଲା । ଡାକ୍ତରଖାନାରୁ ଆସିଲାବେଳକୁ ସେ ଏକାବେଳକେ ପଙ୍ଗୁ ହେଲାପରି ହୋଇଯାଇଥିଲା । ଗୋଟାଏ ବାଡ଼ିଧରି ଘୁଷୁରିଲା ପରି ଯାଆସ କରେ । ତାହା ହେଉଛି ବନ୍ଧାବାବୁଙ୍କ ପାଇଁ ଚରମ ଦୁର୍ଭାଗ୍ୟ ଓ ଦୁଶ୍ଚିନ୍ତାର ସମୟ । ଲୋହାନିପୁରରେ ଗୋଟିଏ ଛୋଟିଆ ଭଡ଼ାଘର । ନିଜେ ହାତରେ ରନ୍ଧାବଢ଼ା କରିବା, ବାସନ ମାଜିବା, ଗୋଟାଏ ଭଙ୍ଗା ପୁରୁଣା ସାଇକେଲରେ ଦୁଇଭାଇଙ୍କୁ ନେଇ ସ୍କୁଲରେ ଛାଡ଼ିବା, ସେଠୁଁ ଯାଇ ନିଜ ଗୃକସ ସ୍କୁଲରେ ପହଞ୍ଚିବା । ଦି' ବର୍ଷକ ଅଢ଼େଇ ବର୍ଷ ପରେ ସ୍ତ୍ରୀକୁ ଯାଇ ଆଣିଲେ । ତେଣେ ଗାଁ ଘର ଝାମେଲାତକ ବୁଝାବୁଝି କରିବାକୁ ହୁଏ । ବୋଉ ଯାଇ ଗାଁରେ ରହିଲା । ସାଙ୍ଗରେ ପୁଣି ଭଉଣୀ ଅନୁ, ବାଳଶ୍ରୀ ବିଧବା । ଗୃହବାସ କାମ ସେଇ ଭଉଣୀଟି ଯାହା ଯେମିତି ବୁଝୁଥାଏ । ଗାଁରୁ କିଛି ଧାନ ଚାଉଳ ନେଇ ଆସନ୍ତି, ସେଥିପାଇଁ ଅନ୍ତତଃ ଦମୁଠା ଖାଇବା ଚିନ୍ତା, ଏତେଟା ବାଧେନାହିଁ । ଗାଡ଼ି ଯାହା ଯେମିତି ଗଡ଼ୁଥିଲା । ଏତିକିବେଳକୁ ଭାଇ ଦୁହିଙ୍କର ପାଠପଢ଼ା ଅଣ୍ଟାଭାଙ୍ଗି ଦେଲା । ସ୍କୁଲ ପରେ ଦୁଇ ଦୁଇଟା ଘରେ ଟିଉସନ କରିବାକୁ ପଡ଼େ । କହିଲେ ହେବ କ'ଣ, ସେଇମିତିକା ସ୍ତ୍ରୀ ବୋଲି ଏତେ ସମସ୍ୟା, ଏତେ ଅଭାବ, ଏତେ ପରିଶ୍ରମ ଭିତରେ ମଧ୍ୟ କେବେହେଲେ ଦୁଃଖକୁ ଦୁଃଖ ବୋଲି ଭାବିପାରିନାହାନ୍ତି । ଯେତେ ଭୁଲେଇଲେ ମଧ୍ୟ ବନ୍ଧାବାବୁ ସେକଥା ଭୁଲିପାରିବେନାହିଁ । ସେଥରକ କମଳେଶ ବି.ଏ. ପରୀକ୍ଷା ପାଇଁ ଫର୍ମ ପୂରଣ କରିବା କଥା । ଶେଷ ତାରିଖ ଆସି ମୁଣ୍ଡ ଉପରେ ହେଲାଣି । ଯେତେ ଯୋଉଠୁ ଚେଷ୍ଟାକଲେ ମଧ୍ୟ ଟଙ୍କା କେଇଟା ଯୋଗାଡ଼ ହୋଇପାରୁନଥାଏ । ଝିଅପିଅ ଛୁଡ଼ି ମନଦୁଃଖରେ କମଳେଶ ଦିନସାରା ଘରଟି ଭିତରେ ପଡ଼ିରହିଥାଏ । ବଡକୁ ସ୍ତ୍ରୀ ଦେହରୁ ଗହଣା ଦିଖଣ୍ଡ କାଢ଼ି ଆଗରେ ଥୋଇଦେଲା । ବନ୍ଧାବାବୁଙ୍କ ଆଖି ଲୁହରେ ଛଳଛଳ ହୋଇଉଠିଲା ସେତେବେଳେ । କମଳେଶ ମଧ୍ୟ ନିଜକୁ ସମ୍ଭାଳି ପାରିଲା ନାହିଁ, ଭେ ଭେ କରି କାନ୍ଦିପକେଇଲା ।

ଛୁଡ଼ି, କମଳେଶ ଓ ବ୍ରଜେଶଙ୍କୁ ଏତେ କଷ୍ଟକରି ପଢ଼େଇବାର ସୁଫଳ ମିଳିଗଲା । ଏବକୁ ତାଙ୍କର ହୃଦ୍‌ବୋଧ ହେଉଛି, କୌଣସି ଦୁଃସହ ଦୁଃଖ ଯଦି ସୁଖଦ ମଧୁର ପରିଣାମର ହେତୁ ହୁଏ ତେବେ ସେ ଦୁଃଖ ଆଉ ଦୁଃଖ ହୋଇ ରହେନାହିଁ, ଅଧିକନ୍ତୁ ସେଇଭଳି ଦୁଃଖକଷ୍ଟକୁ ବାରମ୍ବାର ନିମନ୍ତ୍ରଣ କରିବାକୁ ମନହୁଏ । ପରିବାରର ଅବସ୍ଥାକୁ ଦେଖି କମଳେଶ ବି.ଏ. ପରେ ପରେ ବି.ପି.ଏସ୍‌ସି ପରୀକ୍ଷା ଦେଇଥିଲା ଏବଂ ଡି.ଏସ୍.ପି ପାଇଁ ନିର୍ବାଚିତ ହୋଇଥିଲା । ବ୍ରଜେଶ କିନ୍ତୁ ଏମ ଏ ପଢ଼ିଲା, ଆଉ ଶେଷରେ ସୀମା-ଶୁଲ୍କ-ଅଧିକାରୀ ପଦରେ ତାର ନିଯୁକ୍ତି ହେଲା । ଏହି ସମୟ ଭିତରେ ବନ୍ଧାବାବୁ

କେବେ ବି ନିଜ ଆଡ଼କୁ ଥରୁଟିଏ ହେଲେ ଚାହିଁନାହାନ୍ତି । ଖଣ୍ଡେ ଭଲ ଶାଢ଼ୀ ପିନ୍ଧିବ ବୋଲି ସ୍ତ୍ରୀ ଝିଲି ମନକୁ ମାରି ଦେଇଛନ୍ତି ଏମା । ଏ ବର୍ଷ ଶୀତଦିନେ ବନ୍ଧାବାବୁ ଜାଡ଼ରୁ ରକ୍ଷାପାଇବା ପାଇଁ ଖଣ୍ଡେ ଗଲାବନ୍ଦ କୋଟ୍ ପିନ୍ଧିବା ପାଇଁ ମନକରନ୍ତି, ମାତ୍ର ସେ ଇଚ୍ଛା କେବେହେଲେ ପୂରଣ ହୋଇପାରେ ନାହିଁ । କୋଟ କିଣିବାକୁ ଭାବିଲା-ବେଳକୁ କୁଆଡ଼ୁ ଏମିତି ଗୋଟାଏ ଆବଶ୍ୟକତା ଆସି ପହଞ୍ଚିଯିବ ଯେ କୋଟ୍ କିଣା ହୋଇପାରିବ ନାହିଁ । କିଣିବା କଥା ଛାଡ଼, କିଣିବାର ଇଚ୍ଛା ମଧ୍ୟ କାହିଁ କୁଆଡ଼େ ହଜିଯିବ । ଯାହା ସେମିତି ବୁଢ଼ାବୁଢ଼ୀଙ୍କର ଭାର ଓହ୍ଲେଇଗଲାବେଳକୁ ଆଉ ଗୋଟାଏ ବୋଝ ଆସି ମାଡ଼ିବସିଲା । ବଡ଼ ଝିଅ ଶାରଦା, ଆଉ ତା'ପଛକୁ ତିନୋଟି ପୁଅ । ତିନି ଚାରି ବର୍ଷ ହେଲା ଶାରଦାର ବାହାଘର ଚିନ୍ତା ମାଡ଼ି ମାଡ଼ି ପଡ଼ିଲାଣି । ତେଇଶି ପୂରି ଚବିଶି ପଶିଲାଣି ଶାରଦାକୁ । ଯଦିବା କୋଉଠୁ କେମିତି ମନଲାଖି ପ୍ରସ୍ତାବ ଆସିଛି, ପୁଣି ଖର୍ଚ୍ଚ ଓ ଯୌତୁକ କଥା ଶୁଣିଦେଲାବେଳକୁ ଦିନରେ ନକ୍ଷତ୍ର ଦିଶିଯାଉଛନ୍ତି । ଆଗ ଆଗ ସେ ଭାବୁଥିଲେ ଯେ କମଳେଶ ଓ ରାଜେଶ କ'ଣ ଶାରଦା କଥା ସମ୍ଭାଳି ନେବେ ନାହିଁକି, ସେମାନେ କ'ଣ ଘରର ଅବସ୍ଥା ଜାଣିନାହାନ୍ତି ଯେ ! ଶାରଦାର ବାହାଘର କରେଇବା କ'ଣ ତାଙ୍କର କର୍ତ୍ତବ୍ୟ ନୁହେଁ ? ବହୁ ସଙ୍କର୍ପଣରେ ସେ ଏହି ପ୍ରସଙ୍ଗ କମଳେଶ ଓ ରାଜେଶଙ୍କ ଆଗରେ ଉଠେଇ ଥିଲେ, ହେଲେ କୌଣସି ଉତ୍ସାହ-ଜନକ ଉତ୍ତର ମିଳିନଥିଲା ତାଙ୍କଠାରୁ । ସେଇଠୁ ସେ ଭାବିଲେ ଯେ ତିନି ଭାଇଯାକ ବସି ଏକାଠି ଏ ସମସ୍ୟା ଉପରେ କଥାହେବେ । ପୁଅ ତିନିଟାଙ୍କ ଚିନ୍ତା ବନ୍ଧାବାବୁଙ୍କୁ ଆଦୌ ବିଚଳିତ କରୁନଥିଲା । ଶାରଦା ତଳକୁ ଦୁଇ ପୁଅ ଅମୀଳ ଏବଂ ସୁମୀଳ କଲେଜରେ ପଢ଼ୁଛନ୍ତି, ସବା ସାନ କିଶୋରକୁ ବୟସ ମୋଟେ ଦଶବର୍ଷ । ଅମୀଳ ସୁମୀଳ ଘରୁ ଶାଗପଖାଳ ଖାଇ ଯଥାକଥା ପଢ଼ିପାରିବେ । ପାଟଣାରେ ରହିବାରେ ଅନେକ ଦୁଃଖ ଭିତରେ ଇଏ ଗୋଟାଏ ବୋଲି ସୁଖ ଯେ ପିଲାଏ ଯଦି ପଢ଼ିବାକୁ ଚାହିଁବେ ତେବେ ଯେମିତି ସୁଆଡ଼ୁ ପାଠ ଦି ଅକ୍ଷର ପଢ଼ିପାରିବେ । ଖାଲି ଯାହା ଚିନ୍ତା ହେଉଛି ଶାରଦାର ବାହାଘର । ତାଙ୍କୁ କମଳେଶ ଓ ରାଜେଶକୁ ଡକେଇବାର ଗୋଟାଏ ମୂଳକାରଣ ହେଉଛି ସେଇ ବାହାଘର କଥା । ଭଙ୍ଗାଦରଜା ଘରଟାକୁ ପୁଣିଥରେ ନୂଆକରି ତୋଳିବା କଥା ମଧ୍ୟ ପଡ଼ିବ । ରୋଗିଣା ବୁଢ଼ୀ ବୋଉର ଗୋଟାଏ ବ୍ୟବସ୍ଥା ମଧ୍ୟ କରିବାକୁ ହେବ । ଗାଁରେ ବୋଉର ଦେଖାଶୁଣା କରିବାକୁ ଅନୁଛଡ଼ା ଆଉ ବା କିଏ ଅଛି ? ବୋଉ ଦେହ ଖରାପ ହେଲେ ଟିକିଏ ପଥ୍ୟପାଚନ ବ୍ୟବସ୍ଥା କରିବା ପାଇଁ ଅନୁକୁ ଯାଇ କେତେ କାହା ପାଖରେ କାକୁତି ମିନତି ହେବାକୁ ପଡ଼େ । କୋଉ ଭଲଲାଗେ ଏତେ ନେହୁରା ହେବାକୁ ? ଯାହାର ତିନି ତିନିଟା ପୁଅ, ସେଥିରୁ ପୁଣି ଦୁଇଟା ପୁଅ ଗେଜେଟେଡ୍ ଅଫିସର, ତାଙ୍କର ବୋଉ ଅନାଥ ଅରକ୍ଷିତ ଭିଖାରୁଣୀପରି ଗାଁରେ ପଡ଼ିରହିବ ? ବନ୍ଧାବାବୁ ଏକେଲା କେତେ ବା ଦେଖିପାରିବେ ?

କିଛି କୋଉଠି ବିଗିଡ଼ିଗଲେ, ସମସ୍ୟା ଦେଖାଦେଲେ ଅନ୍ୟର ଚିଠି ଆସି ପହଞ୍ଚିବ ଓ ସେ ସବୁକାମ ପଡ଼ିକି ପକେଇ ଧାଇଁ ଆସିବେ ଗାଁକୁ । କମଳେଶ ଆଉ ବ୍ରଜେଶଙ୍କୁ ତ ଫୁରୁସତ୍ ନାହିଁ । ଗୃହିଣୀରୁ ହୁଏତ ଫୁରୁସତ୍ ମିଳିପାରେ. ଆପଣା ଜଞ୍ଜାଳରୁ କିନ୍ତୁ ଫୁରୁସତ ମିଳେନାହିଁ । ବନ୍ଧାବାବୁଙ୍କ ମନରେ ଏକ ବଂଶ ଗର୍ବବୋଧ ଦେଖାଦେଲା । ନିଜର ବଡ଼ଭାଇପଣିଆ ଜାହିର କରିବାକୁ ସେ ସତେ ଯେମିତି ଅବସରଟିଏ ପାଇବାକୁ ଯାଉଛନ୍ତି ଦୁହିଁଙ୍କି ବେଶ କଡ଼ା କଡ଼ା କରି ଧମକିବି, ରହୁଥା, ବଡ଼ ଅଫିସର ହେଲେ କଅଣ ହେଲା ? କର୍ତ୍ତବ୍ୟରେ ଅବହେଳା ପାଇଁ ଶ୍ରେଷ୍ଠ ଭାଇମାନଙ୍କୁ ତାଗିଦ୍ କରିହବ ନା ନାହିଁ ? ନିଜ ପୁଅଭଳିଆ ଦୁହିଁଙ୍କି ଏତ୍ତୁଟିରୁ ଏତ୍ତୁଟିଏ କରିଛି, ପାଠଶାଠ ପଢ଼େଇଛି । ସେମାନଙ୍କ ପାଇଁ କେତେ କେତେ ଦୁଃଖ ନ ସହିଛି ? ମୁଁ ତାଙ୍କୁ ଆକଟ କରିବି ନାହିଁ ତ ଆଉ କିଏ କରିବ ?

ବାଟସାରା ନିଜର ଅନ୍ତଃପୁରୁଷ ସହିତ ଏପରି ବାର୍ତ୍ତାଳାପ କରି କରି ସେ ଆସି ପହଞ୍ଚିଯାଇଥିଲେ ଗାଁ ପାଖ ରେଳଷ୍ଟେସନରେ । କଡ଼ରେ ବସିଥିବା ଝିଅ ଶାରଦାକୁ ଦେଖିଲାକ୍ଷଣି ତାଙ୍କ ମନ ଭିତରେ ଅଜଣା ଆତଙ୍କ ଓ ଦଗଦ୍ରଜା ଦୁଶ୍ଚିନ୍ତାର ମେଘ ଘୋଟି ଯାଉଥିଲା । ସେ ପୁଣି ଭାବି ଚାଲିଥିଲେ, ଏଇଥର ସେ ନିଶ୍ଚୟ କମଳେଶ ଓ ବ୍ରଜେଶଙ୍କୁ ସବୁ କଥା ଗୋଟି ଗୋଟିକରି କହିବେ ।

ଟାଙ୍ଗା ଆସି ଦୁଆରେ ପହଞ୍ଚିଲା । ସାନ ପୁଅ କିଶୋର ସାଙ୍ଗେ ସାଙ୍ଗେ ଟାଙ୍ଗାରୁ ଡେଇଁ ଘର ଭିତରକୁ ଯିବାକୁ ଦୌଡ଼ିବାକୁ ଲାଗିଲା । ବନ୍ଧାବାବୁ ଦୁଆର ମୁହଁରୁ ଗହଳି ଚହଳି କଳନା କରିବାକୁ ଚେଷ୍ଟା କଲେ । ଘର ମୁହଁରେ ଗୋଟାଏ କାର ଓ ଦୁଇଟା ଜିପ୍ ଠିଆ ହୋଇଥିଲେ । ଟିକିଏ ଦୂରେ ଗୋଟାଏ ମଟର ସାଇକେଲ ମଧ୍ୟ ଥୁଆ ହୋଇଥିଲା । ଚୌକି ପକେଇ କିଛି ଲୋକ ବସିଥିଲେ । ଟାଙ୍ଗା ଆସିବାର ଦେଖି ସମସ୍ତଙ୍କର ଆଖି ଟାଙ୍ଗାପ୍ରତି ଆକୃଷ୍ଟ ହେଲା । ବନ୍ଧାବାବୁ ଦୁଆର ଆଗରେ ଠିଆ ହୋଇଥିବା କାର-ଜିପ୍-ମଟର ସାଇକେଲ ଓ ଲୋକମାନଙ୍କର ଗହଳି ଦେଖି ମନେ ମନେ ଖୁସିହେଲେ । ଯାହାହେଉ ତାଙ୍କର ମନସ୍କାମନା ଆଜି ପୂର୍ଣ୍ଣ ହୋଇଛି । ଶେଷକୁ ଏମିତି ସୁଦିନ ଯାହା ଦେଖିବାକୁ ମିଳିଲା । ଏହିପରି ଦୃଶ୍ୟଟିଏ ତ ସେ ମନେ ମନେ କଳ୍ପନା କରୁଥିଲେ । କମଳେଶ ଓ ବ୍ରଜେଶ ଟାଙ୍ଗା ପାଖକୁ ଆସିଯାଇଥିଲେ । ଜଣକ ପରେ ଜଣେ ଭାଇ ଓ ଭାଉଜଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲେ । କମଳେଶ ଓ ବ୍ରଜେଶଙ୍କ ପଛେ ପଛେ ପୁଲିସ୍ ଇନସ୍ପେକ୍ଟର ଓ ଥାନାର ଦାରୋଗା ଠିଆ ହୋଇଥିଲେ । ସେମାନେ ଡି.ଏସ.ପି କମଳେଶଙ୍କୁ ଦେଖାକରିବାକୁ ଆସିଥିଲେ । ଘରେ ପାଦ ଦେଲାକ୍ଷଣି ପାଟନା ନଗର ନିଗମର ଗୋଟିଏ ସାଧାରଣ ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ବୋଲି ନିଜକୁ ଆଉ ଭାବିପାରିଲେ ନାହିଁ । ଆତ୍ମସନ୍ତୋଷର ଏକ ଗଭୀର

ପ୍ରତ୍ୟୟ ଏବଂ ଆତ୍ମଗୌରବ ତାଙ୍କର ସ୍ଥାନକୁ ବହୁତ ଉପରକୁ ନେଇଯାଇଥିଲା । ପତ୍ନୀ ଏବଂ କନ୍ୟା ଶାରଦା ଘର ଭିତରକୁ ଚାଲିଯାଇଥିଲେ । ବନ୍ଦାବାବୁ ଚୌକିରେ ନ ବସିବା ପର୍ଯ୍ୟନ୍ତ କମଳେଶ, ରଜେଶ ପୁଲିସ୍ ଇନସ୍‌ପେକ୍ଟର୍‌, ଥାନା ଦାରୋଗା, ସମସ୍ତେ ସେଇଠିରେ ଠିଆ ହୋଇ ରହିଲେ । ଅନେକ ଦିନ ତଳର କେତେ କଥା ବନ୍ଦାବାବୁଙ୍କର ମନେପଡ଼ିଲା । ମନେପଡ଼ିଗଲା ସେ ବହୁଦିନ ତଳେ ଡେବୋଟିରୁ ଫୌଜଦାରୀ ମାମଲାରେ ବଦଳି ଯାଇଥିବା ଗୋଟାଏ ମାମଲାରେ ଯେତେବେଳେ ସେ ବାପାଙ୍କ ସାଙ୍ଗରେ ଥାନାକୁ ଯାଇଥିଲେ, ଦାରୋଗା ତାଙ୍କୁ ତୁ-ତୁମେ ବୋଲି ସମ୍ବୋଧନ କରିଥିଲେ ଓ ବସିବାକୁ ମଧ୍ୟ କହି ନଥିଲେ । ଆଜି ସେହି ଲୋକର ଘର ମୁହଁରେ ଇନସ୍‌ପେକ୍ଟର ଓ ଦାରୋଗା, ଚପରାଶି ଭଳି ବିନୟ ମୁଦ୍ରାରେ ଠିଆହୋଇ ହେଉଛନ୍ତି ।

ଅପରାହ୍ନର ଖରା ଅଗଣାରୁ ଘୁଞ୍ଚି ଯାଇଥିଲା । ଝିଅଟିଏ ଆସି ବନ୍ଦାବାବୁ ଅଗଣାକୁ ଆଣିଲେ । ଓଳିତଳେ ଛାଇରେ ଚୌକିଟିଏ ପକାଇ ବସିପଡ଼ିଲେ ଓ ତନ୍ମୟ-ମୁଦ୍ରାରେ ନିଜ ପୈତୃକ ଘରର ସ୍ଥିତିକୁ କଳନା କରିବାକୁ ଲାଗିଲେ । ସେଇ ପୁରାତନ ଖୁଆ । ଛଣଛପର କାହିଁ କେତେଆଡ଼େ ଦବିଯାଇଥିଲା । ଖୁଆଆର ଆକୃତି ଅସମାନ ହୋଇଯାଇଥିଲା । ବାଉଁଶ କାମଡ଼ାରେ ମାଟିଗୁଡ଼ିକ ଯୋଡ଼ ଛଟାବାଡ଼ କରାଯାଇଥିଲା ସେଥିରୁ ମାଟି ଖସି ଖସି ଗଲାଣି । ଠାଏ ଠାଏ ବାଉଁଶ ଉଇଲାଗି ଖାଇଖାଇ ଗଲାଣି । କାନ୍ଥ ଆଉ କାନ୍ଥ ହେଉନାହିଁ । ଠାଆକୁ ଠାଆ ମାଟି ଛେଲା ଛେଲା ଖସିଯାଉଛି । ଅଗଣାର ଆର ପାଖିପଟର ଘର ଗୁଡ଼ାକର ଛପରର ଅବସ୍ଥା ମଧ୍ୟ ସେମିତି । ପ୍ରତିବର୍ଷ ବର୍ଷାଦିନ ଆରମ୍ଭ ହେବା ପୂର୍ବରୁ ମରାମତି କରିବା କଥା । ବନ୍ଦାବାବୁ ଯାହା ଯେମିତି କରନ୍ତି ବୋଲି ଆଶାଯାଏ ଅଛି, ନହେଲେ ସେତକ ମଧ୍ୟ କେବେଠୁ ଭାଙ୍ଗିରୁଜି ବେଢ଼ଛପର ହୋଇଯାଆନ୍ତାଣି । ତଥାପି ସବୁଠି ଲକ୍ଷ୍ୟ କରିହେବ ଉଜୁଡ଼ିଯିବାର ନଗ୍ନ-ଜର୍ଜରରୂପ । ଅଥଚ ଆଜି ମେଞ୍ଚ ପରିବେଶରେ ଗୋଟାଏ ନୂତନ ଶୃଙ୍ଖଳା ଖେଳି ଯାଉଛି । ନୂଆ ଜୀବନଧାରାର ଆରମ୍ଭ ଘଟିଛି, ଦୀର୍ଘ ଦିନର ନୀରବ ସ୍ଥବିର ପରିବେଶରେ ପ୍ରାଣଚଞ୍ଚଳ ଗତିଶୀଳତା ଦେଖାଦେଇଛି । ବସନ୍ତ ଆସିଲେ ପୋକଖିଆ ରୁଗ୍‌ଣ ଗଛ ମଧ୍ୟ ଫେନ୍ଟା ଫେନ୍ଟା ଫୁଲରେ ଭାଙ୍ଗି ପଡ଼ିଲା ପରି ଅଗ୍ରନକ ଘରଟି ସଜ୍ଜିତ ହୋଇଉଠିଛି ଆଜି । କମଳେଶ ଓ ରାଜେଶର ପିଲାମାନେ ଧାଁ ଦଉଡ଼ ଲଗେଇଛନ୍ତି । ସେମାନଙ୍କ ପାଟିତୁଣ୍ଡରେ ଘର କମ୍ପି ଉଠୁଛି । ଗାଁର କେଇଜଣ ଆସି ଘେରେ ଘେରେ ବୁଲି-ଗଲେଣି । କିନ୍ତୁ ବନ୍ଦାବାବୁଙ୍କୁ ସବୁଠାରୁ ବେଶୀ ଖୁସିଲାଗୁଛି ଦୁଆର ମୁହଁରେ ଠିଆ ହୋଇଥିବା ଜିପ୍‌କାରକୁ ଦେଖି । ଗୋଟାଏ ଅର୍ଦ୍ଧଭଗ୍ନ ଘର ଆଗରେ ଜିପ୍‌କାର, କୌଣସି ମଫସଲ ଲୋକ କୋଟଟାଇ ପିନ୍ଧି ଧାଡ଼ିକୁ ବାହାରିବା ସଙ୍ଗେ ସମାନ । ବନ୍ଦାବାବୁ ମନେ ମନେ ଉପମାଟା ଦେଇ ହସି ଉଠିଲେ । ସୁନ୍ଦର ସୁଚର୍ଚ୍ଚିତ

ରଙ୍ଗବେରଙ୍ଗ ଦାମୀ ଚପଲ୍ ଜୋତା ପିନ୍ଧି ପିଲାମାନେ ଯିବା ଆସିବା କରୁଥିବାର ଦୃଶ୍ୟ ତାଙ୍କୁ ଏତେ ଆନନ୍ଦଦାୟକ ମନେ ହେଲା ଯେ ସେ କଳନା କରି ପାରୁନଥିଲେ ।

ଗାଁ ଲୋକେ ଯିଏ ଯେମିତି ଆସି ଦଣ୍ଡେ ଘଡ଼ିଏ ବସି ଗପ କରୁଥିଲେ, ସଞ୍ଜ ଆଗରୁ ସମସ୍ତେ ଯେଝା ଘରକୁ ଯିବାକୁ ବାହାରିଲେ । କମଲେଶ ଓ ରାଜେଶ ଅସି ପାଖରେ ପଡ଼ିଥିବା ଖାଲି ଚୌକି ଦୁଇଟାରେ ବସିଲେ । ବନ୍ଧାବାବୁ ଭାବିଲେ ଏବେ କୌଣସି ଗୋଟାଏ କଥା ଉପରେ ଆଲୋଚନା କରାଯାଇ ପାରେ । ନୀରବତା ଭଙ୍ଗକରି ସେ କମଲେଶଙ୍କୁ ପଚାରିଲେ, "ତୁ ଆଜି ସକାଳୁ ସକାଳୁ ଆସି ପହଞ୍ଚିଲୁ ନାଁ ? ସାମ୍ନା କୁଅମୂଳରେ ପାଣିନେଉଥିବା ଲୋକ ଗହଳକୁ ଦେଖି ଦେଖି କମଲେଶ କହିବାକୁ ଲାଗିଲା, "ହଁ, ସକାଳେ ଆସି ପହଞ୍ଚିଲି । ହେଲେ କାଲିଠୁ ଆସି ଫାରବସ୍‌ଗଞ୍ଜରେ ରହିଥିଲି ।"

"କାଲି ରାତିରେ ଘରକୁ ନଆସି ଫାରବସଗଞ୍ଜରେ କାହିଁ ରହିଲୁ ? ପାଞ୍ଚ ଛଅ କିଲୋମିଟର କ'ଣ ଆସି ପାରି ନଥାନ୍ତୁ ।" ବନ୍ଧାବାବୁ ଅଭିଭାବକ ସୁଲଭ ତାଙ୍କର ପୁରାତନ ମୁଦ୍ରାରେ ପଚାରିଲେ । କମଲେଶ ଉଁ-ଆଁ କରି କହିବାକୁ ଲାଗିଲା, "ସେଠି କୋଶୀର ଆଇ ବି ରେ ରହିଗଲି, ସାଙ୍ଗରେ ପିଲାମାନେ ଥିଲେତ, ଏଠି ସମସ୍ତଙ୍କର ରହିବାର ସୁବିଧା ହୋଇ ପାରିବ ନପାରିବ ।" ରାଜେଶ ମଧ୍ୟ ଭାଇ କଥାରେ ତାଳ ଦେଇ କହିଲା, "ଭାଇ ନଆସି ଭଲ କରିଛନ୍ତି । ଆସିଥିଲେ ରାତିରେ ଭୂଇଁ ଉପରେ ପାଲବିଛେଇ ଶୋଇବାକୁ ପଡ଼ିଆନ୍ତା ଓ ସାରାରାତି ମଶାକାମୁଡ଼ାରେ କଲବଲ ହୋଇଥାଆନ୍ତେ । ମୁଁ କାଲି ଆସି ପହଞ୍ଚିଲି ଓ ରାତିସାରା ଆମେ କେହି ଆଖିପତା ବି ପକେଇନାହୁଁ । ଗୋଟିଏ ବୋଲି ଖଟ ଯାହା ଭଲ ଅବସ୍ଥାରେ ଅଛି, ସେଇ ଯୋଉ ବୋଉଶୋଇଲାଖଟଟି, ଅନୁଦଦ ଖଣ୍ଡେ କାଠଗଡ଼ ଉପରେ ଶୋଉଛି, ଘର ଭିତରେ ଯୋଉ ବଚକଟିଆ ଗନ୍ଧ, ପ୍ରଥମେ ମା ତ ରାତିସାରା ଖାଲି ଛିଙ୍କିପିଙ୍କି ହେଲା । ତା'ଛଡ଼ା ଘରର ଅବସ୍ଥା ଯାହା, ଦୁଆର ବନ୍ଦ କଲେ ମଧ୍ୟ କୁକୁର ବିଲେଇ ଏପଟେ ପଶି ସେପଟେ ବାହାରି ଯାଉଛନ୍ତି ।"

ବନ୍ଧାବାବୁ ରାଜେଶ କଥାରେ ନହସି ରହି ପାରିଲେ ନାହିଁ । ହସି ହସି କହିବାକୁ ଲାଗିଲେ, "ବାପ୍, ଏହାହିଁ ଦେଖାଇବାକୁତ ତୁମ ଦୁହିଁଙ୍କୁ 'ଗାଁକୁ ଡ଼ାକେଇଛି । ତୁମେମାନେ ନିଜ ଆଖିରେ ନିଜ ପୈତୃକ ଭିଟାମାଟି, ଘରଦ୍ୱାରର ଅବସ୍ଥା ଦେଖିଯାଅ । ବୋଉ ଆଉ ଅନୁଦଦ କେମିତି ରହୁଛନ୍ତି, ଜାଣ ।"

କମଲେଶ ଫିକା ହସଟିଏ ହସି ଗଛଅଗରୁ ଅପରେ ଯାଉଥିବା ଅସ୍ତଗାମୀ ସୂର୍ଯ୍ୟାଲୋକକୁ ଲକ୍ଷ୍ୟ କରୁ କରୁ କହିଲା, "ବୋଉ ଆଉ ଅନୁଦଦ କଥା ନଆଗ ।

ସେମାନେ ଏଠି ଚାଲି ଆସିଲେଣି ତେଣୁ ଚାଲି ଯାଉଛନ୍ତି ବା ଚାଲିଯିବେ ।" କଥା କେଇପଦ ଶୁଣିଲାରୁ ବନ୍ଦାବାବୁ ମନ ଭିତରେ କିଏ ଗୋଟାଏ ଗ୍ରିମ୍‌ଟା ପକେଇଲା ପରି, କୋରି ପକେଇଲା ପରି ଅନୁଭବକଲେ ଓ ସମସ୍ତ ଯନ୍ତ୍ରଣାକୁ ଚୁପି ରଖିବାକୁ ଚେଷ୍ଟାକଲେ । ଗମ୍ଭୀର ରୂପ ଧାରଣ କରିବାକୁ ଯାଉଥିବା ବାର୍ତ୍ତାଳାପକୁ ସେଠାରେ ଶେଷ କରିବା ପାଇଁ କହିଲେ, "ନାଁ, କମଲେଶ ! ମୋର କହିବାକଥା ହେଉଛି ଯେ ଯଦି ଆମର ଏଇଠି ଗୋଟାଏ ଛୋଟ କୋଠାଘର କରାଯାଆନ୍ତା ତେବେ କେତେ ବଢ଼ିଆ ନହୁଅନ୍ତା ? ବୋଉ ଆଉ ଅନୁ ଏଠି ମଶାଡ଼ାଆଁଶ ବର୍ଷରେ ଭଙ୍ଗା ଦାଦରା ଖପରଲି ଘରେ ରହିଲେ ସମାଜ କ'ଣ କହିବ, ଲୋକେ କ'ଣ କହି ଏଇ ଘରର ପରିଚୟ ଦେବେ ? ଏଇୟା କହିବେ, ଇୟେ ହେଉଛି କମଲେଶବାବୁ ବା ରାକେଶବାବୁଙ୍କ ଘର । ମୋ ନାଁ । କେହି ଭୁଲରେ ଧରିବେ ନାହିଁ, ସେକଥା ଜାଣିରଖ । ଜଣେ ହେଲେ ବି କେହି କହିବେ ନାହିଁ ଯେ ମାଇନରସ୍କୁଲ ହେଡ଼ମାଷ୍ଟର ବନ୍ଦାବାବୁଙ୍କର ଘରବୋଲି ।

ରାକେଶର ସ୍ୱରରେ ତୀକ୍ଷ୍ଣତା ପ୍ରକାଶ ପାଇଲା । "ଏଗୁଡ଼ା ସବୁ ନିରର୍ଥକ ଭାବ-ପ୍ରବଣତା, ଭାଇ ! ବିନା ପ୍ରୟୋଜନରେ ଗୁଡ଼ାଏ ପଇସା ଖର୍ଚ୍ଚ କରିବାରେ ଲାଭ କ'ଣ ମିଳିବ ? ଆମର ତ କାହାରି ଏଠି ରହିବାର ନାହିଁ ।" ବନ୍ଦାବାବୁ ମନେ ମନେ ଚିନ୍ତାକଲେ, କଥା କଟାକଟିର ଯୋଉ ଲକ୍ଷଣ ଦିଶିଲାଣି, ଅଳପକେ କୌଣସି ଅପ୍ରୀତିକର ବିନ୍ଦୁରେ ପହଞ୍ଚିଯାଇପାରେ, ବରଂ ତା'ଅପେକ୍ଷା ଏଇ ପ୍ରସଙ୍ଗକୁ ବଦଳେଇ ଦିଆଯିବା ଭଲ । ସେଥିପାଇଁ ସେ ଚୁପରହିଲେ ଓ ଦାଣ୍ଡରେ ଖେଳୁଥିବା ପିଲାମାନଙ୍କୁ ଅନେଇ ରହିଲେ । ରାକେଶର ଦଶବାର ବର୍ଷର ପୁଅ ଶଗଡ଼ ଦଣ୍ଡାରେ ମାଙ୍କଡ଼ ପରି ଓହଳିଥିଲା । କମଲେଶର ପିଲାଏ ମଧ୍ୟ ଶଗଡ ଉପରେ ଖେଳକୁଦ ଲଗେଇଥିଲେ, ଏଇ ପିଲାମାନଙ୍କ ମେଳରେ ତାଙ୍କ ପୁଅ କିଶୋର ଏକାବେଳେକେ ଗାଁକରପିଲାଟିଏ ପରି ଦିଶୁଥିଲା । କିଛି ସମୟପରେ ବନ୍ଦାବାବୁ ପିନ୍ଧାକୁ ଉଠିଗଲେ, ଦୁଇ ଭାଇବୋହୂଙ୍କ ଆଗରେ ତାଙ୍କର ସ୍ତ୍ରୀ ମଧ୍ୟ ଠିକ ସେଇଭଳିଆ ଦିଶୁଥିଲେ । ଯୋଗକୁ ତାଙ୍କ ସ୍ତ୍ରୀ ଆଜି ସେଇ ସୂତାପ୍ରିଣ୍ଟ ଶାଢ଼ୀଟା ପିନ୍ଧିଥିଲା, ଯାହାକୁ ସେ ସବୁଠାରୁ ଦାମିକା ଶାଢ଼ୀବୋଲି କୁଆଡେ କେମିତି ବାହାରକୁ ଯିବାପାଇଁ, କି ବାହା ପୁଆଣି ବେଳେ ପିନ୍ଧିବାକୁ ପେଡିରେ ସାଇତି ରଖିଥାଏ ।

ସଞ୍ଜ ହେଲାବେଳକୁ ବନ୍ଦାବାବୁ ଦେଖିଲେ ଯେ ରାକେଶ ଆଉ କମଲେଶର ପିଲାମାନେ କୁଆଡ଼େ ଯିବାପାଇଁ ସଜବାଜ ହେଲେଣି । ଦୁଇ ଭାଇବୋହୂ ମଧ୍ୟ ଯିବାର ପ୍ରସ୍ତୁତ କରିଚାଲିଥିଲେ । ସେ କମାରୁ ବୁଝିପାରୁନଥିଲେ ଯେ ଏଇ ପ୍ରସ୍ତୁତି କ'ଣ ପାଇଁ ଚାଲିଛି, କୁଆଡେ ଯିବାକୁ ଏମାନେ ସବୁ ବାହାରିଛନ୍ତି ? ସମସ୍ତେ

କ'ଣ କାହା ଘରଅଡେ ବୁଲିଯିବାକୁ ବାହାରିଛନ୍ତି ନାଁ । କ'ଣ ?" ଅଗଣାକୁ ଗଲାରୁ ବୋଉ କହିଲା ଯେ କମଳେଶ ଓ ରାଜେଶ ପାଖ ସହର ଫାରବିସ୍‌ଗଞ୍ଜକୁ ଯାଉଛନ୍ତି । ରାତିରେ ସେଇଠି ରହିବେ । ବନ୍ଧାବାବୁଙ୍କ ଅନ୍ତର୍ପକ୍ଷରେ ଗଭୀର ଆଲୋଡନ ସୃଷ୍ଟି ହେଲା । ବାହାରକୁ ଆସି କମଳେଶଙ୍କୁ ପଚାରିଲେ, "ଶୁଣିଲି ତୁମେ ସବୁ କୁଆଡ଼େ ଫାରବିସ୍‌ଗଞ୍ଜ ଯାଉଛ । କମଳେଶ ଅଙ୍ଗ ଅଙ୍ଗ ହୋଇ କହିଲା, "ଭାଇ ! ମୋର ଜମାରୁ ମନ ନଥିଲା । କିନ୍ତୁ ଏଠି ତ କିଛି ବୋଲି କିଛି ବ୍ୟବସ୍ଥା ନାହିଁ, ଏତେ ଅସୁବିଧା ଯେ କହିଲେ ଭଲ । ବାଥରୁମ ନାହିଁ, ଆଉ ପିଲାମାନେ ପଡିଆକୁ ଝାଡା ଯିବାକୁ ଡ଼ରୁଛନ୍ତି । ଭାଇବୋହୂ ଦୁହିଁଙ୍କର ମଧ୍ୟ ଏକା କଥା । ଦହିଁଙ୍କ ଦହେଁ କେହି ଆଜି ଗାଧୋଇ ନାହାନ୍ତି, ଗାଧୋଇବେ ବା କେଉଁଠି ? ସେଥିପାଇଁ ଭାବିଲି ରାତିକି ଯାଇ ଫାରବିସ୍‌ଗଞ୍ଜର ଆଇ ବି ରେ ରହିଯିବା । ପୁଣି ସକାଳୁ ଏଠିକି ଆସିବା । ଫାରବିସ ଗଞ୍ଜ କୋଉ ଦୂରକାଗା ଯେ ଏତେ ଚିନ୍ତା । ବନ୍ଧାବାବୁ କିଛି କହିଲେ ନାହିଁ । ତାଙ୍କର ଅନ୍ତର୍ପକ୍ଷ କିଛି ଗୋଟାଏ ଭୟଙ୍କର ଆଘାତରେ ଭାଙ୍ଗି ଚୂରମାର ହୋଇଗଲା ପରି ଲାଗିଲା । ସେ ଚୁପ୍‌ଚାପ ଦାଣ୍ଡକୁ ବାହାରିଗଲେ ଓ କୂଅମୂଳରେ ଉଠିଥିବା ଘାସ ଆଉ ଅନାବନା ଗଛର ଜଙ୍ଗଲକୁ ନିରୀକ୍ଷଣ କରିବାକୁ ଲାଗିଲେ । ପାଖ ନଡ଼ିଆଗଛରେ ଖାଲି ପଡ଼ିଥିବା ବାୟାଚଢ଼େଇର ବସା ଶୂନ୍ୟ ବଟୁଆ ପରି ପବନରେ ଦୋହଲୁଥିଲା ।

କମଳେଶ ଓ ରାଜେଶ ବନ୍ଧାବାବୁ ରାଗିଥିବାର ଅନୁମାନ କରିଥିଲେ । ଦୁହେଁ ଆଇ ବି ରେ ରାତିଟା ରହିବାର କାର୍ଯ୍ୟକ୍ରମ ରଦ୍ଦ କରିଦେଲେ । କିନ୍ତୁ ଘର ଭିତରେ ସେମାନଙ୍କର ଏହି ସିଦ୍ଧାନ୍ତ ପରିବର୍ତ୍ତନ ନେଇ ଭୟଙ୍କର ପ୍ରତିକ୍ରିୟା ସୃଷ୍ଟି ହେଲା । କମଳେଶ ଆଉ ରାଜେଶଙ୍କର ସ୍ତ୍ରୀମାନେ ଯିବାପାଇଁ ତ ସଜ ହୋଇସାରିଥିଲେ, ତୁଣ୍ଡରେ କିଛି କହିଲେ ନାହିଁ ସିନା, ଧାନ ଉଁଷାହାଣ୍ଡି ପରି ଏଡ଼ୁଟେ ଲେଖା ମୁହଁକରି, ଜଣେ ପୂର୍ବ ତରଫଘରେ, ଆଉଜଣେ ପଶ୍ଚିମ ତରଫଘରେ କବାଟକିଳି ଘର ଭିତରେ ରହିଲେ । ବନ୍ଧାବାବୁଙ୍କୁ ତାଙ୍କ ସ୍ତ୍ରୀ ତୁନିତୁନି ଆସି ଜଣାଇଦେଲେ, "ହଇହେ ! ଦୁଇ ଭାଇବୋହୂତ ସହରକୁ ଯିବାପାଇଁ ସଜାଇ ହେଇଥିଲେ । ସେଠି କୋଉ ଅଫିସରଙ୍କ ଘରେ ଖିଆପିଆ କରିବାର କଥା । ରାତିକୁ ମଧ୍ୟ ସିନେମା ଦେଖିବାକୁ ଯାଇଥାଆନ୍ତେ । ତୁମେ ତାକୁ କାହିଁକି ମନାକଲ ? ତୁମର କ'ଣ ଦରକାର ଥିଲା ? ଏଇକ୍ଷଣି ତୁମରି ଉପରେ ଦୁହେଁ ଖାଲି ଗରଗର ହେଉଛନ୍ତି । ମୋତେ ଶୁଣେଇ ଶୁଣେଇ ତୁମ ବିରୁଦ୍ଧରେ ସେମାନେ ଯାହା କହୁଛନ୍ତି, ସେକଥା ମୁଁ ତୁମକୁ କହି ପାରୁନି ।"

ଗୋଟାଏ ଖାଖ ଢ଼େଙ୍ଗା ଗଛରୁ ପଡ଼ିଲା ପରି ବନ୍ଧାବାବୁଙ୍କୁ ବୋଧ ହେଲା । ନିଜ କଲା ଭୁଲ ଲାଗି ନିଜେ ଯେଉଁ ଆଘାତ ପାଇଲେ ତାକୁ କେବଳ ଉପଶମ

କରିବାକୁ ସେ ଚେଷ୍ଟାକଲେ । କାହାକୁ କିଛି ନକହି ଚୁପ୍‌ଚାପ ନିଜ ମନରେ ମାରିବାକୁ ଚେଷ୍ଟାକରି ନନ୍ଦୁଭାଇ ଘରକୁ ଚାଲିଗଲେ । ଦି'ତିନି ଘଣ୍ଟାପରେ ଫେରିଲା ବେଳକୁ ଦେଖିଲେ ଯେ ଚାରିଟା ଖଟ, ଶେଯ ତକିଆ, ମଶାରି ଆଦି ନନ୍ଦୁଭାଇର ଲୋକେ ଆଣି ଘରେ ଦେଇ ଯାଇଛନ୍ତି । ଗାଁର ମୁଖିଆ ଘରୁ ଦୁଇଟା ପେଟ୍ରୋମାକ୍ସ ମଧ୍ୟ ଆସି ଘରେ ଜଳୁଛି, ଘରସାରା ପୁଣି ଦିନବେଳାର ଉତ୍ସବସୁଲଭ ବାତାବରଣ ଫେରି ଆସିଛି । ପେଟ୍ରୋମାକ୍ସର ଉଜ୍ଜ୍ୱଳ ଆଲୋକରେ ରନ୍ଧାବଢ଼ା ବେଶ୍ ଜୋର-ସୋରରେ ଚାଲିଛି । ଶାରଦା ତା'ବୋଉ ସାଙ୍ଗରେ ମିଶି ରୋଷେଇରେ ଲାଗିଯାଇଛି । ଅନୁନାନୀ ବାସନ ମାଜି ସାରି ଧୂଆଧୋଇ କରୁଥିଲା । ଅଗଣାର ଗୋଟାଏ କଣରେ ଡିଙ୍କିଆକଳ । ଅନୁନାନୀ ପାଣି ବାଲଟି ବାଲଟି ଭରି ପିଣ୍ଡାଉପରକୁ ରୋଷେଇଘର ବାରଣ୍ଡାରେ ଥୋଇ ଦେଉଥିଲା । କମଳେଶ ବ୍ରଜେଶଙ୍କର ସ୍ତ୍ରୀମାନେ ଅଗଣାରେ ଟହଲ ମାରୁଥିଲେ ।

ଏପରି ପରିବର୍ତ୍ତନରେ ବନ୍ଦାବାବୁ ଆନନ୍ଦରେ ଫାଟି ପଡ଼ୁଥିଲେ । ଏହିପରି ଗୋଟାଏ ପରିବାରର ଛବି ଥିଲା ତାଙ୍କର କଳ୍ପନା । ଏମିତିକା ଘରର ସ୍ୱପ୍ନ ସେ ଦେଖିଥିଲେ । ସେ ଘର ବାଡ଼ିସାରା ଦି'ଚାରିଥର ବୁଲି ଆସିଲେ । ବୋଉ ବଗୁଚି ଦାଣ୍ଡିଶାଳ ପିଣ୍ଡାରେ ତାର ସରୁ ବାଡ଼ିଟିକୁ ଝୁଣ୍ଟିପରି ଜାକୁଡ଼ି ଧରି ଚୁପ୍‌ଚାପ ବସିଥିଲା । ହସି ହସି ବନ୍ଦାବାବୁ ବୋଉ ଆଡ଼କୁ ଦୃଷ୍ଟି ପକାଇଲେ । ବୋଉ ମଧ୍ୟ ହସିବାକୁ ଚେଷ୍ଟାକଲା, କିନ୍ତୁ ପାରିଲାନାହିଁ ।

ରାତିରେ ତିନିଭାଇଯାକ ଏକାଠି ଖାଇବସିଲେ । ବୋଉ ଘୁଷୁରି ଘୁଷୁରି ଆସି ପାଖରେ ବସିଲା । ଶାରଦା ଓ ତା'ବୋଉ ବଢ଼ାବଢ଼ି କରୁଥିଲେ । ବୋଉ ଗଳିପଡ଼ୁଥିବା ଛେପ ଢୋକି ସନ୍ତର୍ପଣରେ କହିଲା' "ଯୁଗକ ପରେ ଆଜି ମୋର ତିନିପୁଅଙ୍କୁ ଏକାଠି ବସି ଖାଇବାର ଦେଖୁଛି କେତେଦିନ ହେଲାଣି ଲୋ ମା .. ଢେର ଦିନ ! ତା' ଅଜାଣତରେ ଆଖିକୋଣରେ ଲୁହ ଜକେଇ ଆସିଲା । ବନ୍ଦାବାବୁ ବୋଉ ମୁହଁକୁ ଅନାଇ ରହିଗଲେ । ଶେତା ଚମ, ମଉଳା ଚେହେରା ଉପରେ ଗଡ଼ି ପଡ଼ୁଥିବା ଲୁହଧାରକୁ ଦେଖି ମନେହେଲା ଯେ ସତେଯେମିତି ଖରାଦିନର ଫାଟଶୁଖିଲା ଭୂଇଁ ଉପର ଦେଇ କୁଆଡ଼ୁ କେଜାଣି ପାଣିଧାରଟିଏ ଗଡ଼ି ଆସିଲା । ମାର୍କିନ ଶାଢ଼ୀର କାନରେ ବୋଉ ଆଖି ପୋଛିଦେଲା । ଆଖି ପୋଛୁ ପୋଛୁ ଭଙ୍ଗା ଗଳାରେ କମ୍ପିତ ସ୍ୱରରେ ଥଙ୍ଗ ଥଙ୍ଗ ହୋଇ କହିଲା, "ପୁଣି ଯାଇଁ ଶାରଦା ବାହାଘରକୁ ତୁମେ ତିନିଭାଇ ଯାକ ଏକାଠି ଆସିବ ।" ବୋଉର କଥା ଶୁଣି ବନ୍ଦାବାବୁଙ୍କର ମନେ ପଡ଼ିଗଲା, ଆରେ ଏଯାଏଁ ତ କମଳେଶ ଓ ବ୍ରଜେଶଙ୍କ ସହିତ ଶାରଦାର ବାହାଘର ବିଷୟରେ କଥାବାର୍ତ୍ତା କରାଯାଇ ପାରିଲାନାହିଁ । ପୁଣି ଭାବିଲେ, ଆଗ ଖିଆପିଆ ସରୁ, ତା'ପରେ ନିଶ୍ଚିନ୍ତରେ ଦୁହିଁଙ୍କ ସାଙ୍ଗରେ

ଏ ବିଷୟରେ କଥାବାର୍ତ୍ତା ହେବ । ହାତ ଧୋଇବାକୁ ପୀଢ଼ାରୁ ଉଠିବାକୁ ବସନ୍ତେ, ବୋଉ ମଧ୍ୟ ତା'ର ଶରୀରଟି ହୁଁ ହାଁ ଢେକରି ବାଡ଼ିକୁ ଭରାଦେଇ ଉଠିବାର ଉପକ୍ରମ କଲା । ବୋଉ କାନପାଖକୁ ମୁହଁ ନେଇ ବନ୍ଦାବାବୁ କହିଲେ, "ଅ,ଲୋ ବୋଉ ! ତୁ ଉଠୁଛୁ କାହିଁକି ? ବସିଥା ।" ପୁଅ କଥାରୁ ବୋଉ କ'ଣ ଠଉରେଇଲା କି କେଜାଣି, ପାପୁଲିଭରା ଦେଇ ପୁଣି ବସି ପଡ଼ିଲା ପୂର୍ବପରି ଜୁଳୁଜୁଳୁ କରି ବନ୍ଦାବାବୁଙ୍କୁ ଦଣ୍ଡିଏ କାଳ ଅନେଇ ରହିଲା, ବୋଉ ଏପରି କରୁଣା ଦୃଷ୍ଟିକୁ ନେଇ ତାଙ୍କର ମନ ଭିତରେ ତୁମୁଳ ଆଲୋଡ଼ନ ସୃଷ୍ଟି ହେଲା । ଏକେତ ବୋଉକୁ ଆଉ ଭଲକରି ଶୁଭୁନାହିଁ, ତା'ଛଡ଼ା ଆଖିକୁ ମଧ୍ୟ ଭଲ ଦେଖା ଯାଉନାହିଁ । ଦିନବେଳା ହୁଏତ ବେଶୀ କିଛି ଅସୁବିଧା ହେଉନାହିଁ । କିନ୍ତୁ ଅନ୍ଧାରରେ ମୋଟେ ଦିଶୁନାହିଁ । ଅନୁମାନ ଅଛି ବୋଲି କଷ୍ଟେମଷ୍ଟେ ଘୋଷାରି ହୋଇ ଚାଲିଛି ।

ଦୁଆର ମୁହଁରେ ପେଟ୍ରୋମାକ୍ସର ଆଲୁଅ ଲାଗି ଅନ୍ଧାରତକ ବାହାରେ ଗାଢ଼ ହୋଇ ଜମାଟ ବାନ୍ଧିଥିଲେ । ସାହିରେ ଜଣେ ଅଧେଙ୍କ ଘରୁ ମିଞ୍ଜି ମିଞ୍ଜି ଆଲୁଅ ଟିକେ ଦିଶୁଥିଲା । ଅଗଣାରେ ଖୋଲା ଆକାଶ ତଳେ ଚୌକି ପକେଇ କମଳେଶ ଓ ରାଜେଶ ବସିଥିଲେ । ଦୁହେଁ ସମ୍ଭବତଃ ଶୋଇପଡ଼ିବାକୁ ଛଟପଟ ହେଉଥିଲେ, ହେଲେ ବଡ଼ ଭାଇଙ୍କୁ କଥାବାର୍ତ୍ତା କରିବା ମୁଦ୍ରାରେ ବସିଥିବାର ଦେଖି ବସି ରହିଥିଲେ । ବାଡ଼ି ଠକ୍ ଠକ୍ କରି ବୋଉ ମଧ୍ୟ ଚାଲିଆସିଲା ଓ ତଳେ ଭୂଇଁଟାରେ ବସିବାକୁ ଗଲା । ବନ୍ଦାବାବୁ ବୋଉକୁ ଧରି ଉଠେଇ ଆଣି ଖଟ ଉପରେ ବସେଇଦେଲେ । ବୋଉର ଏଇଟା ଗୋଟାଏ ପୁରୁଣା ଅଭ୍ୟାସ । ବାପା ବଞ୍ଚିଥିଲାବେଳରୁ ବନ୍ଦାବାବୁ ଏଇ ଦୃଶ୍ୟ ଦେଖି ଆସିଛନ୍ତି । ବାପା କକା ବସି କୌଣସି ବିଷୟରେ କଥାବାର୍ତ୍ତା ହେଉଥିଲାବେଳେ ସେ ଆସି ସେମାନଙ୍କ ପାଖରେ ଚୁପ୍‌ଚାପ ତଳେ ବସି ପଡ଼ିବ ଏବ ବିନା ଟୀକ୍‌କା ଟାପ୍‌ପଣିରେ ଶେଷ ପର୍ଯ୍ୟନ୍ତ ବସିରହିବ, ହେଲେ ସେତେବେଳେ ତ ସେ କାଲୁଣୀ ହୋଇନଥିଲା । ବୋଉ ଆସି ଚୁପ୍‌ଚାପ ପାଖରେ ବସିଲାଠୁ ବନ୍ଦାବାବୁ ହସି ଉଠିଲେ, ବୋଉ କ'ଣ ଶୁଣିବ ? ବନ୍ଦାବାବୁ କିଛି କହିବାକୁ ଆରମ୍ଭ କଲା ପୂର୍ବରୁ କମଳେଶ ହସି ହସି ପଚାରିଲା, "ଭାଇ ! ଏସବୁ ଖଟ ବିଛଣା ସବୁ କୋଉଠୁ ଯୋଗାଡ଼ କଲ ? ଶେଯ, ତକିଆ, ମଶାରି !" ସହାସ୍ୟ ବଦନରେ ବନ୍ଦାବାବୁ କହିଲେ, ନନ୍ଦୁଭାଇଙ୍କୁ କହିଲି, ଆରେ କମଳେଶ ରାଜେଶ କେମିତି ରାତିରେ ଶୋଇବେ । ଆମର ତ କିଛି ବୋଲି କିଛି ବ୍ୟବସ୍ଥା ନାହିଁ । ମୋ ତୁଣ୍ଡରୁ କଥା ବାହାରିଛି କି ନାହିଁ, ନନ୍ଦୁଭାଇ କି ସ୍ଥିରହୋଇ ବସି ପାରିଲା । ପୁଅ ପୁତୁରାମାନଙ୍କୁ ଡାକି ଛାଡ଼ିଲା ଏବଂ ସାଙ୍ଗେ ସାଙ୍ଗେ ସବୁ ଯୋଗାଡ଼ ହୋଇଗଲା । ନନ୍ଦୁଭାଇ କହିଲା, ଆରେ ରାତିଏ ଦି' ରାତି କ'ଣ ଆମେ ତଳେ ଶୋଇଯାଇ ପାରିବୁନାହିଁ !"

ନିଦୁଆ ଏବଂ ଗରଗର ସ୍ୱରରେ ରାଜେଶ ସାମାନ୍ୟ ପ୍ରତିବାଦ କରିବାକୁ ଯାଇ କହିଲା, "ତଥାପି ନିଦ ହେବନାହିଁ । ଏକେ ତ ଭୀଷଣ ଗରମ ହେଉଛି । ଆଉ ତା'ଛଡ଼ା ଟେମଲ ଘର । ଖପରିଲ ଘରକୁ ଦେଖିଲେ ତ ମନେହେଉଛି ସତେ ଯେମିତି ଏଇକ୍ଷଣି ଭାଙ୍ଗିପଡ଼ିବ ।" ବନ୍ଦାବାବୁ ହସି ହସି କହିଲେ, "ଆରେ ତୁମମାନଙ୍କୁ ତ ଏହାହିଁ ଦେଖାଇବାକୁ ଏଠାକୁ ଡାକିଛି । ତୁମେ ବୋଧହୁଏ ନିଜ ଆଖିରେ ଦେଖିପାଇଥାଅ ଯେ ତୁମେ ଯେଉଁ ଘରେ ଜନ୍ମ ହୋଇଥିଲ, ତୁମର ପୈତୃକ ଭିଟାମାଟି ଖଣ୍ଡିକ, ଯେଉଁ ଘରେ ଆଜି ବି ତୁମର ଅନୁ ନାନୀ ଓ ବୋଉ ରହୁଛନ୍ତି, ସେ ଘରର ଅବସ୍ଥା କ'ଣ କେମିତି ଅଛି ।" ହୁଏତ ନିଦ ମାଡ଼ି ଆସୁଥିବାରୁ କମଳେଶର ସ୍ୱର ଅସ୍ପଷ୍ଟ ହୋଇ ଉଠୁଥିଲା । "ଆପଣ ଖାଲି ପୁଣି ସେ ଘର କଥା କାହିଁକି ଉଠାଉଛନ୍ତି, କହିଲେ ? ଏଠି ଘର ତିଆରି କରି କ'ଣ ହେବ ମୁଁ ବୁଝିପାରୁନାହିଁ । ବୋଉ ବା ଆଉ କେତେଦିନ ବଞ୍ଚିବ । ଦି'ଚାରି ବର୍ଷ ହେଲେ ବହୁତ । ଆଉ ବାକି ରହିଲା ଅନୁ ନାନୀ, ସେ କ'ଣ ଯେମିତି ସେମିତି ଚଳିଯିବ ନାହିଁ କି ।

ରାଜେଶ ମଧ୍ୟ କମଳେଶର କଥାକୁ ସମର୍ଥନ କଲା । "ମୋ ବିଚାରରେ ଜମିବାଡ଼ି ଘରଦ୍ୱାରର ମୋହ ଆଉ ରଖିଲେ ଚଳିବ ନାହିଁ, ବୋଉ ଆଉ ନାନୀଙ୍କର ରହିବା କଥା । ନାଁ । କ'ଣ ? ଆମେମାନେ ଯଦି ସେ ଦୁହିଁଙ୍କ ପାଇଁ ଆଉ କିଛି ବ୍ୟବସ୍ଥା କରିଦେବା ତେବେ ତ ସମସ୍ୟା ସରିଲା ।"

"ତା'ମାନେ······ ?"

ରାଜେଶ ଜମାଟ ବନ୍ଧା ଅନ୍ଧାରକୁ ନିରେଖି କରି କହିବାକୁ ଲାଗିଲା, "ମାନେ··· ବୋଉ ଆଉ ନାନୀକୁ ଆମେମାନେ ଭାଗ କରିଦେବା, ସେମାନେ ଆମମାନଙ୍କ ପାଖରେ ରହିବେ । ଜମିବାଡ଼ି ଯାହା ଅଛି ତାକୁ ବିକିଦେବା । ବିନା କାରଣରେ ଏତେ ଝାମେଲା, ଏତେ ସମସ୍ୟାରେ ପଡ଼ିବାକୁ ଆଉ ପଡ଼ିବ ନାହିଁ । ଭାଇ ! ଆପଣଙ୍କୁ କଥା ଅକଥାରେ ବାରମ୍ବାର ଏମିତି ଆଉ ଆସିବାକୁ ପଡ଼ିବ ନାହିଁ ।"

ବନ୍ଦାବାବୁଙ୍କର ଅନ୍ତର୍ପକ୍ଷ ଏଇ କେଇପଦ କଥା ଶୁଣି ଏକାବେଳେକେ ଥରି ଉଠିଲା । କିନ୍ତୁ ନିଜକୁ ସଂଯତ କରି କମ୍ପିତ ସ୍ୱରରେ କହିଥିଲେ, "ତାହାହେଲେ ସେଇଆ କର । ବୋଉ ଆଉ ଅନୁନାନୀକୁ ବାଣ୍ଟି ନିଅ ।" କମଳେଶ ରାଜେଶକୁ ଥରେ ଆଖି ଠାରେଇ ନେଇ କହିଲା, "ଅନୁନାନୀ ମୋ' ସାଙ୍ଗରେ ରହୁ ।"

"ଆଉ ବୋଉ··· ?" ବନ୍ଦାବାବୁ ଛଳଛଳ ଆଖିରେ ରାଜେଶ ଆଡ଼କୁ ଚାହିଁବାକୁ ଲାଗିଲେ । ରାଜେଶ ନିରୁତ୍ତର ରହିଥିଲା । ତା' ପକ୍ଷରୁ କମଳେଶ ହିଁ କହିଥିଲା, "ତା'ର କ'ଣ ଆପତ୍ତି ? ବୋଉ ଆପଣଙ୍କ ପାଖରେ ରହିବ ।"

"ବୋଉ ତ ନିଶ୍ଚେ ମୋ ପାଖରେ ରହିବ । ଖାଲି ବୋଉ କାହିଁକି ? ଅନୁନା ମାଁ ମଧ୍ୟ ମୋ ସାଙ୍ଗରେ ରହିବ । ହେଲେ ତୁମ ଦୁହିଁଙ୍କ ଭିତରୁ କେହି ତେବେ ବୋଉକୁ ପାଖରେ ରଖିବାକୁ ଚାହୁଁ ନାହଁ । ଅନୁନା ମାଁଙ୍କୁ ରଖିବାକୁ ପ୍ରସ୍ତୁତ କାରଣ ଭାବୁଛ ସିଏ ଧାଇର କାମତକ କରିଦେବ ନାଁ । କ'ଣ ?"

ବୋଉକୁ ଶୁଭୁନଥିବାରୁ ହୁଏତ ଏସବୁ ଆଲୋଚନା କିଛି ବୁଝିପାରୁନଥିଲା । ହେଲେ ଧନ ପୁଅଙ୍କ ଭିତରେ ଅଚାନକ ସୃଷ୍ଟି ହୋଇଥିବା ଉତ୍ତେଜନାତ୍ମକ ବାତାବରଣର ରୂପରେ ଚେତନାସ୍ତରରେ ସନ୍ଦୁଳିତ ହେବାକୁ ଲାଗିଥିଲା । ବନ୍ଧାବାବୁ ହଠାତ ଅତ୍ୟନ୍ତ ଭାବପ୍ରବଣ ହୋଇଉଠିଲେ ଏବଂ ଉତ୍ତେଜିତ ମଧ୍ୟ । ପରାଜିତ ସ୍ୱରରେ, ଆତ୍ମ ଯନ୍ତ୍ରଣାରେ ଜର୍ଜରିତ ହୋଇ ଧୀର ସ୍ୱରରେ କହିବାକୁ ଲାଗିଲେ, "ତୁମେ ଦୁହେଁ ଯାଇ ଦୂରରେ ରହୁଛ । ବୋଉର ଅସୁବିଧା ହେଲେ ମୋତେ ଦେଖାଶୁଣା କରିବା ପାଇଁ ଆସିବାକୁ ପଡ଼ିଥାଏ । ବୋଉ ବାଡ଼ିଖଣ୍ଡକ ଭରାଦେଇ ସଉଦାପତ୍ର ଆଣିବାକୁ ଦୋକାନକୁ ଯାଉଛି । ଲୋକେ ହସୁଛନ୍ତି ଯେ ଦେଖ ବୁଢ଼ୀଟାକୁ । ଝିଟିଆଟାଏ ପରି ବାଡ଼ି ଠକ୍ ଠକ୍ କରି କାନିରେ ତେଲ ଲୁଣର ସଉଦା ବାନ୍ଧି ସାହୁଘର ଦୋକାନରୁ ଆସୁଛି । ବୟସ ହେଲେ ସୁଖ ଟିକିଏ ପାଆନ୍ତା କ'ଣ, ଓଲଟି ଦୁଃଖରେ ସଢ଼ିଯାଉଛି । ମୁଁ ଏସବୁ କଥା କେମିତି ସହିବି ? ମାଷ୍ଟର ଚାକିରିରେ କେତେଟା ଟଙ୍କା ମୁଁ ପାଉଛି ତାହା ତ ତୁମେମାନେ ଭଲ ଭାବରେ ଜାଣ । ସେଥିରେ ତ ଘରଘର ବୁଲି ଟିଉସନ କରୁଛି । ନକଲେ ପିଲା ଦିଇଟାଙ୍କୁ ପଢ଼େଇ ପାରନ୍ତି ନାହିଁ । କରୁଛି ବୋଲି ସେମାନେ ପଢ଼ାପଢ଼ି କରିପାରୁଛନ୍ତି ।' ପେଟ୍ରୋମାକ୍ସର ଉଜ୍ଜ୍ୱଳ ଆଲୋକରେ ଆବକାବା ହୋଇଥିବା ଚଢ଼େଇଟିଏ ପରି ବୋଉ ଜୁଳୁଜୁଳୁ କରି ଅନେଇ ରହିଥାଏ । ଧନପୁଅଙ୍କୁ ସେ ନିରେଖିକରି ଚାହିଁ ରହିଥାଏ, ସତେ ଯେମିତି କେବେ ବି ଦେଖିନାହିଁ, ଆଜି ଯେତେବେଳେ ଦେଖୁଛି, ମନଭରି ଦେଖି ନେବ ।

କମଳେଶ ଆଉ ରାଜେଶ ଉଠିବାର ଉପକ୍ରମ କଲେ । ଦୁହେଁ ଘର ଭିତରକୁ ଚାଲିଗଲା ପରେ ମଧ୍ୟ ବୋଉ ଏବଂ ବନ୍ଧାବାବୁ ଖଟ ଉପରେ ବସି ରହିଲେ । ପେଟ୍ରୋମାକ୍ସର କମି ଆସୁଥିବା ଆଲୁଅ ଏବେ ଅନ୍ତିମ ନିଃଶ୍ୱାସ ନେବାକୁ ଆରମ୍ଭ କରିଥିଲା । ବୋଉକୁ ସାହାରାଦେଇ ବନ୍ଧାବାବୁ ଖଟରୁ ଓହ୍ଲେଇ ଦେଲେ । ଏତିକିବେଳେ ପତ୍ନୀ ଆସି ପାଖରେ ଠିଆ ହୋଇଥିଲେ । ବନ୍ଧାବାବୁ ସେମିତି ଖଟ ଉପରେ ବସି ରହିଥିଲେ । ପତ୍ନୀ ବୋଉକୁ ନେଇ ତାଙ୍କ ଘରେ ଛୁଡ଼ିଦେଇ ଆସିଲେ । ଭାବିବାକୁ ଲାଗିଲେ ଯେ ଶାରଦାର ବାହାଘର ବିଷୟରେ ତ କୌଣସି କଥା ପଡ଼ିପାରିଲା ନାହିଁ ଭାଇମାନଙ୍କ ସାଙ୍ଗରେ । ଘଟଣା ସବୁ କେମିତି କେଜାଣି ଗୋଳମାଳିଆ ହୋଇଯାଉଛି । ପୁଣି ଭାବିବାକୁ ଲାଗିଲେ, ସେ ବା' କୋଉ ଭୁଲ କଥା କହିଛନ୍ତି ? ଏତେ ଦୁଃଖକଷ୍ଟ ସହି ଯୋଉ ଭାଇମାନଙ୍କୁ ଏତୁଟିଏରୁ ବଢ଼େଇକୁଢ଼େଇ ଆଣିଲେ

ପଢ଼ାପଢ଼ି କରେଇ ମଣିଷ କରେଇଛନ୍ତି, ସେମାନଙ୍କୁ ଦୁ'ପଦ କଥା କହିବାର ଏତେ ଟିକେ ଅଧିକାର କ'ଣ ତାଙ୍କର ନାହିଁ ? ସେ କ'ଣ ଘରର ଭଲମନ୍ଦ ବିଷୟରେ କିଛି କହିପାରିବେ ନାହିଁ ?

ମେଲି ଗ୍ରୀବା ଦେଇ ଝଣ୍ ଝଣ୍ କଳା ଆକାଶ ଓ ମେଘରେ ବିଛେଇ ପଡ଼ିଥିବା ଗୋଟା ଗୋଟା ତାରାମାନଙ୍କୁ ଦେଖି ଦେଖି ବଡ଼ବାବୁ ରାତି ବିତେଇଦେଲେ । ଭୋ'ରରୁ ଯେତେବେଳେ ବି ଉପର ବାଉଁଶ ବଣଆଡ଼ୁ ଚଢ଼େଇମାନଙ୍କର କଳରବ ଆରମ୍ଭ ସେତିକବେଳକୁ ଜାଣ ତାଙ୍କର ଆଖି ଲାଗିଆସିଲା । ସୂର୍ଯ୍ୟୋଦୟ ପରେ ପରେ କମଲେଶ ଓ ରାଜେଶ ଫେରିବା ପାଇଁ ପ୍ରସ୍ତୁତି ଆରମ୍ଭ କରିଦେଲେ । ବଡ଼ବାବୁ ଚାହୁଁଥିଲେ ଯେ ଦୁଇଭାଇଙ୍କୁ ଆଉ ଓଳିଏ ଅଟକି ଯିବାକୁ କହିବେ, ମାତ୍ର କିଛି କହିବା ପାଇଁ ତାଙ୍କର ସାହସ ହେଲାନାହିଁ । ବୋଉ ବାଡ଼ିକୁ ଭରାଦେଇ ପିଣ୍ଡା ଉପରେ ଗୋଟାଏ ଝିଟିଆର ଆକୃତି ନେଇ ଠିଆ ହୋଇଥିଲା ଓ ଜୁଳୁଜୁଳୁ କରି ଚାହିଁ ରହିଥିଲା । କାଲି ଆରମ୍ଭ ହୋଇଥିବା ମେଳଣ ଆଜି ଭାଙ୍ଗିବାକୁ ବସିଲାଣି । କମଲେଶ ଓ ରାଜେଶର ପିଲାମାନେ ଫେରିବାର ଖୁସିରେ ନିଜ ନିଜ ଗାଡ଼ିରେ ବସିସାରିଲେଣି । ବଡ଼ବାବୁଙ୍କ ପତ୍ନୀ ଗୋଟାଏ କଡ଼କୁ ଚୁପ୍‌ଚାପ୍ ଠିଆହୋଇ ରହିଥିଲେ, ସତେ ଯେମିତି ପ୍ରାଣହୀନ ମୂର୍ତ୍ତିଟିଏ । ଅନୁନାମୀ ବୋଉ ପାଖକୁ ଲାଗି, ମୁହଁରେ ବାଁ ହାତଟା ଦେଇ ସେମାନଙ୍କର ଯିବା ବାଟକୁ ଚାହିଁ ରହିଥିଲା । ପରକୁ ପର କମଲେଶ ଓ ରାଜେଶ ଆସି ବୋଉର ଗୋଡ଼ତଳେ ଯେତେବେଳେ ମୁଣ୍ଡିଆ ମାରିଲେ ସେତେବେଳେ ବଡ଼ବାବୁଙ୍କୁ ସିଆଡ଼କୁ ଦେଖିବା ପାଇଁ ସାହସ ହେଲାନାହିଁ । ବୁଢ଼ୀଲୋକର ଆଖିରେ ନିଃସହାୟତାର ଲୁହ ଦେଖିବା ସମସ୍ତଙ୍କ ଦ୍ୱାରା ସମ୍ଭବ ନୁହେଁ । ବିଶେଷ କରି ସେଇ ବୋଉର ଆଖିର ଲୁହ ଯାହାର ଦୁଇଟା ପୁଅ ବଡ଼ ଚାକିରି କରିଛନ୍ତି, ବଡ଼ ଅଫିସର ହୋଇଛନ୍ତି, ଶହଶହ ହଜାର ହଜାର ମଣିଷଙ୍କ ଭିତରେ ବଡ଼ ମଣିଷ ହୋଇଛନ୍ତି । ଏଥରକ ବଡ଼ବାବୁଙ୍କ ପାଳି ପଡ଼ିଲା । ମଞ୍ଚସ୍ଥ ହେଉଥିବା କୌଣସି ଏକ ନାଟକର ଦୃଶ୍ୟରେ ଅଭିନେତା ଯେମିତି ଅଭିନୟର ତାଡ଼ନାରେ ମୁଣ୍ଡିଆମାରେ ସେମିତି ଦୁଇଭାଇ ଆସି ବଡ଼ବାବୁଙ୍କୁ ମୁଣ୍ଡିଆ ମାରି ବିଦାକି ନେବାକୁ ବସିଲେ । ଏବେ ଆଉ ସେ ନିକାଞ୍ଚ ରହିପାରିଲେ ନାହିଁ । କିନ୍ତୁ ଆଖିକୋଣରେ ଜମି ଆସୁଥିବା ଲୁହକୁ ଲୁଚେଇବାକୁ ଯାଇ ଦାଣ୍ଡପଟ ଡେଙ୍ଗା ପରୁଅଁିଆ ନଡ଼ିଆଗଛର ବରଡ଼ା ସନ୍ଧିରେ ଝୁଲୁଥିବା ବାୟାଚଢ଼େଇର ବସାକୁ ନିରୀକ୍ଷଣ କରିବାକୁ ଲାଗିଲେ ।

କମଲେଶ ଓ ରାଜେଶ ନିଜ ନିଜ ଗାଡ଼ିଅଡ଼କି ଯାଉଥିଲେ । ଏଣେ ବଡ଼ବାବୁଙ୍କର ସବା ସାନପୁଅ କିଶୋର ତା' ବୋଉକୁ ଜିଗର କରି କହୁଥାଏ, ''ବୋଉ ! ମୁଁ କାରରେ ବସିବି ଲୋ, ମୁଁ କେବେ ବି କାରରେ ବସିନାହିଁ, ମୁଁ କାରରେ...... ।'' ବୋଉ ବୁଝେଇବାକୁ ଚେଷ୍ଟା କରୁଥିଲା, ତୁ କୁଆଡ଼େ ଯିବୁରେ ? ସେମାନେ ତାଙ୍କର

ଯାଉଛନ୍ତି ।" କିନ୍ତୁ କିଶୋର ତା' ଜିଦ୍‌ରେ ଅଟଳ ଥିଲା । "ମୁଁ ଆଗରେ ଯାଇ ଓହ୍ଲେଇ ପଡ଼ିବି, ସ୍କୁଲ ପାଖରେ । ବୋଉ ! ମୁଁ କେବେହେଲେ କାରରେ ଚଢ଼ି ନାହିଁ ।" ବିନ୍ଦାବାବୁ କିଶୋରକୁ ଅଳି କରୁଥିବାର ଦେଖିଲେ ଏବଂ ରାଜେଶର ଡ୍ରାଇଭରକୁ ଡାକି ଚୁପ୍‌କିନା କହିଦେଲେ, "କିଶୋରକୁ ନେଇ ଯା,' ଆଗରେ ସ୍କୁଲ ପାଖରେ ଓହ୍ଲେଇ ଦେବ ।"

କମଳେଶର ଗାଡ଼ିଟା ଆଗକୁ ଥିଲା । ରାଜେଶ ଗାଡ଼ି ଠିକ ଓଲଟାଲକୁ ପଛକୁ ରହିଥିଲା । ସେ ତା' କାରର ଆଗ ସିଟ୍‌ରେ ଡ୍ରାଇଭର ପାଖକୁ ବସି ଯାଇଥିଲା । ତା' ସ୍ତ୍ରୀ ଏବଂ ପିଲାଏ ପଛରେ ବସିଥିଲେ ।

ଡ୍ରାଇଭର ସିଧାରେ ଠିକ ପଛକୁ ବଢ଼ିଥିବା ପ୍ରଥମେ କାରର ଦୁଆର ବନ୍ଦ କରିବାକୁ ଚେଷ୍ଟା କରୁଥିଲା । କିଶୋର ଭିତରକୁ ପଶିବାକୁ ଚାହିଁଲାରୁ ସେ ମୁହଁ ଛୁଆଁଇ କହିଲା, "ତୁ କୁଆଡ଼େ ଯିବୁ ? ଆମେମାନେ ତ ଆମଘରକୁ ଯାଉଛୁ ।" କିଶୋରକୁ ସାମାନ୍ୟ ଧକ୍‌କା ଦେଇ ସେ କାରର ଦୁଆର ଦେଇଦେଲା । ଶରୀରର ସାମ୍ୟ ନରଖି ପାରି କିଶୋର ଭୂଇଁରେ ପଡ଼ିଗଲା । ରାଜେଶ ତଳକୁ ମୁହଁ ମାଡ଼ି ଥିଲା ଓ ତା' ଗୋଡ଼ ପାଖରେ ସ୍ତ୍ରୀ ହାତରୁ ଖସିଯାଇଥିବା ସୁନାର କଙ୍କଣଟାକୁ ଖୋଜିବାକୁ ଚେଷ୍ଟା କରୁଥିଲା । କାର ତା' ବାଟରେ ଆଗେଇଗଲା । ବିନ୍ଦାବାବୁ ଚଟାପଟ ଧାଇଁ ଯାଇ ପୁଅକୁ ଉଠେଇଲେ । ନିଜ ଆଣ୍ଠୁ ଉପରେ ଭରାଦେଇ କିଶୋର ଠିକ ବୁଢ଼ୀ ମା'ପରି ଗୋଟାଏ ଟୁଲ୍‌ପରି ଅବିଚଳିତ ଭାବରେ ଠିଆହୋଇ ଅପସୃୟମାଣ କାର୍‌କୁ ଦେଖିବାରେ ଲାଗିଥିଲା । ବିନ୍ଦାବାବୁ ମଧ୍ୟ କାଠ ପାଲଟି ଯାଇଥିଲେ । ବୋଉ, ଅନୁ, ଶାରଦା, ସ୍ତ୍ରୀ—ସମସ୍ତେ ନିର୍ଜୀବ ମୂର୍ତ୍ତିପରି ଧୂଳି ଉଡ଼ାଇ ଚାଲିଯାଉଥିବା ଗାଡ଼ି ଦୁଇଟିର ଛାୟାଭାସକୁ ଧରିରଖିବା ପାଇଁ ସତେ ଯେମିତି ଚେଷ୍ଟା କରୁଥିଲେ ।

ସାମ୍ନାର ଶୂନ୍ୟ-ଉଦାସ ସଡ଼କକୁ ଏକ ଲୟରେ ଚାହିଁରହିଥିଲେ ବିନ୍ଦାବାବୁ । ପୁଣି କେଜାଣି କ'ଣ ଭାବି ହସି ହସି ସ୍ତ୍ରୀଙ୍କ ଆଡ଼କୁ ଚାହିଁଲେ । ତାଙ୍କ ସ୍ତ୍ରୀ ମଧ୍ୟ କ'ଣ ବୁଝିଲେ କେଜାଣି ସ୍ୱାମୀଙ୍କ ସହିତ ହସିଦେଲେ । ହସି ହସି ଫୁଟି ଆସୁଥିବା କଢ଼ିଟିଏ ପରି ସ୍ମିତ ହସ ଧୀରେ ଧୀରେ ହସର ସମ୍ପୂର୍ଣ୍ଣ ବିକଶିତ ଫୁଲଟିଏ ହୋଇଗଲା । ପତିପତ୍ନୀଙ୍କ ମଧ୍ୟରେ ଏହି ହସର କ'ଣ ପୃଷ୍ଠଭୂମି ଥିଲା ତାହା ସେମାନଙ୍କୁ ଜଣା । ଦୁହେଁ ହୁଏତ ସେହି ପୃଷ୍ଠଭୂମି ଉପରେ ଚନ୍ଦ୍ରାକର ନିଜ ନିଜକୁ ଲକ୍ଷ୍ୟ କରି ବା ପରସ୍ପରକୁ ଲକ୍ଷ୍ୟକରି ହସୁଥିଲେ । ବୋଉ ମୁହଁଟେକି ତା' ବଡ଼ପୁଅ ଆଡ଼କୁ ଅନେଇଲା ଓ ହସିଦେଲା । ଗୋଟାଏ ବିଚିତ୍ର ବିସଙ୍ଗତ ସ୍ଥିତି ସୃଷ୍ଟି ହୋଇଗଲା । ଅଣ୍ଟୁରୁ ଦରକ କଥା ଭୁଲି କିଶୋର ମଧ୍ୟ ସିଧା ଠିଆହୋଇଗଲା ଓ ଲୋକାଙ୍କପରି ସମସ୍ତେ ହସୁଥିବାର ଦେଖି ହସିବାକୁ ଲାଗିଲା । କାଦୁଅରେ ଗୋଡ଼ଖସି ପଡ଼ିଯାଇଥିବା ଲୋକଟି ତାର ଅବସ୍ଥା ଦେଖି ହସୁଥିବା ଲୋକଙ୍କୁ ଚାହିଁ ନିଜେ ହସିଲାପରି, ବୋଧହୁଏ ଏହି ହସ ସେହିପରି ଥିଲା ।

—*—

# ବହୁରୂପୀ

□ ରାଜେନ୍ଦ୍ର କୁମାର

ପୃଷ୍ଠିକା ଉପରେ ଦୃଷ୍ଟି ଦେଉଣୁ ମାତେ ପାଣ୍ଡେ ଚମକି ଉଠିଲା । କେତେକ ସଂଖ୍ୟା ଭୁଲ ଛପା ହୋଇଥିଲା । ସେ ସବୁ ସଂଖ୍ୟା ଉପରେ ଦୃଷ୍ଟି ପକାଇଲା । ସେ ଭଲଭାବରେ ସଂଖ୍ୟାଗୁଡ଼ିକ ମିଳେଇ ଗଲା—ଆଉ କେଉଁଠି ଭୁଲ ରହିଯାଇ ନାହିଁତ ? ହାରାହାରି ଦଶ ମିନିଟ ପରେ ଚତୁର୍ଥ ଭୁଲ ସେ ଖୋଜି ଖୋଜି ପାଇଲା ! ଏଥିପାଇଁ ସେ ନିଜେ କେମିତି ପ୍ରୁଫ୍ ରିଡ଼ର ଦାୟୀ । କିନ୍ତୁ ତା'ର ନିଜ ଉପରେ ଅଧିକ ସନ୍ଦେହ ହେଲା ।

ଯଦିଓ ଏସବୁ ମାମୁଲି ଭୁଲ, ତଥାପି ତା କାର୍ଯ୍ୟାଳୟର ଏତକ୍ କର୍ମ-କୁଶଳତା ଦେଖି କେତେଟା ବିଷାଦ ଅନୁଭବ କଲା ଏବଂ ଏକ ସିଦ୍ଧାନ୍ତରେ ପହଞ୍ଚିଲା ଯେ ସେ ତା'ର ଅନ୍ୟାନ୍ୟ ସହକର୍ମୀଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିବା ପ୍ରତ୍ୟେକ ବୁକ୍‌ଲେଟରେ ଅତି କମ୍‌ରେ ଦଶଟି ଭୁଲ ନିଶ୍ଚୟ ଥିବ ।

ଅବଶ୍ୟ ସେ ଜାଣିଥିଲା ଯେ ଏଇ ଭୁଲ ଲାଗି ତା' ରେକର୍ଡ଼ ଖରାପ ହେବ ନାହିଁ କିନ୍ତୁ ସଂଚାଳକଙ୍କର ଗାଳି ଓ ସେ ବେଳର ଚେହେରା ? ପାଣ୍ଡେ ନର୍ଭସ ହୋଇଗଲା । କେତେକ୍ଷଣ ଭିତରେ ତାକୁ ଏମିତି ବୋଧ ହେଲା ଯେତେ ଯେମିତି ସେ ହିଁ ପ୍ରକୃତ ଦୋଷୀ, ପ୍ରୁଫ୍‌ରିଡର ପକ୍ଷରେ ଭୁଲ କରିବା ଅସମ୍ଭବ ।

ଏଇ ସମୟରେ ଫୋନ ବାଜି ଉଠିଲା । ସଂଚାଳକଙ୍କର ଫୋନ ? ହୁଏତ ସେ ଏ ଭୁଲ ସବୁ ଧରି ପାରିଛନ୍ତି ଏବଂ ଏବେ ପାଣ୍ଡେକୁ ତାଙ୍କ ଲେକଚର ଶୁଣିବାକୁ ପଡ଼ିବ । ସେ ତରତର ଫୋନ ଉଠାଇଲା । ନା, ଭୁଲ ବିଷୟରେ କିଛି ଜାଣି ପାରି ନାହାନ୍ତି । ପ୍ରଥମ ଧାଡ଼ି, ପ୍ରଥମ ବାକ୍ୟରୁ କଥା ସ୍ପଷ୍ଟ ।

"ଏ କାମକୁ ଭଲ ଭାବରେ କରିବ । — ଏକଦମ ହୁସିଆର ହୋଇ କରିବ । ଏହାକୁ ନିଜେ ବାଣିଜ୍ୟ ମନ୍ତ୍ରୀ ଦେଖିବେ" ସଂଚାଳକ ତାଙ୍କ ରୁମ୍‌ରୁ କହୁଥିଲେ ।

ପାଣ୍ଡେ ବିଚଳିତ ହେଲା । ଯେତେ ଯେମିତି କାମ କଲାବେଳେ ସେ ହୁସିଆର ହୋଇ କାମ କରେ ନାହିଁ । ଏ ପ୍ରକାର କଥା କହିବା ଖାଲି ଅନୁଚିତ ତ ନୁହେଁ କୁତ୍ସିତ ମଧ୍ୟ । ଅଉ ବାଣିଜ୍ୟ ମନ୍ତ୍ରୀ କ'ଣ ଖାଇକରି ଦେଖିବ ? ଅଶିକ୍ଷିତ,ମୂର୍ଖ ।

"ଆପଣ ନିଶ୍ଚିନ୍ତ ରହନ୍ତୁ !" ପାଣ୍ଡେ ନିଜ ରାଗକୁ ଲୁଚେଇ ରଖି କହିଲା ।

"ମୁଁ କହିଲିନା ବାଣିଜ୍ୟ ମନ୍ତ୍ରୀ ନିଜେ ଦେଖିବେ । ଦୁଇକାନ ଖୋଲିକରି ଶୁଣିଲେତ ?" ସଂଗ୍ରାଲକ ପୁଣି କହିଲେ ଏବଂ ଉତ୍ତର ଶୁଣିବା ପାଇଁ ଚୁପ୍ ରହିଲେ ।

ଏ ଅଯଥା ଅପମାନ ଓ କ୍ରୋଧ ଲାଗି ସେ ଦୁଇ ସେକେଣ୍ଡ ଚୁପ୍ ରହିଲା ମନ ହେଲା ଫୋନଟାକୁ କଚାଡ଼ି ଫିଙ୍ଗି ଦେବାକୁ ।

"ମୁଁ ଯାହା କହିଲି, ଠିକ ଭାବରେ ଶୁଣିଲେ ତ ?" ପାଣ୍ଡେ ରାଗରେ ଦାନ୍ତ ଚିପି ଉତ୍ତର ଦେଲା "ହଁ ଅତି ସାବଧାନ ହୋଇକି କରିବି" ଓ ଫୋନଟା ଥୋଇ ଦେଲା ।

ପୁଣି ମନେ ପଡ଼ିଲା ତା'ର ସେ ଭୁଲଯାକ ଏବଂ ଅପମାନ ଓ ଭୟର ଏକ ମିଶ୍ରିତ ଅନୁଭୂତି ସେ ବୋଧକଲା । ଏଇ ସମୟରେ ସଂଗ୍ରାଲକର ଦୃଷ୍ଟି ଏ ଭୁଲ ଉପରେ ପଡ଼ିଯାଏ ତ ଏ ନୂଆକାମ ତାଠୁ ନେଇ ଅନ୍ୟ କାହାକୁ ଦେଇଦେବ । ତା'ଛଡ଼ା ତାକୁ "ଅକର୍ମଣ୍ୟ" ଏବଂ 'ଅଯୋଗ୍ୟ' ବୋଲି ପ୍ରମାଣ କରିବ ।

ସହସା ନିଜ ଭବିଷ୍ୟତ ଅବସ୍ଥା ପ୍ରତି ସଜାଗ ହୋଇ ପାଣ୍ଡେର ରାଗ ପଞ୍ଚମକୁ ଉଠିଗଲା । ସେ ଏପ୍ରକାର ପ୍ରତି ଅଭ୍ୟସ୍ତ ହୋଇ ଯାଇଥିଲା ଏବଂ ସେ ସର୍ବଦା ମନେ କରୁଥିଲା ଯେ ସଂଗ୍ରାଲକ ତାଠାରୁ ତୁଳନା କଲେ, ଅନେକ ଭଲେ—କିନ୍ତୁ ଆଜି ସେ ସବିସ୍ତୃତ ଭାବରେ ତୁଳନା କରିବାକୁ ଲାଗିଲା ।

ସଂଗ୍ରାଲକ ତାଠାରୁ ଢେର ଉଚ୍ଚ ପଦରେ ଅଧିଷ୍ଠ । ତା ଜାଗାରେ ପହଞ୍ଚିବା ପାଇଁ ଆଉ ଦଶବର୍ଷ ଲାଗିବ । କିନ୍ତୁ ସେଥିରେ କ'ଣ ଅଛି ? ସେ ଫାଷ୍ଟକ୍ଲାସ କିନ୍ତୁ ସଂଗ୍ରାଲକ ଦ୍ୱିତୀୟ ଶ୍ରେଣୀର । ସଂଗ୍ରାଲକ ଇକୋନୋମିକ୍ସ୍‌ରେ କିନ୍ତୁ ସେ ନିଜେ ଇଂଗ୍ଲିସ୍‌ରେ ଏମ୍. ଏ. । ସଂଗ୍ରାଲକ ଗୋଟାଏ ରୁକ୍ଷ ବ୍ୟୁରୋକ୍ରାଟ, ସେ ଜଣେ ଇଣ୍ଟେଲେକ୍‌ଚୁଆଲ୍ । ଏ କଥା ତଥ୍ୟ ଉପରେ ଆଧାରିତ । ସେ ନିଜେ ମାର୍କସଙ୍କଠାରୁ ଆରମ୍ଭ କରି ହାରୋଲ୍ଡ ଲାଷ୍କିଙ୍କ ପର୍ଯ୍ୟନ୍ତ ଏବଂ ଆର୍ଥର କୋଏସ୍ଲରଙ୍କୁ ପଢ଼ିଥିଲା । ଟଲଷ୍ଟୟଙ୍କଠାରୁ ଗ୍ରାହମଗ୍ରିନ, ଅର୍ନେଷ୍ଟ ହେମିଙ୍ଗ୍‌ୱେ ପର୍ଯ୍ୟନ୍ତ କୌଣସି ବିଖ୍ୟାତ ଲେଖକଙ୍କୁ ବାଦଦେଇନଥିଲା । ଲର୍ଡ଼ ରସେଲ ଏବଂ ଜୁଲିୟନ ହକ୍ସ୍‌ଲେଙ୍କର ଅନେକ ବହି ପଢ଼ିଛି । ଆଉ ସଂଗ୍ରାଲକ କ'ଣ ପଢ଼େ ? ଡିଟେକ୍‌ଟିଭ ନ'ଭେଲ ଏବଂ ଓ୍ୱାଇଲ୍ଡ୍ ଓ୍ୱେଷ୍ଟର କାହାଣୀ ନା ଅନ୍ତର୍ଜାତୀୟ ନା ରାଷ୍ଟ୍ରୀୟ ସମସ୍ୟା ବା ଘଟଣାବଳୀ ପ୍ରତି ସଂଗ୍ରାଲକର ଆଗ୍ରହ ନାହିଁ । ଅଥଚ ସେ ନିଜେ ରାଷ୍ଟ୍ରୀୟ ସ୍ତରର ସମସ୍ତ ସମ୍ବାଦପତ୍ର ଭଲଭାବରେ ପଢ଼େ ଏବଂ ଖାଲି ସେତିକି ନୁହେଁ, ସଦାବେଳେ ସେ ଷ୍ଟାଣ୍ଡସ୍ଥ ଏକ କ୍ଷମାପ୍ରାପ୍ତ ଇଂରାଜୀ କାଗଜର ଅଫିସକୁ ଯାଇ ନିଉୟର୍କ ଟାଇମ୍‌ସ ଏବଂ ନ୍ୟୁ ଷ୍ଟେଟ୍‌ସ୍‌ମ୍ୟାନ୍ ବି ପଢ଼େ । ଭିଏତ୍‌ନାମରୁ ନେଇ ବର୍ଲିନ୍ ପର୍ଯ୍ୟନ୍ତ ପ୍ରତିଟି

ଘଟଣାର ଚିକିନିଖି କଥା ସେ ଜାଣିଥାଏ ଏବଂ ଏଇସବୁ କଥା ଉପରେ ଗଭୀର ଭାବରେ ଚିନ୍ତା କରେ, ଆଲୋଚନା କରେ । ସମାଜବାଦ ସେ ଅଧ୍ୟୟନ କରିଥିଲା ଏବଂ ନିଜ ତଥା ଅନ୍ୟ ଦେଶମାନଙ୍କରେ ଜନକଲ୍ୟାଣମୂଳକ ସକଳ କାର୍ଯ୍ୟାବଳୀ ବିଷୟରେ ଅଗାଧ ଜ୍ଞାନ ଆହରଣ କରିଥିଲା । ଅନ୍ୟପକ୍ଷରେ ଏହାର ଠିକ୍ ଓଲଟା ହେଉଛନ୍ତି ସଂଚାଳକ, କେବଳ ରାଜ୍ୟ ଏବଂ ରାଜ୍ୟ ସ୍ତରସ୍ଥ ରାଜନୀତି ପର୍ଯ୍ୟନ୍ତ ତାଙ୍କର ଆଗ୍ରହ ସୀମିତ । ସେ ମଧ୍ୟ ଏଇଥି ପାଇଁ ଯେ ରାଜ୍ୟର ରାଜନୀତିର ଉତ୍ଥାନ ପତନରେ ତା ବ୍ୟାବସାୟର ଲାଭ ।

ଅତୁଲ ଗୋଟାଏ ବିଷୟରେ ସେ ସଂଚାଳକଠାରୁ ସୁପରିୟର । ସଂଚାଳକ ଗୋଟାଏ ନ୍ୟୁବ୍ ଅଥଚ ସେ ଜଣେ ପ୍ରଗତିଶୀଳ । ସେ ସାମାଜିକ, ପ୍ରଶାସନିକ ବା ଆର୍ଥିକ ଦୃଷ୍ଟିକୋଣରୁ କାହାକୁ ପରୀକ୍ଷା କରେ ନାହିଁ । ତଥା ଏତଦ୍‌ବ୍ୟତୀତ ତା ବ୍ୟବହାର ଏସବୁ କଥାରେ ପ୍ରଭାବିତ ହୁଏ ନାହିଁ । ସଂଚାଳକ ଏକଦମ ଓଲଟା । ସେ ତାଠାରୁ ଉଚ୍ଚପଦବୀ ପ୍ରାପ୍ତ ବ୍ୟକ୍ତିଙ୍କୁ ଖୋସାମତ କରେ ଏବଂ ତା ତଳେ ଥିବା ଲୋକଙ୍କୁ ନଗଣ୍ୟ ମନେ କରେ । ପାଣ୍ଡେର ମଧ୍ୟ ଏ ସନ୍ଦେହ ଥିଲା ଯେ ସଂଚାଳକ ସାମ୍ପ୍ରଦାୟିକ ମନୋଭାବ ସମ୍ପନ୍ନ ବ୍ୟକ୍ତି, ସମ୍ଭବତଃ ସେ ଗୋହତ୍ୟା ନିରୋଧର ସମର୍ଥକ !

ଏମିତିଆ ସାଧାରଣ ଆଉ କାଳେ ଧରଣର ଲୋକ ଆଗରେ ଦୋଷୀ ହେବାର ଚିନ୍ତା, ଅତି ସାଧାରଣ ତଥା ସାମାନ୍ୟ ଦୋଷ ପାଇଁ ହେଲେବି, ପାଣ୍ଡେକୁ ଅସହ୍ୟ ବୋଧ ହେଲା ଏବଂ ସେ ନିଜର ବିବଶତାର ତୀବ୍ର ସ୍ପର୍ଶ ଅନୁଭବ କଲା । ଏପ୍ରକାର ଅନୁଭବ ତା'ର ଆଜି ପ୍ରଥମ ନୁହେଁ । ଆଗରୁ କେତେଥର ଅନୁଭବ କରିଛି, କେତେଥର ବି ସଂଚାଳକର କୋଠରୀରୁ ଅପମାନ ପାଇ ପଳେଇ ଆସିଛି ।

କିନ୍ତୁ ଏଥରକ ତା'ର ଲକ୍ଷ୍ୟ ଥିଲା ଅପମାନରୁ ରକ୍ଷା ପାଇବାକୁ । ଆଉ ଦିନେ ଲଞ୍ଚ ଟାଇମରେ କେହି ଅଫିସରେ ନଥିଲାବେଳେ, ସେ ଗଭୀର ଅନ୍ତର୍ଦ୍ୱନ୍ଦ୍ୱ ଭିତରେ ପ୍ରୁଫରିଡ଼ର ଆଲମାରୀର ଚାବିରେ ନିଜ କଂପଲେଣ୍ଟାରୁ ଗୋଟାକ ପରେ ଗୋଟାଏ କାଠି ପୂରାଇ ଖୋଲିବାକୁ ଚେଷ୍ଟା କଲା । ଏଇ ସମୟରେ ତା'ର ମନେହେଲା ଯେ ସେ କୌଣସି ଖରାପ କାମ କରୁଛି । କିନ୍ତୁ ସେତିକରେ ସେ ବନ୍ଦ ହେଲା ନାହିଁ । ଗୋଟାଏ କାଠିରେ ଚାବିଟା ଖୋଲିଗଲା । ସେ ଖୁସିରେ ଚିତ୍କାର କରି ଉଠିଲା । ଆଉ ସେକେଣ୍ଡଟିଏ ମାତ୍ର ଡେରି ନକରି ପୁସ୍ତିକାର ମୂଳ ଲେଖାଟି କାଢ଼ିକରି ଦେଖିନେଲା । ସେଥିରେ ବି ଭୁଲ । ସେ ଜଲଦି ସଂଶୋଧନ କରିଦେଲା । ଏବଂ ଏକଥା ଦେଖି ତା'ର ଖୁସି ହେଲା ଯେ ମୂଳଲେଖା ଏବଂ ଅକ୍ଷର ବାଲା ଏକା ପ୍ରକାରର । ଚଟପଟ ଆଲମାରୀ ବନ୍ଦକରି ନିଜର ଉତ୍ତେଜନାକୁ ନିୟନ୍ତ୍ରିତ କରୁ କରୁ ଅଫିସରୁ ବାହାରି ଆସିଲା ।

ଏବେ ଦୋଷ ପ୍ରୁଫ୍‌ରିଡ଼ର ଉପରେ । କିଛି ସମୟ ଭିତରେ ନିଜର ବିକ୍ଷୁବ୍ଧ ଅନ୍ତଃକରଣକୁ, ଏଇଆ ବୁଝାଇ ଶାନ୍ତକରି ନେଲାଯେ ଏଇ ସବୁ ଭୁଲ ପାଇଁ ପ୍ରୁଫ୍‌ରିଡ଼ରକୁ ଗୋଟାଏ ଗାଳି ବ୍ୟତୀତ ଆଉ କିଛି ସହିବାକୁ ପଡ଼ିବ ନାହିଁ ଏବଂ ଏମାନେତ ସଦାବେଳେ ଗାଳି ଶୁଣୁଛନ୍ତି । ତା' ଛଡ଼ା ବୁକ୍‌ଲେଟର ପ୍ରତିଟି କପିରେ ଗୋଟିଏ ଶୁଦ୍ଧିପତ୍ର ଯୋଡ଼ି ଦିଆଯିବ ।

ଦି ଦିନ ପରେ ସେ ସମ୍ପାଦକ ପାଇଁ ଛୁଟିରେ ଚାଲିଗଲା । ଫେରିଲା ତିନି ଦିନ ପରେ । ସେ ଦରମା ପାଇଁ ଆନନ୍ଦ ହୋଇ ଅପେକ୍ଷା କରିଥିଲା ବେଳେ ତା'ର ଜଣେ ସାଙ୍ଗ, ରଘୁନାଥ ଆସି କହିଲା "ଶୁଣିଛିକି, ଗୋପାଳ ଚନ୍ଦ୍ର ସସ୍‌ପେଣ୍ଡ ହୋଇଗଲା" ?

ପାଣ୍ଡେକୁ ଗୋଟାଏ ଧକ୍‌କା ଭଳି ଲାଗିଲା । ବଡ଼ ସୁନ୍ଦର ଭାବରେ ନିଜର ଆଶ୍ଚର୍ଯ୍ୟକୁ ଲୁଚେଇ ପଚାରିଲା "ସସ୍‌ପେଣ୍ଡ ହୋଇଗଲା— କିନ୍ତୁ କାହିଁକି ?

"ସଂଚାଳକ ସହିତ ଝଗଡ଼ା ହେଲା ।"

ପାଣ୍ଡେ ମନରେ ଏକ କ୍ଷୀଣ ଆଶା ଜାତ ହେଲା ଯେ ସମ୍ଭବତଃ ଆଉ କୌଣସି ଘଟଣା ଲାଗି ସେ ସସ୍‌ପେଣ୍ଡ ହୋଇଛି । "ଅଚ୍ଛା ଘଟଣା କ'ଣ ?" ସେ ସଂଯତ ସ୍ୱରରେ ପଚାରିଲା ।

"ଶୁଣୁଛି ସେ ସଂଚାଳକ ସାଙ୍ଗରେ ଗଣ୍ଡଗୋଳ କଲା ।"

ପାଣ୍ଡେର ଉତ୍ସୁକତା ତୀବ୍ର ହୋଇଗଲା, କିନ୍ତୁ ସେ ସାଧାରଣ ଭାବରେ ପଚାରିଲା, "କ'ଣ ତାକୁ କୌଣସି କଥାରେ ସଂଚାଳକ ଗାଳି ଦେଇଥିଲେ ?"

ହଁ, ଗାଳି ଦେଇଥିଲେ— ପ୍ରୁଫ୍‌ରେ ଥିବା ଭୁଲ ଲାଗି ଆଲମାରୀ ଖୋଲିଲାବେଳେ ପାଣ୍ଡେକୁ କେହି ଦେଖି ନଥିଲେ । ନା କାହାକୁ ସଂଦେହ ହୋଇଥିଲା ଯେ ଏ କୁତ୍ସିତ କାମ ପାଣ୍ଡେହିଁ କରିଛି । କାରଣ ଆଲମାରୀର ଚାବି ପ୍ରୁଫ୍‌ରିଡର ପାଖରେ ହିଁ ରହେ । ଏତଦ୍‌ବ୍ୟତୀତ ବୁକ୍‌ଲେଟର ମୂଳ ଲେଖାରେ ଅନେକ କଟାକଟି ହୋଇଥିଲା ଓ ଭୁଲର ସଂଶୋଧନ ବି ସେ ସେଇ କାଳିରେ କରିଥିଲେ । ଏ ପ୍ରକାର ଚିନ୍ତାକରି ସେ ଆଶ୍ୱସ୍ତ ହୋଇ କହିଲା "ଇଏତ ଗୋଟାଏ କଥା ନା କ'ଣ ? ଭୁଲ କାହାର ହେଉନାହିଁ । କିନ୍ତୁ ଏଇ ଗୋଟାଏ କଥା ଉପରେ କାହାକୁ ସସ୍‌ପେଣ୍ଡ କରିଦେବା ଅନୁଚିତ । କ'ଣ ସଂଚାଳକର କେବେ ଭୁଲ ହେଉନାହିଁ" ?

"କିନ୍ତୁ ସେ ଭୁଲ ପାଇଁ ନୁହେଁ—ନିଜର ଅଭଦ୍ରତା ପାଇଁ ସସ୍‌ପେଣ୍ଡ ହୋଇଛି ।" ରଘୁନାଥ କହିଲା ।

ସେ ଯେ ଭୁଲପାଇଁ ସସ୍‌ପେଣ୍ଡ ହୋଇନାହିଁ, ଶୁଣି ପାଣ୍ଡେ ଆଶ୍ୱସ୍ତ ହେଲା । ଏବେ ଗୋଟାଏ ପ୍ରକାରରେ ତା'ର ଏ ଦୁର୍ଗତି ନିମିତ୍ତ ସେ ଦାୟୀ ନୁହେଁ ।

ଚା ଖାଇଲା ବେଳ ହୋଇଯାଇଥିଲା । ଗୋଟାଏ ଟ୍ରେ' ଚା' ଆଣିବା ପାଇଁ ପାଣ୍ଡେ ଚପରାସିକୁ କହିଲା । ଦୁ' ମିନିଟ ପରେ ପ୍ରଧାନ ପରି ତା'ର ଅନ୍ତରଙ୍ଗ ସାଙ୍ଗ ଭଗବାନ ସିଂ ଚା ଖାଇବାକୁ ଆସି ଆଗ ଶୁଣାଇଲା "ଗୋପାଳଚନ୍ଦ୍ରଙ୍କୁ ସସ୍‌ପେଣ୍ଡ କରାଯାଇଛି । ସେ ପୁଣି କେଉଁଟା ମାତ୍ର ଭୁଲ ପାଇଁ ।"

ପାଣ୍ଡେ ହସିଲା । "ପ୍ରୁଫ୍‌ର ଭୁଲ ପାଇଁ କେହି କେବେ ସସ୍‌ପେଣ୍ଡ ହୁଏ ?"

"କିନ୍ତୁ ସେଇଆ ତ କରାଗଲା । ଆଉ ସବୁ ପ୍ରୁଫର ଭୁଲପାଇଁ ନୁହେଁ ତ ସସ୍‌ପେଣ୍ଡ କରାଗଲା କେଉଁଥି ପାଇଁ ?"

"ସେ କୌଣସି ଭୁଲ ପାଇଁ ନୁହେଁ କିନ୍ତୁ ମୁହଁରେ କଡ଼ା ଜବାବ ଦେଇଥିବା ହେତୁ ହିଁ ସସ୍‌ପେଣ୍ଡ ହୋଇଛନ୍ତି" ପାଣ୍ଡେ ଜୋରରେ କହିଲେ ।

"ହୁଁ ସତକଥା" ଭଗବାନ ସିଂହର ଆଗ୍ରହ ଗୋଟାପଣେ ମରିଗଲା ଏବଂ ସେ ଟେବୁଲ ଉପରେ ପଡ଼ିଥିବା ଖବର କାଗଜଟା ପଢ଼ିବାକୁ ଲାଗିଲା ।

ଗୋପାଳଚନ୍ଦ୍ରର ବିପତ୍ତି ନିମିତ୍ତ ନିଜକୁ ଦାୟୀ ନ କରୁଥିବା ହେତୁରୁ ସେ ବଡ଼ ଅସ୍ୱସ୍ତି ବୋଧକଲା । ଚା' ପିଇନେଇ କହିବାକୁ ଆରମ୍ଭ କଲା ପାଣ୍ଡେ, "ଗରିବ ଲୋକ, ତା'ଛଡ଼ା ତଳିଆ କର୍ମଚାରୀ । ତାଙ୍କୁ ଯାହା ଇଚ୍ଛା ତା କରାଯାଇ ପାରେ । ଏପରିକି ବରଖାସ୍ତ କରିଦେଲେ ବି କିଏ କାହାକୁ ଖାତର କରିବ ?

ଦୁଇତିନି ଦିନ ଯାଏ ପାଣ୍ଡେର ମନ ସ୍ଥିର ହେଲା ନାହିଁ । କେତେବେଳେ କେତେବେଳେ ସେ ଭାବିଲା ଯେ ବିଚରା ପ୍ରୁଫ୍‌ରିଡର ବିପଦରେ ପଡ଼ିଲା କେବଳ ତା'ରି ପାଇଁ । ଆଜିଯାଏଁ ସବୁ ପ୍ରୁଫ୍‌ରିଡ଼ରଙ୍କର କେଜାଣି କେତେ ଭୁଲ ହୋଇଛି । କିନ୍ତୁ ସେମାନଙ୍କ ଭିତରୁ କେହି ଜଣେ ହେଲେତ ସସ୍‌ପେଣ୍ଡ ହୋଇନାହିଁ—ଏବଂ ଏତିକି ଭାବି ସେ ନିଜକୁ ଦାୟୀ କରି ପାରିଲା ନାହିଁ ।

ଶେଷରେ ସେ ପୁଣି ଥରେ ନିଜକୁ ଧରିନେଲା ଯେ ସେ ମୋଟେ ଦାୟୀ ନୁହେଁ ! କିନ୍ତୁ ଯେହେତୁ ସେ ଗୋପାଳଚନ୍ଦ୍ରଙ୍କୁ ଦୋଷୀ ରୂପେ ଗ୍ରହଣ କରିପାରୁ ନଥିଲା ସେଥିପାଇଁ ଯେତିକ ସମସ୍ତ ଗଡ଼ ଚାଲିଥିଲା ତା'ର ବିଶ୍ୱାସ ସେତିକ ପରିମାଣରେ

ପାଣ୍ଡେକୁ ଏ ଯୁକ୍ତି ଭଲ ଲାଗିଲା ନାହିଁ । ଆରଦିନ ବହୁତ ଭାବଚିନ୍ତି ସେ ରଘୁନାଥକୁ ଗୋଟାଏ ପ୍ରସ୍ତାବ ଦେଲା ଯେ "ଯଦି ଆମେ କେତେଜଣ ଅଫିସର ସଂଚାଳକଙ୍କୁ ଭେଟି ଗୋପାଳଚନ୍ଦ୍ର ପାଇଁ ସୁପାରିଶ କରିବା ତାହେଲେ କ'ଣ ଉଚିତ ହେବ ନାହିଁ ?"

ପ୍ରଥମେ ରଘୁନାଥ ଏକମତ ହେଲା ନାହିଁ କିନ୍ତୁ ଟିକିଏ ବେଶୀ ଜୋର ଦେଇ କହିବା ଫଳରେ ରାଜି ହୋଇଗଲା । ଏହିମିତି ପାଣ୍ଡେ ତା'ର ଆଉ ଜଣେ ସାଙ୍ଗ ଶିବନାଥଙ୍କୁ ରାଜି କରାଇଲା ।

ସଞ୍ଚାଳକଙ୍କୁ ଭେଟିବା ପୂର୍ବରୁ ଥରେ ସେ ନିଜକୁ ସାନ୍ତ୍ୱନା ଦେଲା । ସେ ତାକୁ ସଂଦେହ କରିବାର ଏଠି ଟିକେ କାରଣ ନାହିଁ ଏବଂ ସେ ଗୋପାଳଚନ୍ଦ୍ର ପାଇଁ ସଂଚାଳକଙ୍କୁ କହି ପାରିବେ ।

ସଂଚାଳକଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଚା'ଖିଆ ବେଳଟାହିଁ ଉତ୍କୃଷ୍ଟ । ତିନିଜଣଯାକ ସ୍ଥିର କଲେ ଯେ ଆଜି ସେମାନେ ତାଙ୍କ ସହିତ କଥାବାର୍ତ୍ତା କରି ସାରିଲା ପରେ ଚା' ପିଇବେ ! ଖୁବ୍ ବେଶୀ ହେଲେ ଦଶ ମିନିଟ ଡେରି ହେବ ।

"କହନ୍ତୁ କ'ଣ ହେଲା ?" ସଂଚାଳକ ସେମାନଙ୍କୁ ଏକା ସାଙ୍ଗରେ ତାଙ୍କ ରୁମ୍‌କୁ ଆସିବାର ଦେଖି ପଚାରିଲେ ।

"ସାର୍ ! ଆପଣଙ୍କୁ ଗୋଟାଏ ନିବେଦନ କରିବୁ ଆଜ୍ଞା" ପାଣ୍ଡେ କଥା ଆରମ୍ଭ କଲା । "କଥା କ'ଣ ?"

ସଂଚାଳକଙ୍କର ଅହଂମନ୍ୟଭାବ ଦେଖି ପାଣ୍ଡେକୁ ବୋଧ ହେଲା ଯେ ସେମାନେ ଭାବିକରି ଆସିଥିବା କଥା କହିଲେ କାମ କରିବ ନାହିଁ ।

"ସାର, ଗୋପାଳଚନ୍ଦ୍ରକୁ କ୍ଷମା କରି ଦିଅନ୍ତୁ । ବିଚରା ଗରିବ ଲୋକ । ଯଦି ତା ଚାକିରି ଚାଲିଯାଏ ତାହାହେଲେ ବିଚରା ବଡ଼ ଅସୁବିଧାରେ ପଡ଼ିବ ।" ସେ କିଛିଟା ଅସନ୍ତୋଷ ଅନୁଭବ କଲା ଏବଂ ସେହି କ୍ଷଣରେ ସଂଚାଳକର ପ୍ରଭୁତ୍ୱ ଏବଂ କ୍ଷମା ଦାନ ଶକ୍ତି ଉପରେ କ୍ଷୁବ୍ଧ ହେଲା ।

—"ତାକୁ ମୋ ପାଖକୁ ପଠାଇ ଦେବେ । ଦେଖିବା । ମୁଁ ନିଜେ କାହାର କ୍ଷତି କରିବା ଚାହେଁ ନା ।" ସଂଚାଳକ କହିଲେ ।

ପାଣ୍ଡେକୁ ତାଙ୍କ ସ୍ୱରରେ ଅହଂକାରର ଧ୍ୱନି ଶୁଣାଗଲା ଏବଂ ସଂଚାଳକଙ୍କ ପ୍ରତି ତା'ର ଘୃଣା ହେଲା । ମାତ୍ର ରଘୁନାଥ ଏହି ସମୟରେ କହିଲା "ଆଶା ଆପଣ ସହାନୁଭୂତି ସହିତ କଥାଟା ଟିକିଏ ବିଚାର କରିବେ ।"

ପାଣ୍ଡେକୁ ବୋଧ ହେଲା ରଘୁନାଥ କେବଳ ତା କଥା ରଖିବା ପାଇଁ ଏଇ କଥା କେଇପଦ କହିଲା, ଗୋପାଳଚନ୍ଦ୍ର ପ୍ରତି ସହାନୁଭୂତି ପ୍ରକାଶ କରିବା ପାଇଁ ନୁହେଁ । ବିପନ୍ନ ଗୋପାଳଚନ୍ଦ୍ର ପ୍ରତି ସହାନୁଭୂତି ନାହିଁ ବୋଲି ସେ ଟିକିଏ ଦୁଃଖିତ ହେଲା ।

“ମୁଁ ତା'ର କିଛି କ୍ଷତି କରିବ ନାହିଁ, ତାକୁ ମୋ ପାଖକୁ ପଠେଇ ଦେବ ।’ ସଂଗ୍ରହକ କିଛିଟା ନରମ ସ୍ୱରରେ କହିଲେ ।

କୋଠରୀରୁ ବାହାରିଲା ବାହାରୁ ପାଣ୍ଡେ ବୋଧକଲା ଯେ ସୁପାରିଶ କରିବା ସତ୍ତ୍ୱେ ସେମିତି କିଛି ଲାଭ ହେଲା ନାହିଁ । ସଂଗ୍ରହକ ଗୋପାଳଚନ୍ଦ୍ରଠାରୁ କ୍ଷମା ପ୍ରାର୍ଥନା ଦାବୀ କରୁଛି ଏବଂ ଏହାଛଡ଼ା ଆଉ କେଉଁଥିରେ ମାନିବ ନାହିଁ । ସେ ଯେ ସଂଗ୍ରହକଙ୍କୁ ଗୋପାଳଚନ୍ଦ୍ରଙ୍କୁ କ୍ଷମା କରିଦେବା ପାଇଁ ଆସିଲ ବୋଲି ଭାବି ମନକୁ ମନ ଟିକେ ଲଜ୍ଜିତ ହେଲା । ସେ ବୋଧାକଲା ଯେ ରଘୁନାଥ ତା'ର ଏକଥା ଶୁଣି ମନେ ମନେ ହସିଥିବ ।

ଆରଦିନ ଶୁଣିଲା ଯେ ଗୋପାଳଚନ୍ଦ୍ର ସଂଗ୍ରହକଙ୍କୁ ଦେଖା କରିବା ପାଇଁ ବେଳକଠୋକ୍ ମନା କରି ଦେଇଛନ୍ତି । ପାଣ୍ଡେ ଶୁଣି ଚକିତ ହୋଇ ପଡ଼ିଲା ଯଦିଓ ସେ ଗୋପାଳର ଏ ଜିଦ୍ଖୋରି ଉପରେ ଖୁସି ହେଲା ।

ଦୁ'ତିନିଦିନ ଯାଏଁ ଅବସ୍ଥା ଅପରିବର୍ତ୍ତିତ ରହିଲା । ପାଣ୍ଡେ ଆଖିରେ ସଂଗ୍ରହକ ଦିନକୁଦିନ ଶ୍ରେଷ୍ଠ ହୋଇ ଯାଉଥିଲା ଏବଂ ଗୋପାଳଚନ୍ଦ୍ର ମହାନ୍ ହୋଇ ଉଠୁଥିଲା । କିନ୍ତୁ ଏବେ ତାକୁ ଚିନ୍ତିତ ହେବା ଦେଖି ରଘୁନାଥ କହିଲା—“ଏବେ ତୁମେ ଏକଥା ଉପରେ ଚିନ୍ତା ଆଉ କର ନାହିଁ । ଯଦି ସେ ପ୍ରୁଫ୍ରିଡରର ଏତେ ଗର୍ବ ତାହାହେଲେ ତୁମେ କାହିଁକି ଏତେ ଚିନ୍ତା କରୁଛ ? ତାଛଡ଼ା ତୁମେ ଆମେ ତା ପାଇଁ କ'ଣଟା ବା ନ କରିଛେ ?”

ଦୃଢ଼ ହୋଇ ଯାଉଥିଲା ଯେ ଗୋପାଳଚନ୍ଦ୍ରଙ୍କୁ ବାହାର କରି ଦେବାର କାରଣ କେବଳ ସଂଗ୍ରହକର ଅସନ୍ତୁଷ୍ଟତା ଏବଂ ଅହଙ୍କାର ବ୍ୟତୀତ ଆଉକିଛି ନୁହେଁ । ତା ସହିତ ତା'ର ଅନୁମାନ ମଧ୍ୟ ଦୃଢ଼ ହୋଇ ଯାଉଥିଲା ଯେ ଗୋପାଳଚନ୍ଦ୍ର ଜଣେ ସାଧାରଣ ପ୍ରୁଫ୍ରିଡ଼ର ହୋଇ ମଧ୍ୟ ସଂଗ୍ରହକର ଅଭଦ୍ର ବ୍ୟବହାର ବିରୁଦ୍ଧରେ ଆତ୍ମ-ସମ୍ମାନ ରକ୍ଷାପାଇଁ ଠିକଣା ବିରୋଧ କରିଥିବ ଏବଂ ସେ ସ୍ନାବ୍ ରାଗରେ ଜଳିଯାଉଥିବ । ସେ ଭାବିବାକୁ ଲାଗିଲା ଯେ ତାକୁ ସଂଗ୍ରହକର ରାଗର ପରିଣାମରୁ ବଞ୍ଚିବାକୁ ପଡ଼ିବ । ଯଦି ସମ୍ଭବ ପ୍ରୁଫ୍ରିଡରକୁ ମୋଟେ ମୁଣ୍ଡ ନୁଆଁଇବାକୁ ପଡ଼ିବ ନାହିଁ ତଥା ତା'ର ଚାକିରୀ ମଧ୍ୟ ଯିବ ନାହିଁ ।

ଆହୁରି ଦୁଇ ତିନି ଦିନ ବିତିଗଲା । ଦିନେ ପାଣ୍ଡେ ରଘୁନାଥକୁ କହିଲା “ଆଜି-ଯାଏ ଗୋପାଳଚନ୍ଦ୍ରର କଥା କିଛି ବୁଝା ହେଲାନାହିଁ । ତାହେଲେ ତା'ର କ'ଣ ହେବ ? ବିଚରା ଗରିବ ଲୋକ ।”

"ପୁଣି ତାକୁ ବ୍ଲାକଲିଷ୍ଟରେ ରଖି ଦିଆଯିବ । ଏମିତିକା ଘଟଣାରେ ଏହାଠୁ ବେଶୀ ଆଉ କ'ଣ କରାଯାଏ !" ତାକୁ ପୁଣି ବ୍ଲାକଲିଷ୍ଟରେ ରଖି ଦିଆଯିବ ବୋଲି ମୋତେ ଲାଗୁ ନାହିଁ । ପାଣ୍ଡେ ଫଗୁଲାଲ ପ୍ରତି କ୍ରୋଧ ଏବଂ ନିଜର ନୈରାଶ୍ୟମିଶ୍ରିତ କଣ୍ଠରେ କହିଲା । ମୁଁ ଏ ଲୋକଟାକୁ ବହୁତ ଦିନ ହେଲା ଜାଣିଛି । ମିନିଷ୍ଟର ଏବଂ ସେକ୍ରେଟେରୀଙ୍କ ଆଗରେ ପୋଷା କୁକୁର ଭଳିଆ ହୁଏ । ଅଥଚ ଗୋଟାଏ ପ୍ରୁଫରିଡ଼ର ତା'ର ଆତ୍ମସମ୍ମାନ ରକ୍ଷା କଲା ବୋଲି ସସ୍‌ପେଣ୍ଡ କରିଦେଲେ । ଯାହାର ନିଜର ଆତ୍ମ-ସମ୍ମାନ ବୋଧ ନାହିଁ ଅନ୍ୟର ଏହି ସମ୍ମାନବୋଧକୁ ସହିବ ବା କିପରି ?"

"ଏହା କିନ୍ତୁ ତୁମର ଅନ୍ୟାୟ ହେଉଛି' ରଘୁନାଥ ହସି ହସି କହିଲା "ଜଣେ ମିନିଷ୍ଟର ଆଗରେ ଲାଙ୍ଗୁଡ଼ ଯାକେ ବୋଲି କ'ଣ ଗୋଟାଏ ସାମାନ୍ୟ ପ୍ରୁଫରିଡ଼ରର ଅଭଦ୍ରତା ସହ୍ୟ କରିବ ?"

"କିନ୍ତୁ ସେତ ଅଭଦ୍ରତା ନୁହେଁ କେବଳ ଆତ୍ମ ସମ୍ମାନ ରକ୍ଷା ମାତ୍ର," ଝୁର୍ ଝିଗିକରି ପାଣ୍ଡେ କହିଲା, "ଫଗୁଲାଲ ନିଶ୍ଚୟ ଅପମାନଜନକ ଭାଷାରେ ଗାଳି ଦେଇଥିବ, ଯେ କେହି ଲୋକ ଏହା ସହି ପାରିବ ନାହିଁ ।"

"ତୁମେ କେମିତି ଜାଣିଲ ?" ରଘୁନାଥ ଟିକିଏ ଜୋରରେ ପଚାରିଲା ।

"ନୁହେଁ ତ ଆଉ କ'ଣ ତୁମକୁ ଜଣା । ନା ତୁମେ ସେଠାରେ ଥିଲ ନାଁ ମୁଁ ଥିଲି । ତା'ଛଡ଼ା ଏତ ତୁମର ଖାଲି ଅନୁମାନ ନା ନାହିଁ । " ପାଣ୍ଡେ ଟିକିଏ ନରମ ଭାବରେ କହିଲା ।

"ଆଉ ଆପଣ ଅନୁମାନ କରି କହିଦେଇ ପାରୁଛନ୍ତି ଯେ ଫଗୁଲାଲ ଅପମାନ-ଜନକ ବ୍ୟବହାର କରିଥିବେ ଏବଂ ଗୋପାଳଚନ୍ଦ୍ର ଏହାର ତୀବ୍ର ପ୍ରତିବାଦ କରିଥିବ ! ବାଃ" ରଘୁନାଥ ଟିକିଏ ବ୍ୟଙ୍ଗ କରି କହିଲା ।

"ମୁଁ ଫଗୁଲାଲକୁ ଜାଣେ, ପ୍ରୁଫରିଡ଼ରକୁ ବି ।" ପାଣ୍ଡେ ଜୋରଦେଲା ତା' ଉତ୍ତରରେ । ହାରାହାରି ସପ୍ତାହକ ଭିତରେ ଫଗୁଲାଲର ମିଜାଜ ଟିକେ ଥଣ୍ଡା ପଡ଼ିଗଲା । ଜଣାଗଲା ଯେ ଗୋପାଳଚନ୍ଦ୍ର ପାଇଁ ଦୁଃଖିତ ଏବଂ ଏବେ ଯଦି ସେ ଆସି କ୍ଷମା ମାଗେ ତାହାହେଲେ ସେ ତାକୁ ପୁଣି ପୂର୍ବପଦରେ ନିଯୁକ୍ତି ଦେବେ ।

କ୍ଷମା ମାଗିବା କଥାଟାକୁ ପାଣ୍ଡେ ଗ୍ରହଣ କରି ପାରିଲା ନାହିଁ । ସେ ରଘୁନାଥକୁ କହିଲା "ଏକଥା ଠିକ୍ ନୁହେଁ । ଇଏ ତାର ଦୁର୍ବଳତା ଲାଗି ତା' ଉପରେ ଅନୁଚିତ ପ୍ରଭାବ ପକାଇବା କଥା ।"

—"ଏଥିରେ ଭୁଲ ବା ଅନୌଚିତ୍ୟ କାହିଁ ? ଖାଲି ମୋର ଭୁଲ ହୋଇଗଲା, କ୍ଷମା କରି ଦିଅନ୍ତୁ କହିଦେଲେ ତାʼର କʼଣଟା ବା ଅପମାନ ହୋଇ ଯାଉଛି !"

"ସେ ଗୋଟାଏ ସାଧାରଣ ପ୍ରୁଫ୍‌ରିଡ଼ର୍ ହେଲେବି ଗୋଟାଏ ସ୍ନାବ୍‌ର ଅହଂକାରକୁ ସନ୍ତୁଷ୍ଟ କରିବା ପାଇଁ କାହିଁକି ନିଜକୁ ଦୋଷୀ କରି ଦେଖାଇବ ? ତା ଅପେକ୍ଷା ଚାକିରି ଚାଲିଯିବା ବରଂ ଭଲ ।" ପାଣ୍ଡେର ରାଗ ବଢ଼ି ଚାଲିଥିଲା, ତା ମନ ଗୋପାଳଚନ୍ଦ୍ରର ଆତ୍ମସମ୍ମାନ ରକ୍ଷା କରିବାକୁ ସ୍ଥିର ହୋଇ ଚାଲିଥିଲା ।

ରଘୁନାଥ ନରମି ଗଲା । "ତୁମେ ତୁମ ଆଦର୍ଶବାଦ ପ୍ରତି କଥାରେ ଆଣି ଧରି ବସ ନାହିଁ । ତୁମେତ ମାନୁଛ ଯେ ଏହା ଚାକିରିର କଥା । ତେଣୁ ଏଥିରେ ମାନ-ଅପମାନର କଥା ଉଠୁନାହିଁ । ଚାକିରିରୁ ବାହାର କରିଦେଲାବେଳେ କ୍ଷମା ନମାଗିବାଟା ନିଛକ ଭାବପ୍ରବଣତା ମାତ୍ର !"

ପାଣ୍ଡେକୁ ଏ ଯୁକ୍ତି ଭଲ ଲାଗିଲା ନାହିଁ । ଆଉଥର ବହୁତ ଭାବିଚିନ୍ତି ସେ ରଘୁନାଥକୁ ଗୋଟାଏ ପ୍ରସ୍ତାବ ଦେଲା ଯେ "ଯଦି ଆମେ କେତେଜଣ ଅଫିସର ସଂଚାଳକଙ୍କୁ ଭେଟି ଗୋପାଳଚନ୍ଦ୍ର ପାଇଁ ସୁପାରିଶ କରିବା ତାହେଲେ କʼଣ ଉଚିତ ହେବ ନାହିଁ" ?

ପ୍ରଥମେ ରଘୁନାଥ ଏକମତ ହେଲା ନାହିଁ କିନ୍ତୁ ଟିକିଏ ବେଶୀ ଜୋର ଦେଇ କହିବା ଫଳରେ ରାଜି ହୋଇଗଲା । ଏଇମିତି ପାଣ୍ଡେ ତାʼର ଆଉ ଜଣେ ସାଙ୍ଗ ଶିବନାଥକୁ ରାଜି କରାଇଲା ।

ସଂଚାଳକଙ୍କୁ ଭେଟିବା ପୂର୍ବରୁ ଥରେ ସେ ନିଜକୁ ସାନ୍ତ୍ୱନା ଦେଲା ଯେ ତାକୁ ସଂଦେହ କରିବାର ଏଠି ଟିକେ କାରଣ ନାହିଁ । ଏବଂ ସେ ଗୋପାଳଚନ୍ଦ୍ର ପାଇଁ କହି ପାରିବେ ।

ସଂଚାଳକଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଚାʼପିଆ ବେଳଟାଇ ଉତ୍କୃଷ୍ଟ । ତିନିଜଣଯାକ ସ୍ଥିର କଲେ ଯେ ଆଜି ସେମାନେ ତାଙ୍କ ସହିତ କଥାବାର୍ତ୍ତା କରି ସାରିଲା ପରେ ଚାʼ ପିଇବେ । ଖୁବ୍ ବେଶୀ ହେଲେ ଦଶ ମିନିଟ ଡେରି ହେବ ।

"କହନ୍ତୁ କʼଣ ହେଲା ?" ସଂଚାଳକ ସେମାନଙ୍କୁ ଏକାସାଙ୍ଗରେ ତାଙ୍କ ରୁମକୁ ଆସିବାର ଦେଖି ପଚାରିଲେ ।

"ସାର ! ଆପଣଙ୍କୁ ଗୋଟାଏ ନିବେଦନ କରିବୁ" ପାଣ୍ଡେ କଥାଆରମ୍ଭ କଲା ।
"କଥା କʼଣ ?"

ସଂଗ୍ରାଳକଙ୍କର ଅହଂମନ୍ୟଭାବ ଦେଖି ପାଣ୍ଡେଙ୍କୁ ବୋଧ ହେଲା ଯେ ସେମାନେ ଭାବିକରି ଆସିଥିବା କଥା କହିଲେ କାମ କରିବ ନାହିଁ ।

"ହାଉ, ଗୋପାଳଚନ୍ଦ୍ରଙ୍କୁ କ୍ଷମା କରି ଦିଅନ୍ତୁ ! ବିଚରା ଗରିବ ଲୋକ । ଯଦି ତା ଚାକିରି ଚାଲିଯାଏ ତାହାହେଲେ ବିଚରା ବଡ ଅସୁବିଧାରେ ପଡ଼ିବ ।" ସେ କହୁଥିବା ଅସନ୍ତୋଷ ଅନୁଭବ କଲା ଏବଂ ସେହି କ୍ଷଣରେ ସଂଗ୍ରାଳକର ପ୍ରଭୁତ୍ୱ ଏବଂ କ୍ଷମା ଦାନ ଶକ୍ତି ଉପରେ କ୍ଷୁବ୍ଧ ହେଲା ।

—"ତାକୁ ମୋ ପାଖକୁ ପଠାଇ ଦେବେ । ଦେଖିବା । ମୁଁ କାହାରି କାହାରି କ୍ଷତି କରିବା ଚାହେଁନା" ।" ସଂଗ୍ରାଳକ କହିଲେ ।

ପାଣ୍ଡେଙ୍କୁ ତାଙ୍କ ସ୍ୱରରେ ଅହଂକାରର ଧ୍ୱନି ଶୁଣାଗଲା ଏବଂ ସଂଗ୍ରାଳକଙ୍କ ପ୍ରତି ତା'ର ଘୃଣା ହେଲା । ମାତ୍ର ରଘୁନାଥ ଏହି ସମୟରେ କହିଲା "ଆଶା ଆପଣ ସହାନୁଭୂତିର ସହିତ କଥାଟା ଟିକିଏ ବିଚାର କରିବେ ।"

ପାଣ୍ଡେଙ୍କୁ ବୋଧ ହେଲା ରଘୁନାଥ କେବଳ ତା କଥା ରଖିବା ପାଇଁ ଏଇ କଥା କେଇପଦ କହିଲା, ଗୋପାଳଚନ୍ଦ୍ର ପ୍ରତି ସହାନୁଭୂତି ପ୍ରକାଶ କରିବା ପାଇଁ ନୁହେଁ । ବିପନ୍ନ ଗୋପାଳଚନ୍ଦ୍ର ପ୍ରତି ସହାନୁଭୂତି ନାହିଁ ବୋଲି ସେ ଟିକିଏ ଦୁଃଖିତ ହେଲା ।

"ମୁଁ ତା'ର କିଛି କ୍ଷତି କରିବି ନାହିଁ, ତାକୁ ମୋ ପାଖକୁ ପଠେଇ ଦେବ ।" ସଂଗ୍ରାଳକ କିଛିଟା ନରମ ଭାବରେ କହିଲେ ।

କୋଠରୀରୁ ବାହାରୁ ବାହାରୁ ପାଣ୍ଡେ ବୋଧକଲା ଯେ ସୁପାରିସ କରିବା ଦ୍ୱାରା ସେମିତି କିଛି ଲାଭ ହେଲା ନାହିଁ । ସଂଗ୍ରାଳକ ଗୋପାଳଚନ୍ଦ୍ରଠାରୁ କ୍ଷମା ପ୍ରାର୍ଥନା ଦାବୀ କରୁଛି ଏବଂ ଏହାଛଡ଼ା ଆଉ କେଉଁଥିରେ ମାନିବ ନାହିଁ । ସେ ଯେ ସଂଗ୍ରାଳକକୁ ଗୋପାଳଚନ୍ଦ୍ରଙ୍କୁ କ୍ଷମା କରିଦେବା ପାଇଁ କହିବାକୁ ଆସିଥିଲା ବୋଲି ଭାବି ମନକୁମନ ଟିକେ ଲଜ୍ଜିତ ହେଲା । ସେ ବୋଧ କଲା ଯେ ରଘୁନାଥ ତା'ର କଥା ଶୁଣି ମନେ ମନେ ହସିଥିବ ।

ଅପରାହ୍ନରେ ଶୁଣିଲା ଯେ ଗୋପାଳଚନ୍ଦ୍ର ସଂଗ୍ରାଳକଙ୍କୁ ଦେଖା କରିବା ପାଇଁ ସାଫ୍ ସାଫ୍ ମନା କରି ଦେଇଛି । ପାଣ୍ଡେ ପୁଣି ଚିନ୍ତିତ ହୋଇ ପଡ଼ିଲା ଯଦିଓ ସେ ଗୋପାଳର ଏ ଜିଦ୍ଧି ଉପରେ ଖୁସି ହେଲା ।

ତା' ପରଦିନ ଯାଏଁ ଅବସ୍ଥା ଅପରିବର୍ତ୍ତିତ ରହିଲା । ପାଣ୍ଡେ ଆଖିରେ ସଂଗ୍ରାଳକ ଦିନକୁ ଦିନ ଛୋଟ ହୋଇ ଯାଉଥିଲା ଏବଂ ଗୋପାଳଚନ୍ଦ୍ର ମହାନ୍ ହୋଇ ଉଠୁଥିଲା କିନ୍ତୁ ଏବେ ତାକୁ ଚିନ୍ତିତ ହେବା ଦେଖି ରଘୁନାଥ କହିଲା—"ଏବେ ତୁମେ ଏକଥା

ଉପରେ ଚିନ୍ତା ଆଉ କର ନାହିଁ । ଯଦି ସେ ପ୍ରୁଫ୍‌ରିଡ଼ରର ଏତେ ଗର୍ବ ତାହାହେଲେ ତୁମେ କାହିଁକି ଏତେ ଚିନ୍ତା କରୁଛ ? ତାଛଡ଼ା ତୁମେ ଆମେ ତା' ପାଇଁ କ'ଣଟା ବା ନ କରିଛେ ?"

"ତା'ର ଗର୍ବ ରହୁଛି ତ ତୁମକୁ କାହିଁକି ଖରାପ ଲାଗୁଛି ? ଏମାନଙ୍କ ଭିତରେ ତା ଭଳିଆ ସାହସ କରିବା ପାଇଁ କେଇଜଣ ଅଛନ୍ତି ? ତା'ଛଡ଼ା ତୁମେ ଆମେ ବା କଣଟା ତା ପାଇଁ କରିଛେ ?' ପାଣ୍ଡେ ଚିଡ଼ିଯାଇ କହିଲା ।

କଥାଟାକୁ ମଜାକରି ଉଡ଼େଇ ଦେବାକୁ ରଘୁନାଥ କହିଲା "ହେଲା ବାବୁ, ମୁଁ ତା'ର ଲୁହାପଣିଆ ମାନି ନେଉଛି । କିନ୍ତୁ ଚ' ଟା'ଭ ଭଲ ମଗାଅ ।"

ପାଞ୍ଚ, ଛ' ଦିନ ପରେ ମନେହେଲା ଯେ ଏଥର ଗୋପାଳଚନ୍ଦ୍ରଙ୍କୁ ଚାକିରୀରୁ ବାହାର କରି ଦିଆଯିବ । ସଂଚାଳକ ସହିତ ଦେଖା କରିବା ପାଇଁ ସେ କୌଣସିମତେ ପ୍ରସ୍ତୁତ ନ ଥିଲା । ଚାକିରୀ ଚାଲିଗଲା ପରେ ଗୋପାଳଚନ୍ଦ୍ରର ଦୁର୍ଦ୍ଦଶା କଥା କଳ୍ପନା କରି କରି ପାଣ୍ଡେର ମାନସିକ କ୍ଲେଶ ଅସହନୀୟ ହୋଇ ପଡ଼ିଲା ।

ଏବେ ଗୋଟିଏ ମାତ୍ର ରାସ୍ତାରେ ଗୋପାଳଚନ୍ଦ୍ରଙ୍କୁ ରକ୍ଷା କରାଯାଇ ପାରେ । ଯଦି ପାଣ୍ଡେ ତା' ନିଜ ଦୋଷ ମାନି ନେବ ତାହେଲେ ଯାଇଁ ସେଇଁକଥା, କିନ୍ତୁ ଏହା ଫଳରେ ସଂଚାଳକର କି ପ୍ରତିକ୍ରିୟା ହେବ ତା ଉପରେ ପାଣ୍ଡେର ସନ୍ଦେହ ହେଲା ।

ବି ଦିନଯାଏ ସେ କୌଣସି ସିଦ୍ଧାନ୍ତ କରି ପାରିଲା ନାହିଁ ମାତ୍ର ଶେଷରେ ସେ ଭାବିଲା ଯେ ମାମୁଲି ପ୍ରୁଫ୍‌ରିଡ଼ରର ଦାନାପାଣି ରକ୍ଷା ପାଇଁ ଯଦି ସେ ଏପରି ଅସାଧାରଣ କାମ କରିପାରେ ତାହେଲେ ସଂଚାଳକ ପରି ଖରାପ ଲୋକ ମଧ୍ୟ ତାକୁ ଗାଳି ଦେବାପାଇଁ ସାହସ କରିବ ନାହିଁ । ତାଛଡ଼ା କିଛି ମାନବିକତା ତା ପାଖରେ ଥିବ । କିନ୍ତୁ ସେ ଏତେଟା ଭଲଲୋକ ନୁହେଁ ଯେ, ପାଣ୍ଡେର ନୈତିକ ସାହସକୁ ପ୍ରଶଂସା କରିବ ।

ପୁଣି ଆଉ ଗୋଟାଏ କଥା । ପାଣ୍ଡେ ନିଜ ଭୁଲକୁ ସ୍ୱୀକାର କରି ନେବା ସତ୍ତ୍ୱେ ଯଦି ସଂଚାଳକ ଗୋପାଳଚନ୍ଦ୍ରଙ୍କୁ କ୍ଷମା ମାଗିବା ପାଇଁ ବାଧ୍ୟ କରେ ତାହେଲେ ତ କିଛି ଲାଭ ନାହିଁ । ଅନେକ କିଛି ସମସ୍ତ ଭାବିଲା ପରେ ସେ ଏ ସିଦ୍ଧାନ୍ତରେ ପହଞ୍ଚିଲା ଯେ ସେ ତା ନିଜ ଦୋଷ ମାନି ନେଲା ପରେ ମଧ୍ୟ ସଂଚାଳକ ଯଦି ଗୋପାଳଚନ୍ଦ୍ରଙ୍କୁ ଚାକିରୀରେ ନ ରଖେ ତାହାହେଲେ ସେ ଜଣେ ଲୋକଙ୍କ ଆଖିରେ ତଳକୁ ଖସିଯିବ ।

ତା'ର ଦ୍ୱିତୀୟ ଆଶଂକା ହେଲା ଯେ ପରେ କେତେକ ଲୋକ ଈର୍ଷାବଶତଃ ବା ଶତ୍ରୁତା ହେତୁ ପାଣ୍ଡେର କ୍ଷଣିକ ବିଶ୍ୱାସଘାତକତାକୁ ଅଧିକ ମହତ୍ତ୍ୱ ଦେବେ ଏବଂ ତା'ର ସାଧୁତା ଏବଂ ସାହସକୁ ଗୌଣ କରି ଥୋଇବେ । କାରଣ କୌଣସି ଲୋକର ଭଲ ଗୁଣତକ ଲୋକମାନେ ଜଲଦି ଭୁଲି ଯାଆନ୍ତି ଏବଂ ତାର ଦୋଷ ପ୍ରତି ଇଙ୍ଗିତ କରନ୍ତି ।

ଏହି ଅବସ୍ଥାରେ ସେ ଅଫିସରୁ ଘରକୁ ଫେରିଲା ବାଟରେ ଗୋଟିଏ ଶୋଭାଯାତ୍ରା ଦେଖିଲା । ତୃତୀୟ ଏବଂ ଚତୁର୍ଥଶ୍ରେଣୀ ସରକାରୀ କର୍ମଚାରୀମାନେ ମହଙ୍ଗା ଭତ୍ତା ବଢ଼ାଇବା ପାଇଁ ଦାବୀ କରୁଥିଲେ । ଏହି ଲୋକମାନଙ୍କ ପ୍ରତି ସବୁବେଳେ ତା'ର ସହାନୁଭୂତି ରହି ଆସିଛି । ଗତବର୍ଷ ତଳେ ଥରେ ମହଙ୍ଗା ଭତ୍ତା ବଢ଼ାଇ ଦିଆ ଯାଇଥିଲା ସେତେବେଳେ ଏହି କର୍ମଚାରୀମାନଙ୍କର ମୋଟେ ପାଞ୍ଚ ଟଙ୍କାରୁ ୧୫ ଟଙ୍କା ଲାଭ ହୋଇଥିଲା ଅଥଚ ମୋଟା ଆକାର ଦରମା ପାଇଥିବା ଲୋକଙ୍କୁ ଅଧିକା ପଚିଶ ଟଙ୍କା ଲାଭ ମିଳିଥିଲା । ଏହି କଥା ନେଇ ସେ ସାଙ୍ଗମାନଙ୍କୁ ତା'ର ଅସନ୍ତୋଷ ପ୍ରକାଶ କରିଥିଲା ଯେ ତା'ର ଏହି ବର୍ଦ୍ଧିତ ଦରମା ଯଦି ନିମ୍ନ ଶ୍ରେଣୀର ଲୋକଙ୍କୁ ସେମାନଙ୍କ ଦାବୀ ଅନୁସାରେ ଦିଆଯାଇପାରେ ତାହେଲେ ସେ ଦେଇଦେବା ପାଇଁ ପ୍ରସ୍ତୁତ ଅଛି ।

ଆଜିର ଶୋଭାଯାତ୍ରା ଦେଖି ତା'ର ଏହି ଲୋକମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ ପାଇଲା । ତତ୍ସହିତ ଏକ ବିଷାଦ ମଧ୍ୟ ଅନୁଭବ କଲା । ଏଥରକ ସେ ଏହି ଲୋକ-ମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ ପାଇଲା । ତତ୍ସହିତ ଏକ ବିଷାଦ ମଧ୍ୟ ଅନୁଭବ କଲା । ଏଥରକ ସେ ଏହି ଲୋକମାନଙ୍କର ଦୁର୍ଦ୍ଦଶା ଗଭୀର ଅନୁଭବ କଲା । ଏମାନଙ୍କ ଲୁଗା ପଟାରେ କେତେ ଖରାପ । ଏମିତିଆ ଲୁଗା ପିନ୍ଧି ଘରୁ ବାହାରିବା ବାହାରିବାର କଳ୍ପନା ସେ କରି ପାରିଲା ନାହିଁ ।

ଏହିଭଳିଆ ମୁହୂର୍ତ୍ତରେ ଗୋପାଳଚନ୍ଦ୍ରର କଥା ତା'ର ମନେ ପଡ଼ିଲା । ଯଦି ତା ଚାକିରି ଖଣ୍ଡିକ ଚାଲିଯାଏ ତା'ର ଅବସ୍ଥା କ'ଣ ହେବ ଭାବି ତାର ବିଷାଦ ବଢ଼ି ଚାଲିଲା । ତତ୍କ୍ଷଣାତ୍ ସେ ସ୍ଥିର କଲା ଯେ ସେ ଗୋପାଳଚନ୍ଦ୍ରକୁ ଷ୍ଟେଜରେସ ଶିକାର୍ ହେବନାହିଁ ଏବଂ ନିଜର ଦୋଷ ସ୍ୱୀକାର କରିନେବ ।

କିନ୍ତୁ ସେ ନିଜ ଦୋଷ କାହାରି ସ୍ୱୀକାର କରିବ ? ସଂଚାଳକ ପାଖରେ ନା ଗୋପାଳଚନ୍ଦ୍ର ପାଖରେ ? ଯଦ୍ୟପି ସେ ପ୍ରଥମେ ଭାବିଥିଲା ଯେ ତାର ଏ ସ୍ୱୀକାରୋକ୍ତି ଏବଂ ନୈତିକ ସାହସ ନିକଟରେ ସଂଚାଳକ ନିଷ୍ପ୍ରଭ ହୋଇଯିବ ଏବଂ ତା ସହିତ ଖରାପ ବ୍ୟବହାର ମୋଟେ କରିବ ନାହିଁ ତଥାପି ଏକଥା ଉପରେ ତା'ର ବର୍ତ୍ତମାନ ସଂଦେହ ହେଲା । ସର୍ବଦା ପାଶବିକତାର ରୋଗ ଭୋଗ କରୁଥିବା ରୁକ୍ଷ ସ୍ୱଭାବର ଏ ସଂଚାଳକ ଯିଏ ନିଜର ଉପରିସ୍ଥ କର୍ମଚାରୀମାନଙ୍କୁ ଖୁସାମତ କରେ ଏବଂ ଗୋପାଳଚନ୍ଦ୍ର ପ୍ରତି ଦୃଷ୍ଟି ଦିଏ ନାହିଁ, ତାର ଏ ସାଧୁତାର ଆଦର କରିବ ବୋଲି ବିଶ୍ୱାସ କରି ପାରିଲା ନାହିଁ । ହୁଏତ ସେ ଏଥିପାଇଁ ତା' ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବ । ତା'ର ସ୍ୱଭାବ ସହିତ ପରିଚିତ ଥିବା ପାଇଁ ଭାବିଲା ଯେ ସେ ହୁଏତ ତାକୁ ଯାହା ଯାହା କହୁଛି ତାହା ଲେଖିକରି ଦିଅ ବୋଲି କହିପାରେ । ଏହିକଥା ଚିନ୍ତାକରି ପାଇଁ ନର୍ଭସ ହୋଇଗଲା । ସେ ଚାହୁଁ ନଥିଲା ଏହାଦ୍ୱାରା ନିଜର ସମ୍ମାନ ହାନି କରିବାକୁବା ନିଜର ରେକର୍ଡ ଖରାପ କରିବାକୁ । ତା ମନରେ ସଂଘ-

ନାନାଙ୍କ ଘରେ ସାକ୍ଷାତ ସମୟରେ ତାଙ୍କର ସମ୍ମାନପୂର୍ଣ୍ଣ ମୁଖମୁଦ୍ରା ଓ ତାଙ୍କର ବ୍ୟବହାର, ବୋଧ ଏବଂ ଉଦାରତାପୂର୍ଣ୍ଣ ଚେହେରା ଝଲସି ଉଠିଲା । କ୍ଷଣକେ ପାଇଁ ସେ ବିଚଳିତ ହୋଇ ପଡ଼ିଲା କିନ୍ତୁ ସଙ୍ଗେ ସଙ୍ଗେ ତା ମନରେ ସଂଚାଳକ ପ୍ରତି ଜାଗି ଉଠିଲା ଘୃଣା । ଘମଣ୍ଡୀ ଅହଂକାରୀ, ଆତ୍ମସମ୍ମାନ-ହୀନ ତୁଚ୍ଛ ନୀଚ ପ୍ରକୃତିର ଲୋକଟାକୁ ଭାବିଲା ସେ ମାତ୍ର ଏବେ ପାଇଁ ଦେଖିଥିବା ସଂଚାଳକର ଡ୍ରଇଙ୍ଗ୍ ରୁମ୍ ଓ ଡାଇନିଙ୍ଗରୁମକୁ ସ୍ମରଣ କଲା । ସେଠାର ଦାମୀକା ସୋଫାସେଟ୍, ରେଡ଼ିଓଗ୍ରାମ, ରେଫ୍ରିଜରେଟର ଆଦି ସଂଚାଳକର ଦମ୍ଭ ଏବଂ ଆତ୍ମଶ୍ଲାଘାର ପ୍ରତୀକ ଏବଂ ହୁଏତ ତା'ର ଭ୍ରଷ୍ଟାଚାରର ସୂଚକ । ଏହାର ବିପରୀତରେ ଗୋପାଳଚନ୍ଦ୍ରଙ୍କ ସାରଲ୍ୟ ଏବଂ ସ୍ୱାଭିମାନ ଅତ୍ୟନ୍ତ ମର୍ମସ୍ପର୍ଶୀ । ଅବଶ୍ୟ ଗୋପାଳଚନ୍ଦ୍ରଙ୍କ ସାରଲ୍ୟ ସେ କେବେ ଓ କେଉଁଠି ଦେଖିଥିଲା ବୋଲି ସ୍ପଷ୍ଟ କହିପାରିବ ନାହିଁ । ଗୋପାଳଚନ୍ଦ୍ରଙ୍କ ଏବଂ ତାର ସମ୍ପର୍କ ମାତ୍ର ପ୍ରୁଫ୍ ରିଡର ଏବଂ ବାବୁଗୀରି ଅଧିକାରୀର ସମ୍ପର୍କ ମାତ୍ର । ରେଡ଼ିଓ ଗ୍ରାମ ଏବଂ ରେଫ୍ରିଜରେଟରର ମାଲିକ ସଂଚାଳକର ଜନ୍ମ ସମ୍ପର୍କ ତା'ର ଯେଉଁଭଳି ବିଶ୍ୱାସ ଥିଲା ଠିକ୍ ସେହିଭଳି ବିଶ୍ୱାସ ଥିଲା ଗୋପାଳଚନ୍ଦ୍ରଙ୍କ ସାରଲ୍ୟ ସମ୍ପର୍କରେ ।

ପାଣ୍ଡେ ପ୍ରୁଫ୍ ରିଡରର ଘର କଳ୍ପନା କଲା । ଦୁଇ ତିନୋଟା ପୁରୁଣା ଚେୟାର, ଗୋଟାଏ ଭଙ୍ଗା ଟେବୁଲ, କିଛି ସାଧାରଣ କ୍ୟାଲେଣ୍ଡର, ଗୋଟାଏ ପୁରୁଣା ଅଲାର୍ମ ଘଣ୍ଟା, କେଁ କେଁ କରୁଥିବା ପୁରୁଣା ଖଟଟାଏ, ଗୋଟଏ ଦଉଡ଼ିରେ ଟଙ୍ଗା ହୋଇଥିବା କିଛି ମଇଳା ଓ କେଇଟା ସଫା ଲୁଗା, ତିନି ଚାରିଟା ହିନ୍ଦୀ ମ୍ୟାଗାଜିନ ଏବଂ ଖଣ୍ଡେ ଦୁଇଖଣ୍ଡ ହିନ୍ଦୀ ବହି । ଏଇ ସେଟିଙ୍ଗ୍ ରେ ବସିଥିବା କାଶ ଘାଣ୍ଟି ପଡ଼ିଥିବା ଗୋପାଳଚନ୍ଦ୍ର ଏପ୍ରକାର ଲୋକ ପାଖରେ ନିଜ ଦୋଷ ସ୍ୱୀକାର କରିବା ଖାଲି ନିରାପଦ ନୁହେଁ ବଡ଼ପଣର ନମୁନା ମଧ୍ୟ ।

ପୁଣି ଗୋଟାଏ ଖିଆଲ ତା ମୁଣ୍ଡରେ ଚଢ଼ିଲା । ସମ୍ଭବତଃ ତା'ର ଏ କନ୍ଫେସନକୁ ଶୁଣି ଗୋପାଳଚନ୍ଦ୍ର ରାଗିଯିବ ଏବଂ କଡ଼ା କଡ଼ା କଥା କହିବାକୁ ଲାଗିବ । ତା'ର ଆଶା ଥିଲା ଯେ ପୂରା କଥା ଶୁଣିସାରି ଏବଂ ଅଶ୍ରୁ ମନରେ ଚିନ୍ତାକରି ସାରିଲା ପରେ ସେ ନିଶ୍ଚୟ ତା'ର ଏ ଉଦାରତା ଏବଂ ନମ୍ରତା ବୁଝି ପାରିବ । ଏତଦ୍‌ବ୍ୟତୀତ ସେ ଏଇ କଥାକୁ ନିଶ୍ଚୟ ଅନୁଭବ କରିବ ଏବଂ ଲକ୍ଷ୍ୟ କରିବ ଯେ ଦୋଷ ସ୍ୱୀକାର କରୁଥିବା ବ୍ୟକ୍ତି ଜଣେ ପ୍ରଥମ ଶ୍ରେଣୀର ଅଧିକାରୀ ଏବଂ ନିଜେ ନିଜେ ଜଣେ ତୃତୀୟ ଶ୍ରେଣୀର ଆସାମୀ ।

କିନ୍ତୁ ଆଉ ଗୋଟିଏ ଆଶଙ୍କା ହେଲା ଯେ ଗୋପାଳଚନ୍ଦ୍ର ପାଖରେ ନିଜର ଦୋଷ ସ୍ୱୀକାର କଲାପରେ ମଧ୍ୟ ତାଙ୍କୁ ସଂଚାଳକଙ୍କ ପାଖକୁ ଯିବାକୁ ପଡ଼ିପାରେ ଏବଂ କିଏ ଜାଣେ ସେ ସେତେବେଳେ କଣ କରିବେ ହୁଏତ ତାଙ୍କୁ ସବୁ ଘଟଣା ଲେଖିକରି ଦେବାକୁ କହି ପାରନ୍ତି ବା କୌଣସି ବିପଦ ସୃଷ୍ଟି କରି ପାରନ୍ତି ।

ଯେ କୌଣସି ଅବସ୍ଥା ସେ ସଫଲକଙ୍କୁ ଏଡେଇବା ପାଇଁ ବୃନ୍ଦୁଁ ଥିଲା ମାତ୍ର କ୍ଷଣକ ପାଇଁ ସେ ନକୁଗ୍ରାହିତ ହୋଇ ପଡ଼ିଲା ।

ଜଣେ ପ୍ରଥମ ଶ୍ରେଣୀର ଅଧିକାରୀ, ଜଣେ ନୃତୀୟ ଶ୍ରେଣୀର କର୍ମଚାରୀର ଘରକୁ ଯାଇ କ୍ଷମା ପ୍ରାର୍ଥନା କରିବା ଏକ ଅସାଧାରଣ ନୈତିକ ସାହସପୂର୍ଣ୍ଣ କଥା । ପାଣ୍ଡେ ପକ୍ଷରେ ଏବଂ ବିଧ ଅସାଧାରଣ କାର୍ଯ୍ୟ କରିବାର ପ୍ରଲୋଭନ ଅଦମ୍ୟ ହୋଇ ଉଠିଲା ।

ସ୍ୱୀକାରୋକ୍ତି ନମିତ୍ତ ନିର୍ଦ୍ଧାରିତ ଦିନ ଆସିଗଲା । ସକାଳୁ ଉଠି ପାଣ୍ଡେ ନୂଆ ବ୍ଲେଡ୍‌ରେ କ୍ଲିନସେଭ୍ କଲା; ଅମଲେଟ୍ ଏବଂ ଦହର ଟୋଷ୍ଟର ଜଲଖିଆ କଲା, ନିଜର ସବୁଠାରୁ ବଢ଼ିଆ ସୁଟ୍ ପିନ୍ଧିଲା । ଦେହରେ କିମ ପାଉଡ଼ର ମାଖି, ରୁମାଲରେ ସେଣ୍ଟ ପକେଇ, ନାଇଲନ ମୋଜା ଓ ଚକ୍‌ଚକ୍ ଜୋତା ପିନ୍ଧି ଦର୍ପଣରେ ଥରେ ଆଗ ନିଜକୁ ଦେଖିନେଲା । ତା'ର ଏ ସାଜସଜ୍ଜାରେ ଗୋଟାଏ କମ୍ ଯେ ଭେଦ କରିପାରେ—ଟାଇ ଏବଂ ହ୍ୟାଟ୍‌ର । କିନ୍ତୁ ଏଥିରେ ପାଣ୍ଡେ ନିଜେ କିଛି ଖରାପ ଭାବିଲା ନାହିଁ । କାରଣ ଗୋଟାଏ ପକ୍ଷରେ ଟାଇ ଏବଂ ହ୍ୟାଟ୍ କିଛି ବ୍ୟକ୍ତିତ୍ୱ ବଢ଼ାଇବା ସଙ୍ଗେ ସଙ୍ଗେ ଅନ୍ୟ ପକ୍ଷରେ ତା' ପ୍ରୋଗ୍ରେସିଭ୍ କ୍ୟାରେକ୍ଟରରେ କିଛି "ଲିକ୍" କରିହୋଇଥାନ୍ତା । ତା ଦୃଷ୍ଟିରେ ଟାଇ ଏବଂ ହ୍ୟାଟ୍ ସ୍ନାବେରି ଏବଂ ଦମନର ପ୍ରତୀକ ଥିଲା । ଏବଂ ଯେତେ ପ୍ରଲୋଭନ ଦେଖାଇଲେ ମଧ୍ୟ ସେ ଟାଇ ବିବଂ ହ୍ୟାଟ ପିନ୍ଧି ପାରୁ ନଥିଲା । କେତେ ଦିନ ତଳେ ଯେତେବେଳେ ସେ ଲୋକସେବା ଆୟୋଗରେ ଗୋଟାଏ ଇଣ୍ଟରଭ୍ୟୁକୁ ଯାଇ-ଥିଲା ସେତେବେଳେ ତା' ବଡ଼ଭାଇ ଏବଂ କେତେଜଣ ସାଙ୍ଗ ଯେ ଅନ୍ତତଃ ଟାଇଟାକୁ ବାନ୍ଧିବା ପାଇଁ କହୁଥିଲେ କିନ୍ତୁ ସେ ଏହି ଆଗ୍ରହକୁ ଦୃଢ଼ତାର ସହିତ ଅସ୍ୱୀକାର କରି-ଥିଲା ଯେ ଏ ପ୍ରକାର ଇଣ୍ଟରଭ୍ୟୁରେ "ଆପିଅରାନ୍‌ସ" ବେଶ୍ କାଉଣ୍ଟ୍ କରିପାଏ ଏବଂ କେବଳ ଗ୍ରେଲିଆ ଗ୍ରେଟିଆ କଥା ଉପରେ ବଗ୍ରସିବା ନଯିବା ନିର୍ଭର କରେ ।

ସେ ଗୋଟାଏ ଲାଇଫ୍ ମ୍ୟାଗାଜିନ ହାତରେ ଧରିଲା ଏବଂ ଚାକରକୁ ଗୋଟାଏ ଟ୍ୟାକସି ଡାକିବା ପାଇଁ କହିଲା । ଚାକରକୁ ଦେଖି ଭାବିଲା ଯେ ତା' ଲୁଗାପଟା ଚିରି ଆସିଲାଣି । ଆର ପହିଲାକୁ ତା ପାଇଁ ହଲେ ହାଓ୍ୱାନ ଏବଂ ହଲେ ଫୁଲପ୍ୟାଣ୍ଟ, ନିଶ୍ଚୟ ତିଆରି କରିଦେବ ।

ଏଇ ସମୟରେ ସେ ଅନୁଭବ କରୁଥିଲା ଏକ ବିଶେଷ ଧରଣର ଆନନ୍ଦ ।

ବାଟସାରା ସେ ଭାବି ଚାଲିଥିଲା ନିଜର ସ୍ୱୀକାରୋକ୍ତି ଏବଂ ତତ୍ସନିତ ପ୍ରତିକ୍ରିୟାମାନଙ୍କ ସମ୍ପର୍କରେ ।

"ମୁଁ ତ ଶୁଣିକରି ଆଶ୍ଚର୍ଯ୍ୟ ହୋଇଗଲି । ଆଗତ ହଠାତ୍ ବିଶ୍ୱାସ କରି ପାରିଲି ନାହିଁ ।" ତା'ର ଜଣେ ସହକର୍ମୀ ତାକୁ ପ୍ରଶଂସା କରି କହୁଥିଲା ?

"ତୁମେ କ'ଣ କାଲି ଏମିତି ? ମାନୁଛ ଯେ ତୁମରଭୁଲ ହୋଇଥିଲା କିନ୍ତୁ ତାକୁ ମାନିନେଲେ କଣ ଫଳ ହେବ ସେ ବିଷୟରେ ତ ଅନ୍ତତଃ ଟିକିଏ ଭାବିବା ଉଚିତ ଥିଲା । ଅନ୍ୟ କୌଣସି ବାଟରେ ତ ତାକୁ ରକ୍ଷା କରାଯାଇ ପାରିଥା'ନ୍ତା । ଏଇ ଲୋକ ଯିଏ ଆଜି ତୁମର ପ୍ରଶଂସା କରୁଛନ୍ତି ସେଇ ଲୋକ କାଲି ତୁମର ଶତ୍ରୁ ହେଲେ ତୁମକୁ ଏଇ କଥା ଭୁଲିଯିବ । ଭାବପ୍ରବଣ ହୋଇ ତୁମେ ତୁମର ହେଡ଼ଟ ଖରାପ କରିଦେଲ ।" ରଘୁନାଥ ତା'ଙ୍କୁ କହୁଛି ।

କେଇଜଣ ସା'ହେବଙ୍କଠାରୁ କିଛି ଦୂରରେ ଠିଆହୋଇ କଥାବାର୍ତ୍ତା କରୁଛନ୍ତି । ସେ ସବୁ ଶୁଣି ପାରୁଛି ।

ଜଣେ କହୁଛି "ପାଣ୍ଡେ ସାହେବ କ ସଢୋଟ ! ଗୋପାଳଚନ୍ଦ୍ରଠୁ ନିଜ ଭୁଲ ମାଗିନେଲେ । ଭୁଲ କାହାର ହେଉନାହିଁ ? କିନ୍ତୁ ଜଣେ ଅଫିସରକୁ ଜଣେ ପ୍ରୁଫ୍ ରିଡରଠାରୁ କ୍ଷମା ମାଗିବା ଶୁଣିଛ ? ଆଉ ସେ ବି ତା' ଘରକୁ ଯାଇ ?"

ଆଉ ଜଣେ ପ୍ରାୟ ସେଇଭଳିଆ କଥା କିଛି କହୁଛି ।

ଢ ଘଣ୍ଟ ଜାଗାରେ ପଶୁଗଲା ପରେ ସେ ଗୋପାଳଚନ୍ଦ୍ରର ଘର ଖୋଜି ପାଇଲା । ବର୍ତ୍ତମାନ ନିଜ ଦୋଷ ସ୍ୱୀକାର କରିବା ନେଇ ଗୋପାଳଚନ୍ଦ୍ରର ପ୍ରତିକ୍ରିୟା ସମ୍ପର୍କରେ ଚିନ୍ତା କରିବାକୁ ଲାଗିଲା ।

"ନା ସାହେବ ! ଆପଣ ସେମିତି କହନ୍ତୁ ନାହିଁ । ଗୋପାଳଚନ୍ଦ୍ର ପ୍ରଶଂସା ଏବଂ କୃତଜ୍ଞତାର ଆବେଗରେ ତାଙ୍କୁ କହି ଚାଲିଛି । "ମୁଁ ବଡ଼ ଲଜ୍ଜିତ ଯେ ଆପଣଙ୍କୁ ଏତେ ଚିନ୍ତା ଏବଂ କଷ୍ଟ ଭୋଗ କରିବାକୁ ପଡ଼ିଲା । ମୋତେ ତ ସେଇ ଦିନଠାରୁ ଭଲରେ ଟିକିଏ ନିଦ ହୋଇନାହିଁ," ସେ ନିଜେ କହି ଚାଲିଛି ।

"ନା ଆଜ୍ଞା ଭୁଲତ ମୋ'ର ଯେ ମୁଁ ସଂଚାଳକ ସାହେବଙ୍କୁ କଡ଼ା କଡ଼ା ଜବାବ ଦେଇଦେଲି । ମୋର ନିରୁତ୍ତର ହେବା ଉଚିତ ଥିଲା ।" ପ୍ରୁଫ୍‌ରିଡର ଅଭିଭୂତ ହୋଇ ଉତ୍ତର ଦେଲା ।

"ମୁଁ ଲଜ୍ଜିତ," ସେ ପୁଣି କହୁଛି ।

ଗୋପାଳଚନ୍ଦ୍ର ଠିକ୍ ସେଇ ମୁଦ୍ରାରେ ଉତ୍ତର ଦେଲା—

"ନା ନା' ମୋର ଦୁଃଖ ଯେ ମୁଁ ସଂଚାଳକ ସାହେବଙ୍କୁ ରଗାଇ ଆପଣଙ୍କୁ ଏ ପ୍ରକାର ଖରାପ ଅବସ୍ଥାରେ ପକାଇଲି ।"

ଏଇ ବିହ୍ୱଳାବସ୍ଥାରେ ସେ କଳ୍ପନାରେ ବାସ୍ତବତା ପ୍ରତି ଭୁଲ ତ୍ରୁଟି ଖୋଜିଲା— ସତରେ ଗୋପାଳଚନ୍ଦ୍ର କେତେ ବଡ଼ିଆ ଲୋକ । ଭୁଲ ମୋ'ର କିନ୍ତୁ ସେ ନିଜେ ଲଜ୍ଜିତ ହେଉଛି ।

କବାଟରେ ଠକ୍ ଠକ୍ କରିବା ଆଗରୁ ସେ ନିଜର କାଲର ଠିକ୍ କରିନେଲା । ରୁମାଲକୁ କୋଟ ପକେଟରେ ଟିକିଏ ଦେଖେଇ କରି ରଖିଲା । ନିଜ ସୁଟ ଏବଂ ଜୋତା ଉପରେ ଆଖି ବୁଲେଇ ଆଣି ନିଜର ଖାଇପିଇ ଉଜ୍ଜଳଢାଉଳ ଚେହେରାଟା ଦେଖିନେଲା ମନେ ମନେ ।

"ଆପଣ," କବାଟ ଖୋଲୁ ଖୋଲୁ ଗୋପାଳଚନ୍ଦ୍ର କହିଲେ । କିନ୍ତୁ ତା' ଚେହେରାରେ ପାଣ୍ଡେ ଆଶା କରିଥିବା ଆଶ୍ଚର୍ଯ୍ୟ, ବିନୟ ଏବଂ କୃତଜ୍ଞତାର ମିଶ୍ରିତ ଭାବ ନଥିଲା । ପାଣ୍ଡେ ଭାବିଥିଲା ସେ ଜଣେ ପ୍ରଥମ ଶ୍ରେଣୀର ଅଧିକାରୀ, ଯେତେ ପ୍ରଗତିଶୀଳ ହୁଅନ୍ତୁ ନା କାହିଁକି, ଜଣେ ତୃତୀୟ ଶ୍ରେଣୀର କର୍ମଚାରୀ ଘରକୁ ଯିବା ଆଶ୍ଚର୍ଯ୍ୟଜନକ କଥା, ବିଶେଷତଃ ବିନା ନିମନ୍ତ୍ରଣରେ । ସେ ଗୋଟିଏ ଧରଣର ଧକ୍କା ଅନୁଭବ କଲା । ଏବଂ ପର ମୁହୂର୍ତ୍ତରେ ନିଜକୁ ସଂଯତ କରିନେଇ ବିନମ୍ର ଭାବରେ ନମସ୍କାର କଲା । ଅବଶ୍ୟ ଏଥିପାଇଁ ସେ ସାମାନ୍ୟ କଷ୍ଟ ଅନୁଭବ କଲା ।

ଭଦ୍ରତା ହିସାବରେ ପ୍ରଫେସରର ନମସ୍କାରର ଉତ୍ତର ଦେଲେ । ପୁଣି ଥରେ ନିରୀକ୍ଷଣ କଲା, ପାଣ୍ଡେ ତା' ଚେହେରାକୁ । ତା' ଆପିକାରେ ଗୋପାଳଚନ୍ଦ୍ରର କିଛି ଆବେଗ ଉତ୍ପନ୍ନ ହୋଇଥିବାର ଲକ୍ଷ୍ୟ କରି ପାରିଲା ନାହିଁ ବା ସେ କଳ୍ପନା କରିଥିବା ସାରଲ୍ୟ ବା ବିନମ୍ରତା ଦୃଷ୍ଟିଗୋଚର ହେଲା ନାହିଁ ।

"ଭିତରକୁ ଆସନ୍ତୁ," ଗୋପାଳଚନ୍ଦ୍ର ନିମନ୍ତ୍ରଣ କଲେ ଏବଂ ବୈଠକଖାନାର ଦୁଆର ଖୋଲିବା ପାଇଁ ଗୋଟାଏ କଡ଼କୁ ବୁଲିଗଲେ ।

କିଛିଟା ବୈଚିତ୍ର୍ୟ ଅନୁଭବ କରୁ କରୁ ବୈଠକଖାନାରେ ପାଣ୍ଡେ ପ୍ରବେଶ କରି ଆଶ୍ଚର୍ଯ୍ୟ ଚକିତ ହେଲା । ଇପ୍ସେକ୍ଟ ବେଶ ବଢ଼ିଆ ଡ୍ରଇଙ୍ଗ୍ ରୁମ୍ । ସୋଫାସେଟ୍, ରେଡ଼ିଓ, ସେଲ୍‌ଫରେ ବହି, ଚଟାଣ ଉପରେ ଦରି, ଦୁଆର ଝରକାରେ ପର୍ଦ୍ଦା । କିଛି ସାଜସଜାର ଜିନିଷ ।

ସୋଫା ଉପରେ ବସୁ ବସୁ ତା' ଦୃଷ୍ଟି ପଡ଼ିଲା 'କ୍ରାଇମ୍ ଆଣ୍ଡ ପନିଶ୍‌ମେଣ୍ଟ' ବହିଟା ଉପରେ । ନିଜର ଆଶ୍ଚର୍ଯ୍ୟକୁ ଲୁଚେଇ ନକଲି ସ୍ୱରରେ କହିଲା, "ଆପଣଙ୍କ ଡ୍ରଇଂ ରୁମଟା ଖାସା ବଢ଼ିଆ ହୋଇଛି । ଏଟା ମର୍ଫିର ନୂଆ ମଡେଲ ନା" ?

—"ଖାସା ବଢ଼ିଆ ତ ନୁହେଁ"

—"ନାଁ ପ୍ରକୃତରେ ଖୁସି ବଢ଼ିଆ ହୋଇଛି"

—"ଯଦି ଆପଣଙ୍କୁ ଭଲ ଲାଗିଲା ତାହାହେଲେ ମୁଁ ମାନି ନେଉଛି"। ସେ ହସି ହସି କହିଲା। ଏ ପ୍ରକାର ବେଲ୍ ଟ୍ରେଣ୍ଡ୍ ହସ ତା'ର ଯେଉଁ ବ୍ୟକ୍ତିତ୍ୱର ପରିଚୟ ଦେଉଥିଲା ପାଣ୍ଡେର କଳ୍ପନାତୀତ ମନେ ହେଲା।

"ଏଠାକୁ ଆସି ଖୁସି ଖୁସି ଲାଗିଲା," ପାଣ୍ଡେ କହିଲା, "ଯଦି ଆପଣ ବାହା ହୋଇଛନ୍ତି ତାହାହେଲେ ଆପଣଙ୍କ ସ୍ତ୍ରୀ ବଡ ଗୃହ କୁଶଳୀ। ଏତକ ରୋଜଗାରରେ ଏ ସୁନ୍ଦର ବ୍ୟବସ୍ଥା କରି ପାରିଛନ୍ତି ! ଆଉ ଏ ଯେଉଁ ମୂର୍ତ୍ତିଗୁଡ଼ିକ ଯଦି କାହାକୁ କାଶ୍ମୀରୀ ବୋଲି କହିଦେବେ ତାହାହେଲେ ଅବିଶ୍ୱାସ କରି ହେବ ନାହିଁ।"

—"ଏଥି ପ୍ରକୃତରେ କାଶ୍ମୀରୀ ମୂର୍ତ୍ତି, ତା'ଛଡ଼ା ସେମିତି କୋଉ ମହଙ୍ଗା ନୁହେଁ।"

ମହଙ୍ଗା ନୁହେଁ ! ଏକଥା ଜାଣି ନିଜ ଖୁସିକୁ ଗୁପ୍ତ ଗୁପ୍ତ ସେ ପ୍ରଶଂସା କଲା, "ମହଙ୍ଗା ନୁହେଁ ତ କ'ଣ ହେଲା ? ଟେଷ୍ଟ ବଢ଼ିଆ ହେଲେ ଦାମ କମ୍ ବେଶୀରେ କିଛି ନାହିଁ।"

— "ସ୍ତ୍ରୀକୁ ଘରକଥା ବୁଝିବା ପାଇଁ ସମୟ କେଉଁଠି ମିଳୁଛି ଯେ ? ପ୍ରକୃତରେ ତାଙ୍କୁ ତ ଆଉ ଜଣଙ୍କର ସାହାଯ୍ୟ ଦରକାର।"

—"ସେ କ'ଣ ...... ?" ଅର୍ଥପୂର୍ଣ୍ଣ ଢଙ୍ଗରେ ହସି ହସି ସେ ପଚାରିଲା।

—"ନା, ସେ କଥା ନୁହେଁ। ମୁଁ ତ ଫ୍ୟାମିଲି ପ୍ଲାନିଙ୍ଗ କରିଛି। ସେ ଅଗ୍ରୱାଲ ଗାର୍ଲସ କଲେଜରେ ଲେକ୍‌ଚରର। ଆଜି ପଢ଼ାଇବା ପାଇଁ ଘରେ ମଧ୍ୟ କିଛି ପଢ଼ିବା ଆବଶ୍ୟକ।"

—"ଲେକ୍‌ଚରର ?," ନିଜର ଦୁଃଖକୁ ଲୁଚେଇ ପାରିଲା ନାହିଁ। ତା ନିଜର ସ୍ତ୍ରୀ ଏଇ ବର୍ଷ ବି. ଏ. ପରୀକ୍ଷା ଦେଇଥିଲା।

—"କେଉଁ ବିଷୟରେ ଏମ୍. ଏ. ?"

—"ରାଜନୀତି ବିଜ୍ଞାନରେ"

—"ଆଉ ଆପଣ"

—"ମୁଁ ବି ଏମ୍. ଏ., ଏଇ ବିଷୟରେ"

—"ତାଙ୍କୁ ଦରମା ତ ବେଶ ଯଥେଷ୍ଟ ମିଳୁଥିବ ?" ସେ ଅନିଚ୍ଛିତ ସ୍ୱରରେ ପଚାରିଲା।

—ଅଢ଼େଇଶ ଟଙ୍କାରେ ଭୋକରେ ମରିବା କଥାତ ମୋଟେ ଉଠୁ ନାହିଁ ବରଂ ନିଜର ଆତ୍ମସମ୍ମାନ ରକ୍ଷା ଖୁବ୍ ସହଜରେ କରାଯାଇ ପାରେ। ପାଣ୍ଡେ କୁଣ୍ଠିତ କ୍ଷୋଭ ଏବଂ କୁଣ୍ଠା ନୈରାଶ୍ୟ ସହିତ ଭାବିଲା।

ଗୋପାଳଚନ୍ଦ୍ରଙ୍କୁ ତା'ର କୌଣସି ଆବଶ୍ୟକତା ନାହିଁ, କଥାଟା ତାକୁ ବୁଝେଇ ଦେଲା ।

—"ତା ହେଲେ ଏ ଚାକିରି ..... " କୌତୁହଳ ସହ ସେ ପଚାରିଲା ।

—"ଗୁଡ଼ାକୁ ସେକଥା । ଆଉ ତ କିଛି ମିଳିଲା ନାହିଁ । ଆମ ଦୁହିଁଙ୍କର ବିବାହ ହେଲା ବେଳକୁ ଆମେ ଦୁହେଁ ଏମ୍. ଏ. ପାଶ୍ କରିଥିଲୁ । ବର୍ଷେ କାଳ ମୋତେ କୌଣସି ଚାକିରି ମିଳିଲା ନାହିଁ । ମୋ ସ୍ତ୍ରୀକୁ ମିଳିଗଲା । ମୁଁ ଖାଲି ବେକାର ରହିବା ଅପେକ୍ଷା କିଛି ଗୋଟାଏ ଚାକିରି କରିଯାଇ ପାରେ ।" ଜଣେ ଉଚ୍ଚାଭିଳାଷୀ ବ୍ୟକ୍ତି ସନ୍ତୁଷ୍ଟ ହୋଇ କହିଲା ପରି ସେ ଉତ୍ତର ଦେଲା ।

—"ହଁ ପତ୍ନୀର ରୋଜଗାର ଖାଇଲେ ତ କିଛି କରିବା ଉଚିତ ।" ସେ ଚେଷ୍ଟା କଲା ହସିବାକୁ । କିନ୍ତୁ ଗୋପାଳଚନ୍ଦ୍ରର ଗମ୍ଭୀର ମୁହଁ ଦେଖି ସେ ଏ ଚେଷ୍ଟାରୁ ବିରତ ହେଲା । ପୁଣି ତା ମନରେ ଏ ଧାରଣା ହେଲା ଯେ ଲେକଚରର ସ୍ୱାମୀ ହୋଇ ପ୍ରୁଫ୍ ରିଡ଼ର୍ସି କରିବା ପାଇଁ ପ୍ରକୃତରେ ସାହସ ଦରକାର ।

ପରନ୍ତୁ ଜଣେ ଏମ୍. ଏ. ପାଶ୍ ସ୍ତ୍ରୀର ସ୍ୱାମୀ ଏବଂ ଅପ୍ରତ୍ୟାଶିତ ଡ୍ରଇଙ୍ଗ୍ ରୁମର ମାଲିକ ଠାରୁ ନିଜର ଶ୍ରେଷ୍ଠତା ପ୍ରତିପାଦନ କରିବାର ଲୋଭ ସମ୍ବରଣ କରି ନପାରି କହିଲା, "ଆପଣତ ମୋତେ କହି ନଥିଲେ । ମୋତେ ମୋଟେ ଜଣା ନଥିଲା ଯେ ଆପଣ ଏମ୍. ଏ. ପାଶ କରିଛନ୍ତି ଏବଂ ମୋତେ ଆଉ କେହିବି କହି ନଥିଲେ । ମୁଁ ଜାଣିଥିଲେ ଆପଣଙ୍କ ପାଇଁ କୌଣସି ଉପଯୁକ୍ତ ସ୍ଥାନ ପାଇଁ ଚେଷ୍ଟା କରିଥାନ୍ତି । ସେମିତି କୋଉ ବଡ଼ କଥାଟାଏ ଯେ । ମୋର ଜଣାଶୁଣା କେତେଜଣ ସେ ବିଭାଗରେ ଅଛନ୍ତି । ଆଉ ମୁଁ ନିଜେ ବି କାହା କାହାକୁ ଚିହ୍ନି ଥାଆନ୍ତି ........।

କିନ୍ତୁ କହୁ କହୁ ହଠାତ ସେ ରହିଗଲା । କ୍ଷଣକ ପାଇଁ ଗୋପାଳଚନ୍ଦ୍ରର ଚେହେରା କଠୋର ହୋଇ ଆସିଲା । ସହଜ ତା ଆଖିରେ ଆଖି ମିଳାଇବାରୁ ପାଣ୍ଡେର ଆକସ୍ମିକ ଭାବରେ ମନେ ହେଲା ଯେ ହଉ ସେମିତି ଗୋପାଳଚନ୍ଦ୍ରଙ୍କୁ ତା ବେଇମାନି ସମ୍ପର୍କରେ ସନ୍ଦେହ ହୋଇଛି ।

ପରକ୍ଷଣରେ ତା ମୁହଁରେ ପୁନଃ ଶିଷ୍ଟତାର ଭାବ ଦେଖି ତିକ୍ତ ଗ୍ଲାନି ଅନୁଭବ କଲା ମାତ୍ର ସେ ଭାବକୁ ପ୍ରକାଶ ନ କରି କହିଲା "ଆପଣଙ୍କର ଏ ବିଷୟରେ ମୋଟେ ବର୍ଷେ ହେଲା । ସେଇଥି ପାଇଁ ଓ ଅନ୍ୟ କେତେକ ପରିସ୍ଥିତି ପାଇଁ ଆପଣଙ୍କର ମୋର ଭଲ ଭାବରେ ପରିଚୟ ହୋଇ ପାରିଲା ନାହିଁ । ପ୍ରକୃତରେ ଅଫିସ ଭିତରେ ହେଉ କି ବାହାରେ ହେଉ, ସମାଜର ବ୍ୟବସ୍ଥା ଏମିତି ଯେ ମଣିଷ ମଣିଷ ଭିତରେ ମାନବିକ ସମ୍ବନ୍ଧକୁ ବିକଶିତ ହେବା ପାଇଁ ଅବସର ମୋଟେ ମିଳୁ ନାହିଁ । ମୁଁ ତ ଶୁଣିଛି ବମ୍ବେ ଏବଂ

ଅନ୍ୟାନ୍ୟ ବଡ଼ ବଡ଼ ଔଦ୍ୟୋଗିକ ସହରମାନଙ୍କର ଜୀବନ ଏମିତ ଗୋଟେ ପ୍ରକାରର ମେସିନ ଭଳି ହୋଇ ଗଲଣି ଯେ ନିକଟ ପଡ଼ୋଶୀମାନଙ୍କ ଭିତରେ ବର୍ଷ ବର୍ଷ ଧରି ଗୋଟାଏ କଥାର ବି ଆଦାନ ପ୍ରଦାନ ହୁଏ ନାହିଁ । — "ଆପଣ ଦୟାକରି ଟିକିଏ ବସନ୍ତୁ । ମୁଁ ମିନିଟିକ ଭିତରେ ଆସୁଛି । " ଗୋପାଳଚନ୍ଦ୍ର ଏତକ ଏତେ ଜଲଦି କହିଲ, ସତେ ଯେମିତି ଏ କଥାଗୁଡ଼ାକ ଶୁଣିବାକୁ ଇଚ୍ଛା ନଥିଲ ।

ତା' ପାଇଁ ଏ ଘରେ ମିନିଟିକ ପାଇଁ ବି ରହିବା ଯନ୍ତ୍ରଣା ଦାୟକ । ମନକୁ ମନ ଶ୍ରେଷ୍ଠ ଲୋକ ବୋଲି ଭାବୁଥିବା ଲୋକର ଆତିଥ୍ୟ ସ୍ୱୀକାର କରିବାଠାରୁ ଆଉ ବଡ଼ ଦଣ୍ଡ କ'ଣ ହୋଇପାରେ ? କିନ୍ତୁ ବସି ରହିବା ଛଡ଼ା ଆଉ କ'ଣ ବା ଉପାୟ ଅଛି ? ଯଦି ସେ ହଠାତ ଚାଲିଯାଏ ତାହାହେଲେ ଗୋପାଳଚନ୍ଦ୍ର ଭାବିବ ଯେ ଲଜ୍ଜିତ ହୋଇ ଚାଲିଗଲା ଏକଥା ତା' ପାଇଁ ଅସହନୀୟ ।

ନିଜର ସମସ୍ତ ବିପତ୍ତି ନିମିତ୍ତ ତାକୁ ଈଶ୍ୱର ଦାୟୀ ମନେ କରିବା ସତ୍ତ୍ୱେ ଏ ପ୍ରକାର ଶିଷ୍ଟତା ଏବଂ ଶାଳୀନତା ପ୍ରଦର୍ଶନ କରିବା ତାକୁ ଅସହ୍ୟ ବୋଧ ହେଲା । ତା' ଡ୍ରଇଙ୍ଗ୍ ରୁମ, ପତ୍ନୀର ଏମ୍ ଏ ଡ଼ିଗ୍ରୀ ଓ ଲେକ୍ ଚରର ଚାକିରି ପାଇଁ ନେଇଁ ଅରୁଚି ବୋଧ କରିଥିଲ ତାହା ବର୍ତ୍ତମାନ ଈର୍ଷାରେ ପରିଣତ ହେଉଥିଲା । ମାତ୍ର ଈର୍ଷା ଏସମସ୍ତ ଦ୍ରବ୍ୟ ପାଇଁ ନୁହେଁ ତାଠାରୁ ବେଶୀ ଗୋପାଳଚନ୍ଦ୍ରର ଭଦ୍ର ବ୍ୟବହାର ପ୍ରତି । କିନ୍ତୁ ସେ ରାଗିଯାଇ ଅଭଦ୍ରତା ପୂର୍ବକ ତାକୁ ଘରୁ ବାହାରି ଯିବାପାଇଁ କହନ୍ତା ବା କୌଣସି ପ୍ରକାର ଅସଂଗତ ବ୍ୟବହାର କରନ୍ତା ତାହାହେଲେ ସେ ମୋଟେ ଖରାପ ଭାବନ୍ତା ନାହିଁ । ଅଧିକନ୍ତୁ ତା'ର ଆର୍ଥିକ ତଥା ମାନସିକ ଅବସ୍ଥା ଦୃଷ୍ଟିରୁ ତା ପ୍ରତି କୋହଳ ନୀତିରେ ବୁଝାନ୍ତା ,ଏବଂ କହନ୍ତା ଯେ ତା ନିଜର ଭୂଲ ପାଇଁ ସେ ଅତ୍ୟନ୍ତ ଲଜ୍ଜିତ ଓ କ୍ଷମା ମାଗୁଛି । ଏଥିରେ ତା'ର ବଡ଼ପଣ ଜୁଟନ୍ତା ।

କିଛିକ୍ଷଣ ମଧ୍ୟରେ ଗୋପାଳଚନ୍ଦ୍ର ତା'ର ଲଘୁତା କଥା ଭାବି ବିଚଳିତ ହୋଇ-ଗଲ ଏବଂ ଆଉ କୌଣସି କଥା ଭାବିବା ପାଇଁ ଚେଷ୍ଟା କଲ ।

ଏବେ ଏତେ ସେ କେ କେ ଫିଲମ୍ ଦେଖିଛି ? କେତେକ ଦେଖିଛି କିନ୍ତୁ ଗୋଟିଏ ହେଲେ ତା'ର ମନେ ପଡ଼ୁନ ନାହିଁ ।



# ଜଣେ ପି. ଏ. ଙ୍କର କଲମରୁ

□ ସୁରେନ୍ଦ୍ର ତିଓ୍ୱାରୀ

ତାଙ୍କୁ ମୁଁ କହିଲି ଯେ ଏବେ ଆମକୁ ଉଠିବାକୁ ହେବ; କିନ୍ତୁ ସେ ତ କଥାବାର୍ତ୍ତାରେ ନିଜକୁ ଏକଦମ୍ ହଜେଇ ଦେଇଥିଲେ, ମୋ କଥା ପ୍ରତି ମୋଟେ ଧ୍ୟାନ ଦେଲେ ନାହିଁ । ମୁଁ ତାଙ୍କୁ ଦେଖିଲି, ସେ ଅପୂର୍ବ ତନ୍ମୟତା ସହ ନିଜ କଥା ସେସମସ୍ତ ଲୋକମାନଙ୍କୁ ଶୁଣାଇ ଚାଲିଥିଲେ ଯେଉଁମାନେ ତାଙ୍କୁ ଘେରି କରି ବସିଥିଲେ । ବେଶୀ ରାତି ନୁହେଁ ତଥାପି ଲୋକଙ୍କ ସଂଖ୍ୟା ବେଶ୍ ଯଥେଷ୍ଟ ଥିଲା । ଗୋଟିଏ ଘେରୁଟିଆ ଲନରେ ଏହି ବୈଠକ ଚାଲିଥିଲା । ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କର ସେ ଲନ୍ । ସେଠାରେ ବସିଥିବା ସମସ୍ତ ବ୍ୟକ୍ତି ତାଙ୍କର ପରିଚିତ ନଥିଲେ ତଥାପି ସେ ଏହି ଅପରିଚିତ ବ୍ୟକ୍ତିଙ୍କ ଗହଣରେ ଏପରି ଭାବରେ ବସିଥିଲେ ଓ କଥାବାର୍ତ୍ତାରେ ନିମଗ୍ନ ଥିଲେ—ସତେ ଯେମିତି ସମସ୍ତେ ତାଙ୍କର ଅତି ପରିଚିତ, ପ୍ରିୟ ଓ ଅତି ଆପଣାର ।

ସେ ମୋତେ ଆଗରୁ କହି ରଖିଥିଲେ ଯେ 'ସମୟ ପ୍ରତି ଦୃଷ୍ଟି ଦେଉଥିବ । ବେଶୀ ସମୟ ଯେମିତି ନଷ୍ଟ ନ ହୁଏ । ଆଜିକାଲି ସମୟ ଅତି ମୂଲ୍ୟବାନ ।' ମୁଁ କଥା ଟାକୁ ଗ୍ରହଣ କରି ନେଇଥିଲି । ତାଙ୍କର ମହାନତାକୁ ମୁଁ ସ୍ୱୀକାର କରୁଥିଲି, ଆଉ ସେଇଥି ପାଇଁ ତ ମୁଁ ତାଙ୍କ ସାଙ୍ଗରେ ଥିଲି । ତାଙ୍କର କଥା ମୋର ମନେ ଥିଲା । ତେଣୁ ପୁଣି ଥରେ ଦୋହରେଇଲି—'ଏବେ ଆମକୁ ଉଠିବାକୁ ହେବ ।' ଏଥରକ ଏତେ ଜୋରରେ ମୁଁ ଏ କଥାଟିକୁ କହିଲି ଯେ ସେ ଯେମିତି ନିଶ୍ଚିତ ଭାବରେ ମୋ କଥା ଶୁଣି ପାରନ୍ତି । ସେ ଯେତେବେଳେ ଏହି ଧରଣର କଥାକୁ ଶୁଣି ପାରନ୍ତି ସେତେବେଳେ ତାଙ୍କ ସାଙ୍ଗର ଅନ୍ୟଲୋକମାନେ ମଧ୍ୟ ଶୁଣିବାକୁ ସମର୍ଥ ହୁଅନ୍ତି । ତେଣୁ ଏହି ଧରଣର କଥାକୁ ନାଟକୀୟ ଭାବରେ କହିବାକୁ ହୁଏ । କେତେଜଣ ମୋ କଥା ଶୁଣି ନିଜ ନିଜ ଘଣ୍ଟା ଦେଖିବାକୁ ଲାଗିଲେ । ତାଙ୍କ କଥା ଅଚାନକ ମଝିରେ ହିଁ ବନ୍ଦ ହୋଇଗଲା । ସେ ମୋ ଚେହେରାକୁ ନିରୀକ୍ଷଣ କରିବାକୁ ଲାଗିଲେ ଓ ତାଙ୍କ ଆଖିରେ ଏକ ବିରକ୍ତିର ଝଲକ ମାତ୍ର କେତେ ମିନିଟ ପାଇଁ ଦେଖା ଦେଇ ମିଳେଇ ଗଲା । ଏଇମିତି ସବୁବେଳେ ହିଁ କରିଯାଉଥାଏ । ସେ ତାଙ୍କ ନିଜ ଘଣ୍ଟା ଦେଖି କହିଲେ—'ଆରେ ହଁ, ଏବେ ଆମେ ଉଠିବା । ଆଉ ଗୋଟାଏ ଜାଗାରେ କେତେଜଣଙ୍କୁ ଭେଟିବାକୁ ଅଛି । ସନ୍ଧ୍ୟାବେଳେ ପୁଣି ଗୋଟାଏ ମିଟିଂକୁ ଯିବାକୁ ହେବ । ଆଜିକାଲି ତ ନିଃଶ୍ୱାସ ନେବାକୁ ବି ସମୟ ମିଳୁ ନାହିଁ ।'

ଅନ୍ୟମାନେ ଆଗରୁ ନିଜକୁ ପ୍ରସ୍ତୁତ କରି ନେଇଥିଲେ । କିଏ କିଏ ଉଠି ଠିଆ ହୋଇ ଯାଇଥିଲେ । କାହାରି କାହାରି ଚେହେରା ଏକଦମ ବଦଳି ଯାଇଥିଲା । ସେମାନେ ଯେତେବେଳେ ପ୍ରଥମେ ଏଠାକୁ ଆସିଥିଲେ ସେତେବେଳର ସେମାନଙ୍କର ଚେହେରା ମୋର ସ୍ପଷ୍ଟ ମନେଥିଲା ଓ ଏବେ ଯିବାକୁ ଉଦ୍ୟମ ହେଲାବେଳେ ଆସିଲା ବେଳର ଚେହେରାଠାରୁ ଏକାବେଳକେ ଭିନ୍ନ, ଅନ୍ୟ ଚେହେରା ନେଇ ସେମାନେ ଯିବାକୁ ଉଦ୍ୟତ ହେଉଥିଲେ । କେତେକ ତ ମୁହଁ ଖୋଲି ହାଇ ମାରିବାକୁ ଲାଗିଥିଲେ, କେହି କେହି ମୁହଁ ଓ ଚଷମାକୁ ରୁମାଲରେ ପୋଛି ନେଉଥିଲେ ।

ସେ ନିଜେ ମଧ୍ୟ ଉଠିଥିଲେ । ଉଠି କରି ପିନ୍ଧା ଖଦଡ଼ ଧୋତିକୁ ଟିକିଏ ଟାଣିକରି ଠିକ୍ କରୁଥିଲେ । ପୁଣି ପକେଟରୁ ଗାନ୍ଧୀ ଭବନର ଧଳା ରୁମାଲ ବାହାର କରି ଆଖିକୁ ମଳି ଚାଲିଥିଲେ । ସ୍ଥାନ ଭିତରେ ମୁଁ ମୋ ଚପଲ ପିନ୍ଧି ସାରିଥିଲି । ମନେମନେ ଖାଲି ଅପେକ୍ଷା କରୁଥିଲି ଯେ ସେ ତାଙ୍କ ଚପଲ ପିନ୍ଧିଲେ କ୍ଷଣି ସେମାନେ ମଧ୍ୟ ଯିବାକୁ ଆରମ୍ଭ କରିବେ । କିନ୍ତୁ ସେ ତାଙ୍କ ବନ୍ଧୁଙ୍କ ପାଖରେ ଠିଆ ହୋଇ ବନ୍ଧୁଙ୍କର କାନ୍ଧ ଉପରେ ବାଁ ହାତଟା ଲଦି ବେଶ ଗମ୍ଭୀରତାର ସହ କ'ଣ ସବୁ ଗପି ଚାଲିଥିଲେ । ବନ୍ଧୁ ଜଣଙ୍କ ମଧ୍ୟ ବେଶ ଏକାଗ୍ର ଚିତ୍ତରେ ସେ କଥାତକ ଗ୍ରହଣ କରି ନେଉଥିଲେ । ଅନ୍ୟ ଲୋକମାନଙ୍କ ପ୍ରତି ତାଙ୍କର ଦୃଷ୍ଟି ନ ଥିଲା ଓ ଲୋକମାନେ ବି ଅବସ୍ଥାଟା ଠିକ ଠଉରେଇ ନେଇ ଚାଲିଯିବାକୁ ଆରମ୍ଭ କରିଥିଲେ । ମୁଁ ସେଇମିତି ଚୁପ୍ ଚାପ ଠିଆ ହୋଇ ରହିବା ଛଡ଼ା ଆଉ କ'ଣ କରିଥା'ନ୍ତି ଯେ ! ତାଙ୍କ ବିନା କ'ଣ ମୁଁ ଲନ୍ ବାହାରକୁ ଯାଇ ପାରନ୍ତି କି ?

ସେ କେତେ କ'ଣ କହି ଚାଲିଥା'ନ୍ତି । ବନ୍ଧୁଙ୍କ କାନ୍ଧ ଉପରୁ ହାତଟା ଏ ଯାଏଁ ମଧ୍ୟ ଉଠାଇ ନ ଥା'ନ୍ତି । ତାଙ୍କ ପାଖରେ ଆଉ ଚାରି ପାଞ୍ଚ ଜଣ ମଧ୍ୟ ଠିଆ ହୋଇଥାନ୍ତି ଯେଉଁମାନଙ୍କ ସହ ତାଙ୍କର ଅଳ୍ପ ଅଳ୍ପ ପରିଚୟ ଥିଲା । ଡାହାଣ ହାତଟାକୁ ଖୁବ ଜୋରରେ ହଲାଇ ନିଜ କଥାକୁ ଠିକ ଭାବରେ ସତେ ଯେମିତି ବୁଝାଇ ଚାଲିଥା'ନ୍ତି । ତାଙ୍କର ପ୍ରତି ଦ୍ୱିତୀୟ କିମ୍ବା ତୃତୀୟ ବାକ୍ୟରେ ପାର୍ଟିର ନାଁ ଉଚ୍ଚାରିତ ହେଉଥାଏ ଏବଂ ପ୍ରତି ଦୁଇ କିମ୍ବା ତିନି ମିନିଟ ଅନ୍ତରରେ ସେ ଏକଥା କହିବାକୁ ଭୁଲୁ ନ ଥିଲେ ଯେ ଆଜିକାଲି ଦେଶରେ ବିଶ୍ୱସ୍ତ ନିଷ୍ଠାପର ବ୍ୟକ୍ତିଙ୍କର ସଂଖ୍ୟା କମି ଯିବାରେ ଲାଗିଛି । ଲୋକମାନେ ଭୁଲ ସ୍ତରରେ ରାଜନୀତି କରିବାକୁ ଲାଗିଲେଣି । ଏଥରକ କେନ୍ଦ୍ରକୁ ଯାଏଁ ସ୍ଥା ବଟୁଙ୍କରେ କିଛି ଗୋଟାଏ ନିଶ୍ଚିତ ଭାବରେ କରିବାକୁ ହେବ ।

ଗୁଡ଼ାଏ ବେଳ ହେଲା ବନ୍ଧୁଜଣକ ଗୋଡ ଉପରେ ଭରାଦେଇ ଠିଆ ହୋଇଥାଆନ୍ତି । ଗୋଟାଏ ଗୋଡକୁ ଡେରହେଇ କରି ଠିଆହୋଇ ସେ ବାରମ୍ବାର ଗୋଡ ବଦଳେଇ ନେଉଥା'ନ୍ତି । ଉଦ୍ବିଗ୍ନ ଚଞ୍ଚଳ ଦୃଷ୍ଟିରେ ନିଜ ଘଡ଼ିକୁ ମଧ୍ୟ ବାରମ୍ବାର

ଜଘା କରୁଥାଆନ୍ତି । ମୁଁ ଭାବନ୍ତି ଯେ ପୁଣି ଥରେ ତାଙ୍କୁ ସମସ୍ତ ସମ୍ପର୍କରେ ସତର୍କ କରାଇ ଦେଲେ ଭଲ ହୁଅନ୍ତା । କାରଣ ଅଧଘଣ୍ଟାକ ପରେ ପୁଣି ଅନ୍ୟ ଆଉ କେତେ-ଜଣଙ୍କୁ ଭେଟିବାକୁ ହେବ । ଆଉ ଯଦି ସେ ଏଠାରେ ଡେରି କରନ୍ତି ତେବେ ସେଠି ମଧ୍ୟ ଡେରି ହୋଇଯିବ । କିନ୍ତୁ ସେ ତ ତାଙ୍କ ବନ୍ଧୁଙ୍କ ସାଙ୍ଗରେ ବ୍ୟକ୍ତିଗତ କଥାବାର୍ତ୍ତା କରୁଥିଲେ, ତେଣୁ ମଝିରେ କହିବା ଉଚିତ ହେବ ନାହିଁ । ତାଙ୍କର ମଧ୍ୟ ସମ୍ମାନ ଅଛି । ଏଠାକୁ ମଧ୍ୟ ପ୍ରାୟ କୋଡ଼ିଏ ବାଇଶି ମିନିଟ ଡେରିରେ ସେ ଆସିଥିଲେ । ସେ ପର୍ଯ୍ୟନ୍ତ ଲୋକେ ତାଙ୍କୁ ଅପେକ୍ଷା କରି ବସି ରହିଥିଲେ । ସେ ଆସିଲାବେଳେ ସମସ୍ତେ ଠିଆ ହୋଇ ଯାଇଥିଲେ । କେତେଜଣ ତାଙ୍କୁ ପ୍ରଥମ ଥର ପାଇଁ ଭେଟୁଥିଲେ । ତେଣୁ ସେମାନେ ତାଙ୍କର କିଛିଟା ନିକଟବର୍ତ୍ତୀ ହେବାକୁ ଚେଷ୍ଟା କରୁଥିଲେ । ତାଙ୍କର ସାଙ୍ଗ ଜଣକ ତାଙ୍କୁ ଗାଡ଼ିରୁ ଓହ୍ଲାଇ ପାଖାପାଖି ଧରି ଧରି ଲନ୍‌ ଯାଏ ଆଣିଥିଲେ । ତାଙ୍କ ବସିବା ଜାଗାରେ ସଫା ଧଳା ଚଦର ଓ ତକିଆ ପକାଯାଇଥିଲା । ଖଦଡର ଗୃଦର ଲନ୍‌ସାରା ବିଛେଇ ଦିଆଯାଇଥିଲା । ଉଦ୍ଦିଷ୍ଟ ଆସନରେ ତାଙ୍କୁ ବସେଇ ସାରିଲା ପରେ ବନ୍ଧୁ ଜଣକ କହିବାକୁ ଆରମ୍ଭ କରିଥିଲେ—"ସ୍ୱେ ହେଉଛନ୍ତି ଆମର ପରମ ଆଦରଣୀୟ ମହାମନା ପାନାନାଥଜୀ । ଆପଣମାନେ ସମସ୍ତେ ଜାଣନ୍ତି ଯେ ସେ ଗଲା ଅନେକ ବର୍ଷ ଧରି ଗରିବ ଏବଂ ଶ୍ରମିକମାନଙ୍କର ସେବା କରି ଗ୍ୱଲିଛନ୍ତି । ଗଲା ନିର୍ବାଚନରେ ସେ ଜିଣିଥିଲେ ଓ ଆପଣମାନେ ସମସ୍ତେ ଭଲ ଭାବରେ ଜାଣନ୍ତି ଯେ ସେ ଆମ ପାଇଁ କ'ଣ କରିଛନ୍ତି । ତାଙ୍କୁ ମନ୍ତ୍ରୀ ସୁଯୋଗ ମିଳି ନଥିଲା, ନ ହେଲେ ତ ସେ ସମଗ୍ର ଦେଶର ଢାଞ୍ଚାକୁ ବଦଳେଇ ଦେବା ସମ୍ପର୍କରେ ଚିନ୍ତା କରୁଥିଲେ । ତାଙ୍କର ସଙ୍କଳ୍ପ ଯେ ଆମ ଦେଶରୁ ଭ୍ରଷ୍ଟାଚାର ଓ ବିଶ୍ୱାସଘାତକତାକୁ ଦୂର କଲେ ନିଶ୍ୱାସ ମାରିବେ । ଏଥରକ ମଧ୍ୟ ସେ ଇଲେକ୍‌ସନରେ ଠିଆ ହୋଇଛନ୍ତି । ଏଥରକ ଜିତିଲେ ସେ କ'ଣ କ'ଣ କରିବେ ତାହା ତାଙ୍କର ମୁହଁରୁ ଆପଣମାନେ ଶୁଣି ନିଅନ୍ତୁ ।"

ବନ୍ଧୁ ଜଣଙ୍କ ବସିଗଲା ପରେ ସେ ଉଠିଥିଲେ । ଦୁଇହାତ ଯୋଡ଼ି କରି ସମସ୍ତଙ୍କୁ ତେରି ବେଳ ଯାଏଁ ନମସ୍କାର କରି ଗ୍ୱଲିଲେ, ପୁଣି କହିଲେ — "ଏ ଦେଶର ଅବସ୍ଥା ଆସି କ'ଣ ହେଲାଣି ? ଲୋକମାନେ ସ୍ୱାର୍ଥପର ଓ ପଦଲୋଭୀ ହୋଇ ପଡ଼ିଲେଣି । ସେଥିପାଇଁ ଧାର୍ମିକବୁଦ୍ଧିହୀନ ତଥା ବିଶ୍ୱାସଘାତକ ହୋଇ ଗଲେଣି । ଏ ସମସ୍ତର ପ୍ରତିକାର କରାଯିବା ଦରକାର ଓ ଏ ପ୍ରତିକାର କରାଯାଇ ପାରିବ ଯଦି ପ୍ରକୃତ ଛୋଟ ଏବଂ ନିଷ୍ଠାପର ବ୍ୟକ୍ତିକୁ କାମ କରିବାକୁ ସୁଯୋଗ ଦିଆଯାଏ ।" ସେ ବେଶ୍ ସଂକ୍ଷେପରେ କଥାଟିକ କହି ଦେଇଥିଲେ । ଅଗରୁ ଅବଶ୍ୟ ସେ କହି ସାରିଥିଲେ ଯେ ସେ ବିଷୟରେ ଗୁଡ଼ାଏ ଏଣ୍ଟୁ ତେଣ୍ଟୁ ବଢ଼େଇ କରି କହି ଅନ୍ୟ ନେତାମାନଙ୍କ ପରି ନିଜର ପ୍ରଶଂସା ନିଜେ କରିବାକୁ ଗ୍ୱହାନ୍ତି ନାହିଁ କିମ୍ବା ତୁଚ୍ଛା ପ୍ରତିଶ୍ରୁତିରୁ ବୋଝେ ଜାଡ଼ ଦେବାକୁ ମଧ୍ୟ ଇଚ୍ଛା କରନ୍ତି ନାହିଁ । ସେ ଯାହା କରିପାରିବେ କେବଳ

ନେତାଜୀଙ୍କ ହିଁ କରିବେ ଓ ସେ ସମସ୍ତ କଥାକୁ ମାତ୍ର ଘଣ୍ଟାକ ଭିତରେ କରି ସାରିଥିଲେ ।

ଜନ୍ ଖାର୍ଡ଼ି ହୋଇ ଯାଇଥିଲା । ଲୋକମାନଙ୍କର ଗାଡ଼ି ବାହାରେ ସଡ଼କ ଉପରେ ଠିଆ ହୋଇଥିଲା । ଲୋକେ ନିଜ ନିଜ ଗାଡ଼ିରେ ବସି ଚାଲି ଯାଉଥିଲେ । ସେମାନେ ସମସ୍ତେ ଏହି ସହରର ସମ୍ଭ୍ରାନ୍ତ ଓ ଧନୀ ଲୋକ । ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ଏହି ଲୋକମାନେ ଯଦି ତାଙ୍କୁ ସହଯୋଗ କରନ୍ତି ତେବେ ଏଥରକ ନିର୍ବାଚନରେ ଜିତା ପଟଟା ନିଶ୍ଚିତ ଭାବରେ ତାଙ୍କର । ତାଙ୍କର ବେଶ୍ ଦୂରକୁ ଗତାଗତ । ପ୍ରତିଟି ପ୍ରତିଷ୍ଠିତ ବଂଗ୍ଳାର ଘରକୁ ତାଙ୍କର ଯିବା ଆସିବା ଅଛି । ତଥାପି ସେ ଆଜିକାଲି ଏମିତି ସାମୂହିକ ଭାବରେ ସମସ୍ତଙ୍କୁ ଭେଟୁଛନ୍ତି । ଭେଟିବାକୁ ଥିବା ସମସ୍ତ ଲୋକମାନଙ୍କର ତାଲିକା ମୋତେ ହିଁ କରିବାକୁ ହୁଏ । ଯେଉଁ ମାନଙ୍କୁ ଭେଟିଥା'ନ୍ତି ସେମାନଙ୍କର ତାଲିକା ଓ ପରବର୍ତ୍ତୀ ସଭାକୁ କେଉଁ କେଉଁମାନଙ୍କୁ ବିଶେଷ ଭାବରେ ନିମନ୍ତ୍ରିତ କରାଯିବ ତାହାର ମଧ୍ୟ ତାଲିକା ମୋତେ ପ୍ରସ୍ତୁତ କରିବାକୁ ପଡ଼େ । ପ୍ରତିଦିନ ସକାଳୁ ସକାଳୁ ତାଙ୍କର କାର୍ଯ୍ୟକ୍ରମ ତାଙ୍କୁ କହି ଦେବାକୁ ପଡ଼େ—ଆଜି କାହାକୁ କାହାକୁ ଭେଟିବାକୁ ହେବ । କେଉଁ କେଉଁ ସଭାକୁ ଯିବାକୁ ପଡ଼ିବ । ସକାଳୁ ସବା ଆଗେ ଉଠି କରି ସେ ଚା' ପିଅନ୍ତି ଏବଂ ମୁଁ ପାଖରେ ପଡ଼ିଥିବା ଚୌକି ଉପରେ ବସି ତାଙ୍କୁ ସବୁ କଥା ଗୋଟି ଗୋଟି କରି ଶୁଣେଇ ଚାଲେ । ତା'ପରେ ଅନ୍ୟ କୌଣସି କାମ କରିବା ପୂର୍ବରୁ କୋଠିର ତଳ ମହଲା ଘରେ ବସିଥିବା ହେତୁ ଲୋକମାନଙ୍କୁ ଭେଟିଥା'ନ୍ତି ଯେଉଁମାନେ ତାଙ୍କୁ ଭେଟି ସାରିଲା ପରେ ରାସ୍ତା ଉପରକୁ ବାହାରି ଯାଇ ତାଙ୍କ ପାଇଁ ଶୋଭାଯାତ୍ରା ବାହାର କରନ୍ତି, ପୋଷ୍ଟର ମାରନ୍ତି, ଭୋଟଦାତାମାନଙ୍କ ଘରକୁ ଦୌଡ଼ନ୍ତି ଓ ଅନ୍ୟ ଲୋକମାନଙ୍କ ଆଗରେ ତାଙ୍କର ପ୍ରଶଂସା କରନ୍ତି । ସେମାନେ ଲୋକମାନଙ୍କୁ ବୁଝେଇ ବସନ୍ତି ଯେ ଏଥରକ ନିର୍ବାଚନରେ କେମିତି ମୂର୍ଖ ଅପଗଣ୍ଡ ଦୁଷ୍କର୍ମୀ ଲୋକଗୁଡ଼ାକ ଇଲେକ୍ସନରେ ଠିଆ ହୋଇ ଯାଉଛନ୍ତି । ଯଦି ସଚ୍ଚୋଟ ଏବଂ ନିଷ୍ଠାପର ରାଜନୈତିକ ନେତା କେହି ଥାଏ ତାହା ହେଲେ ସେ ହେଉଛନ୍ତି କେବଳ ମୀନାନାଥ ବାବୁ ।

ଏହି ଲୋକମାନଙ୍କୁ ଭେଟି ସାରିଲା ପରେ ସେ ଏମିତି କେତେକ ଲୋକମାନଙ୍କ ସହ ଫୋନରେ ମିନିଟିଏ ଦି ମିନିଟ ଲେଖାଏଁ କଥାବାର୍ତ୍ତା କରି ଦିଅନ୍ତି, ଯେଉଁମାନେ ତାଙ୍କ ପାଇଁ କିଛି ନା କିଛି କାମ କରିଥାନ୍ତି । ମୁଁ ଠିଆ ଠିଆ ଆଜିର ସାରା କାର୍ଯ୍ୟକ୍ରମକୁ, ଯାହା ତାଙ୍କର ବିଷୟରେ ତାଙ୍କର ପାଇଁ କରାଯାଇଥିଲା, ମନେ ମନେ ଦୋହରେଇ ନେଇଛି । ଏଠାରୁ ସିଧା ବାଗବଜାର ଯିବାର ଥିଲା । ସେଠି ମଧ୍ୟ ଏଇମିତି କେତେ ଜଣଙ୍କୁ ସେ ଭେଟିଥା'ନ୍ତେ ।

ମୁଁ ପୁଣି ଥରେ ସମୟ ଦେଖିଲି । ସେ ଧୀର ସମସ୍ତ ଧରି ବନ୍ଧୁଙ୍କ ଅପେକ୍ଷା କରି ଠିଆ ହୋଇ ରହିଥିଲେ । ମୁଁ ସେ ଭଦ୍ରଲୋକଙ୍କର ଅବସ୍ଥା ବେଶ ହୃଦୟଙ୍ଗମ କରି ପାରୁଥିଲି । କିନ୍ତୁ ମୋର କ'ଣ ବା କରିବାର ଥିଲା ? ତାଙ୍କର ଏହି ଆଦେଶ ଥିଲା ଯେ ସେ କୌଣସି ନିର୍ଦ୍ଦିଷ୍ଟ ସମୟରେ ବା ବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା କଲାବେଳେ ତାଙ୍କୁ ଯେମିତି ବାଧା ଦିଆ ନ ଯାଏ ମାତ୍ର କୌଣସି କୌଣସି ସଭା ସମିତି ଅବସରରେ ସମୟର ବାରମ୍ବାର ସୂଚନା ଦେବା ମୋର କର୍ତ୍ତବ୍ୟ ।

"ଆପଣଙ୍କ ପାଇଁ ଆମେ ସବୁ କିଛି କରିବୁ । ଆପଣ ନିଶ୍ଚିନ୍ତ ରହନ୍ତୁ । ଯେଉଁଠି ଗୋଟାଏ ହେଲେ ବି ଭୋଟ ଅପର ପକ୍ଷ ପାଇ ପାରିବେ ନାହିଁ । ଆପଣଙ୍କର ବୋଧେ ବେଶ ଡେରି ହେଲାଣି ।" କାନ୍ଧରୁ ଘୁଞ୍ଚେଇ ନେଇ ନେଇ ତାଙ୍କର ବନ୍ଧୁ କହୁଥିଲେ—"ସମୟ ଯଦି ଥା'ନ୍ତା ତାହା ହେଲେ ଆମେ ବସି କରି କଫି କପେ ପିଇ ଥାଆନ୍ତେ ।

"ପ୍ରକୃତରେ ବହୁତ ଡେରି ହେଲାଣି । ଏତେ ବେଳକୁ ତ ମୋତେ ସେଠି ପହଞ୍ଚି ଯିବାକୁ ହୁଅନ୍ତା"—ସେ ବେଶ ତର ତର ହୋଇ ଚପଲ ଘଷି ଘଷି ଆସିଲେ ଓ ସିଧା କାରରେ ବସି ଗଲେ । ମୁଁ ମଧ୍ୟ ଚୁପ ଚାପ ଯାଇ ଆଗ ସିଟ୍‌ରେ ବସି ଗଲି । ଡ୍ରାଇଭର ଆଗରୁ ଜାଣିଥିଲା ଯେ ଆମେ ବାଗବଜାର ଯିବୁ । ସେ ସମସ୍ତଙ୍କଠାରୁ ଚଟା-ପଟ ବିଦାୟ ନେଲେ ଏବଂ ଗାଡ଼ି ଚଲେଇବାକୁ ଆରମ୍ଭ କଲା ।

ବାଗବଜାରରେ ସେ କହିଲେ—"ଆଜିକାଲି ଦେଶର ଅବସ୍ଥା ଏପରି ଗୋଳମାଳିଆ ହୋଇ ପଡ଼ିଲାଣି ଯେ କିଏ ପ୍ରକୃତରେ କାମ କରୁଛି, ତାହା ଜାଣିବା କାଠିକର ପାଠ । ମୁଁ କିନ୍ତୁ କେବଳ ଏତିକି ମାତ୍ର ଜାଣେ ଓ ଏତିକି ମାତ୍ର କହିବି ଯେ ଏଥରକ ନିର୍ବାଚନ-ରେ ମୋ ବିରୁଦ୍ଧରେ ଯେଉଁମାନେ ଠିଆ ହୋଇଛନ୍ତି ସେମାନଙ୍କର ମୁଖାପିନ୍ଧା ନେଳହେବାରେ କ'ଣ ସବୁ ଅଛି ତାହା ଆପଣମାନେ ଭଲ ଭାବରେ ଜାଣି ନେବା ଉଚିତ । ଏହି ସବୁ ସ୍ୱାର୍ଥପର ବ୍ୟକ୍ତିମାନେ ଦେଶକୁ ରସାତଳକୁ ନେଇ ଯାଉଛନ୍ତି । ଦେଶ ବର୍ତ୍ତମାନ ହଟଚୋଟ, ନିଷ୍ଠାପର, ପରିଶ୍ରମୀ; ବିଶ୍ୱସ୍ତ ନେତା ଆବଶ୍ୟକ କରୁଛି । ଆଉ ସେ ଦୃଷ୍ଟିରୁ ଜନତାର କର୍ତ୍ତବ୍ୟ ହେଉଛି ସାଧୁ, କର୍ମଠ ଲୋକମାନଙ୍କୁ ବାଛି କରି ନିଜର ପ୍ରତିନିଧି ରୂପେ ପାଇ ନିଜର ସ୍ୱପ୍ନକୁ ସଫଳ କରାଇବା ।

ଯେତେ ଯେଉଁଠି ସେ କହନ୍ତି, ସେ ବ୍ୟକ୍ତିଗତ ସମ୍ପର୍କ ବାଲା ଜାଗା ହେଉ ବା ପଣ୍ଡିତମାନଙ୍କର କୌଣସି ଗ୍ରୁପକାଟିଆ ବୈଠକ ହେଉ ବା କୌଣସି ସଭା ହେଉ ସବୁଠି ଲୋକେ ତାଙ୍କର କଥାରେ ପ୍ରଭାବିତ ହୋଇ ଯାଉଥିଲେ । ଜନତା କ'ଣ ଶୁଣିବାକୁ ବେଶୀ ପସନ୍ଦ କରେ ତାହା ସେ ଭଲରୂପେ ଜାଣନ୍ତି । ତାଙ୍କ ପାଖରେ କେତେଗୁଡ଼ାଏ ଭଲ ଶୁଭୁଥିବା ଏକେ ସେତେକିଟି ବାକ୍ୟ ଅଛି ଯାହା ସେ ସବୁ ଜାଗାରେ

କହୁ ଥାଆନ୍ତି । ସଭା ସମିତିରେ କହିବା ପାଇଁ ତାଙ୍କୁ ବେଶୀ ଚିନ୍ତିତ ହେବାକୁ ପଡ଼େ ନାହିଁ । କହିବାକୁ ଠିଆ ହେବା ପୂର୍ବରୁ ଥରୁଟିଏ ମାତ୍ର ମଧୁକରବାବୁ ଲେଖିକରି ଦେଇଥିବା ଭାଷଣଟିକୁ ପଢ଼ି ନିଅନ୍ତି । ମଧୁକରବାବୁ ଭାରି ବଢ଼ିଆ ଭାଷଣ ଲେଖନ୍ତି । ଦୀନାନାଥବାବୁ ତ ତାଙ୍କ ଉପରେ ଏକଦମ୍ ଖୁସି । ମଧୁକରବାବୁ କହନ୍ତି "ଦୀନାନାଥବାବୁ ତାଙ୍କୁ ବଞ୍ଚେଇ ଦେଲେ, ନ ହେଲେ ଗପ କବିତା ଲେଖି ଲେଖି ସେ ଶେଷ ପାଇଯାଇ ଥାଆନ୍ତେ । ଜୀବନଟା ତ ବିଲ୍‌କୁଲ୍ ନଷ୍ଟ ହୋଇ ଯାଇଥାଆନ୍ତା । କିନ୍ତୁ ଦୀନାନାଥବାବୁ ତାଙ୍କୁ ମନଲାଖି କାମଟାଏ ଯାହା ହେଉ କରେଇ ଦେଇଛନ୍ତି ।" ବକ୍ତୃତା ଲେଖି କରି ମଧୁକରବାବୁ ଖୁସି ତ ଦୀନାନାଥବାବୁ ସେ ଭାଷଣକୁ ପଢ଼ି କରି ଖୁସି ଓ ଲୋକେ ଖୁସି ତାଙ୍କୁ ଶୁଣିକରି । ଆଉ ମୁଁ……ମୋ କଥା ଛାଡ଼ନ୍ତୁ । ମୁଁ ହୁକୁମର ଗୋଲାମ । ଦୀନାନାଥବାବୁଙ୍କର ପି.ଏ. ହେବା କ'ଣ କମ୍ ଗର୍ବର କଥା ! ମୋ ଖୁସି ତ ଦୀନାନାଥ ବାବୁଙ୍କ ଖୁସି । ତାଙ୍କର ଦୁଃଖ ମୋର ଦୁଃଖ । ଯଦି ସେ ଇଲେକ୍‌ସନ୍‌ରେ ଜିତି ଯାଆନ୍ତି ତାହାହେଲେ ମୋର ମଧ୍ୟ ବିଜୟ । ଆଉ ସେତେବେଳେ ତ ମୁଁ ବି ତାଙ୍କରି ପି. ଏ. ହୋଇ ରହିବି ! ଆଉ ଏଇ କଥା ଭାବି ଭାବି ଏକ ଅସୀମ ଆନନ୍ଦର ସ୍ରୋତ ମୋ ଅନ୍ତରରେ ପ୍ରବାହିତ ହୋଇ ଯାଉଛି ଯେ ଖୁବ ଶୀଘ୍ର ମୁଁ ଜଣେ ମନ୍ତ୍ରୀଙ୍କର ପି. ଏ. ହେବାକୁ ଯାଉଛି । ମୁଁ ତାଙ୍କର ସମସ୍ତ ବିଷୟ ପ୍ରତି ଦୃଷ୍ଟି ଦେଉଛି । ମୁଁ ବରାବର ଏଇ କଥା ଭାବି କାମ କରି ଚାଲିଛି ଯେ ତାଙ୍କ ପାଇଁ ଯାହା କିଛି କରୁଛି ସେ ସମସ୍ତ ମୋ'ରି ପାଇଁ କରୁଛି ।

ସନ୍ଧ୍ୟାବେଳେ ସେ ବହୁ ସମସ୍ୟା ପାଇଁ ବକ୍ତୃତା ଦେଇଥିଲେ । ଖୁବ ବିରାଟ ସଭା ହୋଇଥିଲା ; ଗୋଟାଏ ବିରାଟ ପଡ଼ିଆରେ ସଭା ହେଉଥିଲା ଓ ବହୁ ସଂଖ୍ୟାରେ ଜନତା ଯୋଗ ଦେଇଥିଲେ । ଏହି ମିଟିଙ୍ଗ୍‌ରେ ସେ ବେଶ ପ୍ରଭାବଶାଳୀ ଢଙ୍ଗରେ ଭାଷଣ ଦେଇଥିଲେ । ଜନତାର ଘନ ଘନ କରତାଳି ମଧ୍ୟରେ ସେ ଆହୁରି ଅଧିକ ଉତ୍ସାହର ସହିତ ନିଜ ପାର୍ଟିର ବଡ଼େଇ କହି ଚାଲିଥିଲେ । ବେଶ ଉଚ୍ଚ ଏବଂ ଦୃଢ଼ ସ୍ୱରରେ ସେ କହୁଥିଲେ—"ଆଜି ନେତାମାନେ ଦେଶକୁ ଭିଖାରି କରି ଦେଇଛନ୍ତି, କିନ୍ତୁ ମୋ ଭଳି ଯେଉଁ କେତେଜଣ ନେତା ଆପଣଙ୍କର ସେବାକୁ ନିଜର ଧର୍ମ ବୋଲି ବରି ନେଇଛନ୍ତି ସେମାନେ ଏହି ଭିଖାରି ଦେଶକୁ ଭିଖାରି କରି ରଖିବାକୁ ଚାହାନ୍ତି ନାହିଁ । ସାମାନ୍ୟ ଚାଉଳ-ଗହମ ପାଇଁ ଆମ ଦେଶ ଆଉ କାହା ପାଖରେ ହାତ ପାତୁ ବୋଲି ମୁଁ ଚାହେଁ ନା । ପ୍ରତିଟି ବ୍ୟକ୍ତିର ଅର୍ଥକୁ ଉପଯୁକ୍ତ ଭାବରେ ଯେପରି ଉପଯୋଗ କରାଯାଇ ପାରିବ ସେ ବିଷୟରେ ମୁଁ ଉପାୟ ଚିନ୍ତା କରି ଚାଲିଛି ଏବଂ ମନ୍ତ୍ରୀ ହେଲାକ୍ଷଣି ସେହି ଉପାୟକୁ କାର୍ଯ୍ୟକାରୀ କରାଇବାକୁ ଚେଷ୍ଟା କରିବି ।"

ଏଠି ଆଉ ମୋତେ ତାଙ୍କ ବକ୍ତୃତା ଦେଲାବେଳେ ବାଧା ଦେବାକୁ ପଡ଼ିଲାନି କାରଣ ସ୍ଥା'ପରେ ତ ଆମର କେବଳ ଘରକୁ ଫିବାର ଥିଲା ଓ ସେଠାରେ କେତେଜଣ ନିର୍ଦ୍ଦିଷ୍ଟ ଜନସେବକଙ୍କ ସହ କଥାବାର୍ତ୍ତା କରିବାର ଥିଲା । ସେ ଜନସେବକମାନେ ଘଣ୍ଟା ଘଣ୍ଟା ବସି ଅପେକ୍ଷା କଲାବାଲା, ଆଉ ସେଥିପାଇଁ ସେମାନଙ୍କ ବିଷୟରେ ଚିନ୍ତା ହେବାର କୌଣସି କାରଣ ନ ଥାଏ । ଆଜିକା ସନ୍ଧ୍ୟାଟା ବେଶ ଗୋଟାଏ ଜମ୍‌କାଲ ସଭା । ତା' ଛଡ଼ା ସେ ମଧ୍ୟ ବେଶ ଗୋଟାଏ ମୌକା ପାଇ କମାଲ କରି ଦେଇଛନ୍ତି । ଗୁଣଆଉ ତାଙ୍କର ପ୍ରଶଂସାସୂଚକ ତାଳିମାଡ଼ କୁଢ଼େଇ ହୋଇ ପଡ଼ୁଛି । ମୁଁ ଚୁପ୍‌-ଚାପ୍ ବସି ଭାବି ଚାଲିଛି ଯେ ଯେଉଁ ଦୀନାନାଥବାବୁ ଏମଞ୍ଚ ପାଖ ବି ପଶି ପାରୁ ନଥିଲେ ସେ କେମିତି ଏ ମଞ୍ଚର ନାୟକ ହୋଇ ପାରିଲେ ?

ଘର ମୁହଁରେ ଆଜିକାଲି ବନ୍ଧୁକ ଧରି ଦୁ ଦଇଟା ଦରଓ୍ୱାନ ଠିଆ ହେଉଛନ୍ତି ଦିନ ରାତି ଚବିଶ ଘଣ୍ଟା । 'ଇଲେକସନ ସମୟରେ ନିରାପତ୍ତା ରକ୍ଷା ଏକାନ୍ତ ଜରୁରୀ' ସେ କହୁଥିଲେ—'ଏ ସମୟରେ ଶତ୍ରୁ ମଧ୍ୟ ମିତ୍ର ହୋଇଯାଏ ।'

ଗାଡ଼ି ତାଙ୍କର ଦୁଆର ମୁହଁରେ ଠିଆ ହେଲାକ୍ଷଣି ଦରଓ୍ୱାନ ସିଧା ଠିଆ ହୋଇ ସଲାମ କଲା । ସେ ବିଜୁଳି ବେଗରେ ଘର ଭିତରକୁ ପଶିଗଲେ । ପଛେ ପଛେ ମୁଁ ଥିଲି । ଜନସେବକମାନେ ଏ ଯାଏଁ ବସି ରହିଥିଲେ । ସେ ତ.ଂକ ଜାଗାରେ ବସିଲେ । କୋଠରୀ ମଝିରେ ଗୋଟାଏ ଚୌକି ପଡ଼ିଥିଲା ଯହିଁରେ ବସି ସେ ଗୁରିଅଡ଼କୁ ଘୂରି ଘୂରି କଥାବାର୍ତ୍ତା କରୁଥିଲେ । ଜନସେବକମାନଙ୍କ ଆଡ଼କୁ ସେ ଦୃଷ୍ଟି ନିକ୍ଷେପ କଲେ । ସେମାନେ କ୍ଲାନ୍ତ ହୋଇଥିଲା ପରି ଜଣାଗଲା; କିନ୍ତୁ ଦୀନାନାଥବାବୁ ସେ ସବୁ କଥା ଭାବୁ ନଥିଲେ । " କାମ କରି ଥକିବା ବା କାମ କରିବା ପାଇଁ ଥକିବା ତ ମନୁଷ୍ୟର ଧର୍ମ " ସେ କହନ୍ତି ।

"କ'ଣ ମିଷ୍ଟର ବାନାର୍ଜି ?"

"ସାର୍, ଅବସ୍ଥା ସେତେ ଭଲ ନୁହେଁ ।"

"ହାଇ ?" ସେ ଓଠରେ ଗୋଟାଏ ସିଗାର ଧରାଉ ଧରାଉ କହିଲେ " ମିଷ୍ଟର ଖାନ୍, ୟୋର ?"

"ଅଞ୍ଚଳ ଆଉ ସବୁ ଭଲ ତ; କିନ୍ତୁ ଆପଣଙ୍କ ବିପକ୍ଷମାନଂକର ପ୍ରଭାବ ଟିକିଏ..."

"ନନ୍‌ସେନ୍‌ସ୍‌ ..." ସେ ସାମାନ୍ୟ ଉତ୍ତେଜିତ ହୋଇ ଉଠୁଥିଲେ । ମୁଁ ଆଗେଇ ଯାଇ ଗୋଟାଏ ବିଦେଶୀ ଲାଇଟରରେ ତାଙ୍କ ସିଗାରରେ ଅଗ୍ନି ସଂଯୋଗ କରାଇଲି । ସିଗାରରେ ଗୋଟିଏ ଲମ୍ବା କଶ ଟାଣି କହିଲେ—"ମୁଁ ସେ ସବୁ ଶୁଣିବାକୁ ଚାହେଁନା । ଏନ ହାଓ ମୋତେ ନିର୍ବାଚନରେ ଜିତିବାକୁ ହେବ । ମିଷ୍ଟର ବାନାର୍ଜି ! ଦୁନିଆରେ ଇମାନଦାରୀ ଓ ଖରିଦ୍‌ଦାରୀ, ଏହି ଯୋଡ଼ିଏ ଇ କଥା । ଇମାନଦାରୀର କଥା ମୁହଁରେ ଆଉ ଖରିଦଦାରୀର କଥା ପକେଟରେ । ଦୁନିଆ ଆଜିକାଲି ମୁହଁ ଅପେକ୍ଷା ପକେଟ ବେଶୀ ଦେଖୁଛି । ଜନତା କଥା ହିଁ ଚିନ୍ତା କରନ୍ତୁ ନାହିଁ । ତା'ର ମୁହଁ ସର୍ବଦା ଖୋଲା ଥାଏ । ଖାଦ୍ୟ ଆମ ମୁଠିପାଖରେ ଅଛି । ମୁହଁ ଭର୍ତ୍ତି କରାଇ ଦିଅନ୍ତୁ, ଦେଖିବେ ଜନତା କେମିତି ଆପଣଙ୍କ ପଛେ ପଛେ ଚାଲିଛି ! ଆଉ ମିଷ୍ଟର ଖାନ୍ ! ମଗର ମାଛର ପେଟରୁ ବାହାରିବାକୁ ହେଲେ ତା ପେଟକୁ ଚିରିବା ହିଁ ନିୟମ । ଅଣ୍ଡର ଷ୍ଟୁଡ୍ ?"

ମୁଁ ଦେଖିଲି ସେ ଦୁହିଁଙ୍କ ମୁହଁରେ ନୂତନ ଚମକ ଖେଳି ଯାଉଥିଲା ଏବଂ ଦୀନାନାଥବାବୁ ଆଉ ଅଧିକ କିଛି ନ କହି ଉଠି ଠିଆ ହେଲେ ଏବଂ ନିର୍ବିକାର ଭାବରେ ଘରର ଭିତରକୁ ଚାଲି ଯାଉଥିଲେ ।

*0*

# ଆମେ ଭଦ୍ରଙ୍କର, ଭଦ୍ର ଆମର

□ ପ୍ରକାଶ ପୁରୋହିତ

ଭାରତୀୟ କ୍ରିକେଟ କଣ୍ଟ୍ରୋଲ ବୋର୍ଡ ଏବଂ ଛ'ଜଣ ଦଣ୍ଡିତ ଖେଳାଳିଙ୍କ ମଧ୍ୟରେ ଚାଲିଥିବା ବିବାଦ ଯେତେବେଳେ ନେହରୁ କପ୍ କ୍ରିକେଟ ଲାଗି ହଠାତ୍ ସମାପ୍ତ ହୋଇଗଲା ସେତେବେଳେ ପୁଣି ଜଣେ ଲୋକଏ ଲେଖି ଦେଲା ଯେ "କ୍ରିକେଟ ସଭ୍ୟ ଲୋକମାନଙ୍କର ଖେଳ ଅଟେ ।" ଖେଳାଳିମାନଙ୍କ ସମ୍ପର୍କରେ ତ ମୁଁ କହି ପାରିବ ନାହିଁ, ହେଲେ ଦେଖିଲାବାଲା ଓ ଶୁଣିଲାବାଲା ଏକଥା ନିଶ୍ଚିତ ଭୁଲେ ଭୁଲି ଯାଇଛନ୍ତି ଯେ କ୍ରିକେଟ ସଭ୍ୟ ଲୋକମାନଙ୍କର ଖେଳ ଅଟେ । ଏକଥା କହିବାର ମୂଳାଧାର ହେଉଛି ଯେ ମୁଁ ନିଜେ ମଧ୍ୟ ଏକଥା ଭୁଲି ଯାଇଥିଲି ଓ ଲୋକମାନଙ୍କ ସାଙ୍ଗରେ ବାଜି ଲଗେଇଥିଲି ଯେ ବୋର୍ଡ ଏବଂ ଖେଳାଳିଙ୍କ ଭିତରେ ଚାଲିଥିବା ବିବାଦ ସେଇମିତି ଚାଲିଥିବ, କେବେ ବି ତୁଟିବ ନାହିଁ । ଅଥଚ ଯେତେବେଳେ ସେ ଲେଖା ଖଣ୍ଡିକ ପଢି ପକେଇଲି ଯେ କ୍ରିକେଟ ସଭ୍ୟମାନଙ୍କର ଖେଳ ଅଟେ, ତତ୍କ୍ଷଣାତ୍ ମୋର ମନେ ପଡ଼ିଗଲା, ଆରେ ହଁ, କ୍ରିକେଟ ତ ସଭ୍ୟମାନଙ୍କର ଖେଳ ଅଟେ । ନେହରୁ ସନ୍ୟାସୀ ଖେଳାଳିମାନଙ୍କର ମଙ୍ଗଳ ହେଉ, ଉନ୍ନତରୁ ଉନ୍ନତ ହୁଅନ୍ତୁ, ଯିଏ ଟେଷ୍ଟ କ୍ରିକେଟରୁ ବିଦାୟ ନେବା ସାଙ୍ଗେ ସାଙ୍ଗେ ତା'ପର ଦିନରୁ ଲେଖକ ହୋଇଯାଆନ୍ତି ଓ ସୁଯୋଗ ମିଳିଲା ମାତ୍ରକେ ଧଡ଼ାଧଡ଼ ଲେଖିଦିଅନ୍ତି ଯେ କ୍ରିକେଟ ସଭ୍ୟମାନଙ୍କର ଖେଳ ଅଟଇ ।

ଆଜି ମୁଁ ସେଇ କାରଣଗୁଡ଼ିକୁ ଖୋଜିବାରେ ମୋ ମୁଣ୍ଡକୁ ପିଟି ଉଷୁମ କରି ଦେଇଛି ଯେ ସତରେ କ'ଣ କ୍ରିକେଟ ସଭ୍ୟମାନଙ୍କର ଖେଳ ? କାହିଁ ଏମିତି ନୁହେଁ ତ "ସାହିତ୍ୟ ସମାଜର ଦର୍ପଣ" କହିଲା ପରି "କ୍ରିକେଟ ସଭ୍ୟମାନଙ୍କର ଖେଳ" ବୋଲି ଖାଲି କହିବା ପାଇଁ କୁହାଯାଉଛି । କୁହାଯାଉଥିବ ଓ ଲୋକେ ଆଖିକାନ ବନ୍ଦ କରି ଏଇ କଥାକୁ ମାନି ନେଉଥିବେ । ମୁଁ ଉକ୍ତିଗୁଡ଼ିକୁ ନୁହେଁ ବରଂ ତା କାରଣ ଗୁଡ଼ିକୁ ଖୋଜି ଚାଲିଛି । କେଉଁ ଧଳା ପୋଷାକ ପିନ୍ଧା ବାଗ୍ଭରକ ଜଣକ ସବୁ ପ୍ରଥମେ "କ୍ରିକେଟ ସଭ୍ୟମାନଙ୍କର ଖେଳ" ବୋଲି କହିଥିଲା ? ଜର୍ଜ ବର୍ଣ୍ଣାର୍ଡ୍ ଶା ତ ଏହାକୁ ମୂର୍ଖ-ମାନଙ୍କର ଖେଳ ବୋଲି କହିଥିଲେ । ଏକଥାତ ସବୁ ମୂର୍ଖଙ୍କୁ ମାନେ ସବୁ କ୍ରିକେଟ-ପ୍ରେମୀଙ୍କୁ ଜଣା; ହେଲେ କ୍ରିକେଟକୁ ସଭ୍ୟ ଖେଳ ବୋଲି କିଏ କହିଲା ସେକଥା କହିବା ପାଇଁ ଜଣେ ହେଲେ ସଭ୍ୟ ପୁରୁଷ ବାହାରୁ ନାହାନ୍ତି । ଶେଷକୁ ଏମିତି କେହି

ପୁଅ ( ପୁଅ ଏଠାରେ ଇଂରେଜଙ୍କୁ କୁହାଯାଉଛି ) ତ ନିଶ୍ଚେ ଥିବ ଯିଏ ଏକଥା ପ୍ରଥମେ କହିଥିବେ । ନହେଲେ ଏକଥା ବୁଝିବାକୁ ହେବ ଯେ ସେତେବେଳେ କ୍ରିକେଟ ସମ୍ପର୍କରେ କୌଣସି ନିର୍ଦ୍ଦିଷ୍ଟ ଧାରଣା ନଥିଲା । ଅନ୍ୟ ଖେଳମାନଙ୍କ ସମ୍ପର୍କରେ ବି ଏମିତି କୌଣସି ସ୍ୱାତନ୍ତ୍ର୍ୟ କେହି କେବେ କହୁନାହିଁ ସେତେବେଳେ, କ୍ରିକେଟ ପାଇଁ ଏକଥା କହିବାର କି ଆବଶ୍ୟକତା ଥିଲା ? କାହିଁ, କେହି ତ କେବେ ଟେବୁଲ ଟେନିସ ଭଦ୍ର ବା ଅଭଦ୍ରଙ୍କର ଖେଳ ବୋଲି କହୁନାହିଁ ! ଶହେ ଥର ଗୋଟାଏ ମିଛକୁ ଦୋହରେଇଲେ ତାହା ସତରେ ପରିଣତ ହେଲ ନ୍ୟାୟରେ ବାରମ୍ବାର ସବୁବେଳେ କ୍ରିକେଟକୁ ଭଦ୍ରଲୋକଙ୍କ ଖେଳ ବୋଲି କୁହାଯାଉ ନାହିଁ ତ ? ଏହି ଉକ୍ତିର ତ କୌଣସି ନା କୌଣସି କାରଣ ତ ଥିବ ।

ସେତେବେଳେ ମୁଁ କୌଣସି ଗୋଟାଏ ବିଷୟରେ ସମାଧାନ କରି ପାରେ ନାହିଁ ସେତେବେଳେ ବିଶେଷଜ୍ଞମାନଙ୍କର ଶରଣକୁ ଚାଲିଯାଏ । ଏହାହିଁ ନିୟମ । ଏହି କାରଣରୁ ମୋ ଭଳିଆ ଲୋକମାନେ ବି ଏକ ବିଷୟରେ ବିଶେଷଜ୍ଞ ହୋଇ ଯାଆନ୍ତି ଯେ କେଉଁ ବିଷୟରେ କେଉଁ ବିଶେଷଜ୍ଞଙ୍କର ଶରଣ ନେବାକୁ ହେବ । ମୁଁ ଯାଇ ଖାଇନାଙ୍କ ଆଗରେ ଠିଆ ହୋଇଗଲି । କ୍ରିକେଟ ବିଷୟରେ ସେହି କେବଳ ଉନ୍ମୁକ୍ତ ବିଶେଷଜ୍ଞ ଯିଏ ତାଙ୍କ ଜୀବନରେ କେବେ ହେଲେ ନା ବଲ ନା ବ୍ୟାଟରେ ହାତ ମାରିଛନ୍ତି । ଏକଥା କହିବାର ଅର୍ଥ ନୁହେଁ ଯେ ସେ ଖାଲି କ୍ଷେତ୍ରରକ୍ଷଣ କର୍ମ ସମ୍ପାଦନ କରିଛନ୍ତି । ତାଙ୍କ ଗାଈ ବା ଛେଳିକୁ ଚରେଇବା ଛଡ଼ା ଆଉ କୋଉଥି ପାଇଁ ସେ ତାଙ୍କ ଜୀବନରେ କେବେ ହେଲେ ଖେଳ ପଡ଼ିଆରେ ଗୋଡ଼ ଦେଇ ନାହାନ୍ତି, ଆଉ ସେଇଥି ପାଇଁ ତାଙ୍କୁ ସମ୍ପୂର୍ଣ୍ଣ ଭଲ ବିଶେଷଜ୍ଞ ବୋଲି ମାନିବାକୁ ପଡ଼ୁଛି । ଖାଲି ସେତିକି ନୁହେଁ, ପଡ଼ିଆକୁ କାଳେ ଯିବାକୁ ପଡ଼ିବ ବୋଲି ଡରରେ ଖାଇନା ଛେଳି କି ଗାଈଟିଏ ମଧ୍ୟ ଜୀବନରେ ପୋଷି ନଥିବେ । ବିଶେଷଜ୍ଞ ହେବାକୁ ହେଲେ ତ କିଛି ତ୍ୟାଗ କରିବା ଦରକାର, ହୁଏତ ଖେଳାଳି ହେବା ପାଇଁ ତ୍ୟାଗ କରିବା ଅନାବଶ୍ୟକ । ଆଉ ମଧ୍ୟ ଖାଇନାଙ୍କର ମଧ୍ୟ ଏହି ଧାରଣା ଯେ ଖେଳାଳି ହେଲେ ତ୍ୟାଗ କଥା ନଦାରଦ, ଖାଲି ପ୍ରାପ୍ତି ହିଁ ପ୍ରାପ୍ତି । ଆଉ ତ୍ୟାଗ ରହିତ ଜୀବନର ଅବା କି ମୂଲ୍ୟ ?

ଖାଇନା ଏବଂ ତାଙ୍କ ବିଶେଷଜ୍ଞତା ଉପରେ ଆଉ କେତେବେଳେ ଆଲୋଚନା କରିବି । ମୁଁ ତ ଭଦ୍ରତାର ଅନ୍ୱେଷଣରେ ଥିଲି ଏବଂ ଖାଇନା ତାଙ୍କର ଖରହାସ୍ୟ ରକ୍ଷା କଲା ପୂର୍ବରୁ ପ୍ରଶ୍ନବାଣ ଛାଡ଼ି ଦେଲି । "ଖାଇନା ! କ୍ରିକେଟକୁ ଭଦ୍ରଲୋକଙ୍କ ଖେଳ ବୋଲି କାହିଁକି କହନ୍ତି ?"

" ଏଇଥି ପାଇଁ ଯେ ତାହା ଭଦ୍ରଲୋକଙ୍କ ଖେଳ " ଖାଇନା ଅଳୁଣା ଲାଲ ପରି ଥିରକିନା ପୁସ୍ କରିଦେଲେ ।

"ତାହା ହେଲେ ଅଉ ସବୁ ଖେଳ କଣ ଅଭଦ୍ରମାନଙ୍କର ?" ଏହାହିଁ ଥିଲା ମୋର ବାଉନ୍ସର୍ ।

"କାହିଁକି ନା ଅଉ ସବୁ ଖେଳ ବାଲା ତ ଏମିତିକା କୌଣସି ଘୋଷଣା କରି ନାହାନ୍ତି । ତେଣୁ ଏକଥା ମାନିନେବା ଉଚିତ ଯେ ବାକି ଖେଳ ସବୁ ଭଦ୍ର ଲୋକ-ମାନଙ୍କର ଖେଳ ନୁହେଁ ।" ଖାଇନା ହୁକ୍ କରିବାର ଚେଷ୍ଟା କଲେ କିନ୍ତୁ ବଲ୍ ପାଖରେ ପହଞ୍ଚି ପାରିଲେ ନାହିଁ ।

"ସଭ୍ୟ ଲୋକମାନଙ୍କ ଖେଳର ଚିହ୍ନ କ'ଣ" ଏହା ଥିଲା ଗୋଟିଏ ସାମାନ୍ୟ "ଲୋ— ଷ୍ଟ୍ରେଲେକ୍‌ଟେଷ୍ଟ ବଲ୍" ?

"ସେମାନଙ୍କ ବ୍ୟବହାର ଭଦ୍ରଲୋକ ପରି ହେବା ଉଚିତ, ଯେମିତି କ୍ରିକେଟ ଖେଳାଳିମାନେ ।" ଖାଇନା ରକ୍ଷାତ୍ମକ ଢଙ୍ଗରେ (ଡିଫେନ୍‌ସିଭ୍) ଖେଳିବାକୁ ଲାଗିଲେ ।

"କାହିଁକି ? କ୍ରିକେଟରେ ତ ଚୟନକର୍ତ୍ତାମାନଙ୍କୁ ଜୋକର ଆଉ କେଜାଣି କେତେ କ'ଣ କୁହାଗଲା, ଏଇଟା କୋଉ ଭଦ୍ରତା ଭଲା ?" ଗତିରେ ବେଶ ଚତୁର ଗୁଲିର ପରିବର୍ତ୍ତନ କରି ଯାଇଥିଲା ।

"ଯେତେବେଳେ ଟିମ୍‌ର ଖେଳାଳିମାନେ ବଛାଯାଇ ନଥାନ୍ତି ସେତେବେଳେ ଜୋକର କି କ'ଣ ସବୁ କୁହାଯାଇଥାଏ । ଆମେ ତ ଖେଳ ଓ ଖେଳ ପଡ଼ିଆର କଥା କହୁଛେ । ତା ବାହାରେ କିଏ କାହାକୁ କ'ଣ କହୁଛି ସେଥିରେ ଆମର କ'ଣ ଅଛି ? ଆଉ ଏହାହିଁ ତ ହେଉଛି କ୍ରିକେଟର ଭଦ୍ରତା । ପଡ଼ିଆ ଭିତରେ କେହି କାହାକୁ କିଛି କହି ପାରିବ ନାହିଁ ।" ଖାଇନାଙ୍କୁ ଏଇ ସଟ୍‌ରେ ଦୁଇ ରନ୍ ମିଳିଲା ।

"ପଡ଼ିଆ ଭିତରେ କି ସବୁ କ'ଣ ନ ହେଉଛି ଯେ ଜାଭେଦ ମିଆଁଦାଦ ଡେନିସ ଲିଲି ଉପରକୁ ବ୍ୟାଟ ଉଞ୍ଚେଇ ଥିଲା । ଆପଣ ସେ ଚିତ୍ର ନିଶ୍ଚୟ ଦେଖିଥିବେ ।" ଏଥରକୁ ସ୍ପିନ୍ ବୋଲିଙ୍ଗ ଆରମ୍ଭ ହୋଇଗଲା ।

"ହଁ ମୁଁ ଦେଖିଥିଲି । ଆଉ ସେହି ଚିତ୍ର ହିଁ ପ୍ରମାଣିତ କରୁଛି ଯେ କ୍ରିକେଟ ସଭ୍ୟମାନଙ୍କର ଖେଳ । ଭଦ୍ର ଲୋକଙ୍କର ଖେଳ ।" ଏ ଥିଲା ଏକ ଚମତ୍କାର ସଟ୍ ।

"କେମିତି ?" ମୁଁ ଦିଲୀପ ଭେଙ୍ଗସରକାର ହୋଇଗଲି । କିଛି ବୁଝି ପାରୁ ନଥିଲି ।

"କାଭେଦ ବ୍ୟାଟ ଉଠେଇ ଥିଲ ସତ, ମାତ୍ର ତ ନଥିଲ । ଏହାହିଁ ହେଉଛି କ୍ରିକେଟର ଭଦ୍ରତା । କ୍ରିକେଟ ଖେଳାଳି ଟିମ୍ ଉପରକୁ ଗୋଟାଏ ମାରିବ ସତ, ପଡ଼ିଆ ଉପରେ ଥେପ ପକେଇବ ବା ବଲକୁ ଫୁଟବଲ କରିଦେବ । ହେଲେ ଭୁଲ ବା ମନମୁଖୀ ସିଦ୍ଧାନ୍ତ ଲାଗି ଅମ୍ପାୟାରର ପ୍ରତି ଟିପ ଉଠେଇବ ନାହିଁ । ଆଙ୍ଗୁଠି ଉଠେଇବାର ଅଧିକାର ଏକମାତ୍ର ଅମ୍ପାୟାରର ଅଛି । ଆଉ ସେ କେବଳ ଚାହିଁଲେ ତାହା କରି ପାରିବ । ପଡ଼ିଆ ବାହାରେ ଯିଏ ଯେତେ ତମ୍ବୁତୋଫାନ କରୁ, ଯେତେ ହାତ ଉଠେଇବାକୁ ଚାହିଁବ ଉଠାଉ, ମାତ୍ରକ ପଡ଼ିଆ ଭିତରେ ସେ ଦାବୀ, ସେ କ୍ଷମତା ଆଉ କାହାର ନାହିଁ ।" ଗୋଟାଏ ଘର୍ ଖାଇ ବଲ ବାଉଣ୍ଡାରି ଆରପଟକୁ ଚାଲିଗଲା ନହେଲେ ଏଟା ପୂରା ଛକ୍କା ଥିଲ ।

ଲମ୍ବା ଖେଳରେ ମୁଁ ଥକି ଯାଇ ଥିଲି । ଖଜନା ଅଜାହୁଁ ! ବୋଲିଙ୍ଗ କରି ଚାଲିଥିଲେ । "ପୁଣି ସେଇ ଖେଳକୁ ଆମେ ଭଦ୍ରଖେଳ ବୋଲି ଜାଣୁ ଯାହାକୁ ସ୍ତ୍ରୀ ପୁରୁଷ ଉଭୟ ଖେଳି ପାରିବେ ଓ କୌଣସି କୁଣ୍ଠା ନ ରଖି ଦେଖି ପାରିବେ । ଟେବୁଲ ଟେନିସ୍, ଟେନିସ୍, ବ୍ୟାଡ଼ମିଣ୍ଟନ, ବାସ୍କେଟବଲ, ଫୁଟବଲ ଏସବୁ ଖେଳକୁ ଆଜି ମଧ୍ୟ ମହିଳାମାନେ ପସନ୍ଦ କରୁ ନାହାନ୍ତି । କ୍ରିକେଟ ଖେଳରେ ମହିଳା-ମାନଙ୍କର ଏମିତି ଭିଡ଼ ଆଉ କୌଣସି ଖେଳରେ ଦେଖିବାକୁ ମିଳେନାହିଁ । ଏଥିପାଇଁ ଯେ କେବଳ କ୍ରିକେଟରେ ଖେଳାଳି ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ଘୋଡ଼େଇ ରଖିଥାଏ, ବାକି ସବୁ ଅନ୍ୟ ଖେଳରେ ଅଧାପ୍ୟାଣ୍ଟ ଅଧା ବାନିଅନ୍ ପିନ୍ଧନ୍ତି, ଏବେ ଆପଣ କୁହନ୍ତୁ ଏଗୁଡ଼ିକ ଭଦ୍ରଲୋକ ପିନ୍ଧନ୍ତି ?" ଖଜନା ବଲକୁ ସମ୍ଭାଳି ନେଲେ ଓ ବୋଲିଙ୍ଗ ପାଇଁ ମୁଁ ବାଧ୍ୟ ହେଲି ।

"ହେଲେ ଏବକୁ ଓ୍ୱେଷ୍ଟ ଇଣ୍ଡିଜର କେତେକ ଫଟ ଖବର କାଗଜରେ ବାହାରିଛି, ସେଥିରେ ତ ଆମ ଖେଳାଳିମାନେ ଗାଧୋଇବା ବେଳର ଡ୍ରେସ୍ ପିନ୍ଧିଥିବାର ଦେଖା ଯାଉଛି । ସେ ଫଟ ଦେଖିଲେ ମନେ ହେବ ଯେ ସେମାନଙ୍କୁ କ୍ରିକେଟ ଖେଳିବାକୁ ପଠାଯାଇ ନାହିଁ, ବରଞ୍ଚ ପହଁରିବାକୁ ପଠେଇ ଦିଆ ଯାଇଛି ।

"ମୁଁ କହୁଛି ନା ! ସେ ଚାହିଁଲେ କାମିନୀଜନଙ୍କ ସହ ନାଚୁ ବା ଘଣ୍ଟା ଘଣ୍ଟା ଧରି ତାସ ଖେଳୁ, ଆମକୁ ସେଥିରୁ କ'ଣ ମିଳିବ ? ଆମେ ଖାଲି ପଡ଼ିଆର କଥା ଆଲୋଚନା କରୁଛେ । ଆଉ ସେଇଥି ପାଇଁ କ୍ରିକେଟ ସଭ୍ୟ ଲୋକମାନଙ୍କର ଖେଳ । ଖଜନା ପୁଣି ମୋତେ ଚମକେଇ ଦେଲେ, ତାହାଙ୍କୁ ମୁଁ ଆଉଟ ସ୍ପିଙ୍ଗର ବୋଲି ଖିଆଲ କଲି ସେ ପ୍ରକୃତରେ ଥିଲା ଇନକଟର ।

"ତାହାହେଲେ ଅନ୍ୟ ଖେଳାଳିମାନେ କାହିଁ କହୁ ନାହାନ୍ତି କାହିଁକି ? ସେମାନେ କହୁ ନାହାନ୍ତି ଯେ ସେମାନଙ୍କର ଖେଳ ମଧ୍ୟ ଭଦ୍ରଲୋକଙ୍କ ଖେଳ ? ବସ୍ତୁତଃ

ସେମାନେ ଏଯାଏଁ ସ୍ଥିର କରି ପାରି ନାହାନ୍ତି ଯେ ସେମାନଙ୍କ ଖେଳ ତାହାହେଲେ କ'ଣ ? ଏକ୍ଷେତ୍ରରେ କ୍ରିକେଟକୁ ବେନିଫିଟ ଅଫ ଡାଉଟ ମିଳିବ ନା ନାହିଁ ? ଭାଇନା ଆକ୍ରମଣାତ୍ମକ ଢଙ୍ଗରେ କହି ଗ୍ଲଲେ ।

କିନ୍ତୁ ମୁଁ ନ୍ୟାଟ ଧରି ସ୍ଥିରବାକ୍ ହୋଇଗଲି ।

"କିନ୍ତୁ କିନ୍ତୁ କରୁ ନୁହେଁ, ଯେଉଁକ ବୁଝେଇବା କଥା ବୁଝେଇ ଦେଲି । ଆଉ ଦେଶୀ ବଜର ବଜର କରନା । ନ ହେଲେ ଗୋଟାଏ କାନମୂଳରେ କସି ଦେବି ଯେ ଆଉ ସବୁ ଖେଳର ନାଁ ଭୁଲି ଯିବୁ । ଆଜି ଯାଏଁ ତ କେହି ଏ କଥାକୁ ଗୁଳେଞ୍ଜ କରି ନାହାନ୍ତି । ଆଉ ତୁ ଆସିଲୁ ଭଗା ପୁଚ୍ଛନେବାକୁ । ତୁ ଏମିତ କୋଉ ଗାଈର ଗୋବର କି ? ତୁ ଏଠୁ ଗଲୁ, ଯା ଯା ମୋ ମୁଣ୍ଡ ଚଟାପଟ ଗରମ ହୋଇଯାଏ । ଆଜି ଯେଉଁକ ପଚ୍ଚରିଲୁ, ପଚ୍ଚରିଲୁ । ଆଉ କେବେ କ୍ରିକେଟ ଭଦ୍ର ଲୋକମାନଙ୍କର ଖେଳ ନା ନାହିଁ ବୋଲି ପଚ୍ଚରିବୁ ନାହିଁ । ବୁଝିଲୁ ?" ଭାଇନା ପ୍ରସ୍ତୁତ କାଭେନ୍ଦ ମିଆଁ ଦାଦ୍ ପାଲଟି ଯାଇଥିଲେ । ଏହାହିଁ ଥିଲା ସଭ୍ୟଖେଳର ଲକ୍ଷଣ ଯେଉଁଥି ପାଇଁ ସେ ମୋତେ ଭଲରେ ଭଲରେ ଗ୍ଲ୍ତି ଦେଲେ । ଏଣୁ ମୁଁ ବାଧ୍ୟ ହେଲି ମାନିବାକୁ ଯେ କ୍ରିକେଟ ଭଦ୍ରଲୋକମାନଙ୍କର ଖେଳ ଅଟେ ଓ ରହିବ, ଅନ୍ତତଃ ଯେତେଦିନ ଯାଏଁ ଭାଇନାଙ୍କ ଭଳିଆ ଲୋକ ଅଛନ୍ତି ସେତେଦିନ ଯାଏଁ ରହିଥିବ । ଲଣ୍ଡନ ଦୋକାନରୁ ମୋଜା ଚୋରି କଲେ ବା କମିବାଣ୍ଡ ନେଇ କଳିକଜିଆ କରି ଅପର ପକ୍ଷକୁ ବାଡ଼େଇ ମାରିଦେଲେ ବି ସେ ସବୁ ଖେଳ ପଡ଼ିଆ ବାହାରର କଥା । ଖେଳ ପଡ଼ିଆ ବାହାରର ଘଟଣ ଅଘଟଣର କଳା କ୍ରିକେଟ ଖେଳର ଧଳା ରଙ୍ଗକୁ ଆଦୌ ସ୍ପର୍ଶ କରି ପାରିବ ନାହିଁ ।



# ମେଘାଗ୍ରହଣ

□ ବ୍ରହ୍ମ ଦତ୍ତ

ଅଞ୍ଜଳି ହାତରେ ଧରିଥିବା ବେଳରେ ଯେମିତି ପାଣି ଚହଲି ହେଉଥାଏ, ଠିକ୍ ସେମିତି ନବନର ଆଖିଡୋଳାଯୋଡ଼ାକ ଛିଏଣେଡେଣେ ଘୂରି ବୁଲୁଥାଏ । ଧଳା ହାପ୍‌ପ୍ୟାଣ୍ଟ ଓ ହାପ୍ ସାର୍ଟ ପିନ୍ଧି ପୁରୁଣା ଖବର କାଗଜ ଓ ଲୁଗାରେ ଗୁଡ଼ିଆ ହୋଇଥିବା ଖାଲି ପାଉଡ଼ର ଡବାଟାକୁ କାଖରେ ଜାବୁଡ଼ି ଧରି ସେ ଠିଆ ହୋଇଥାଏ । ନବନକୁ ସେରିବ୍ରାଲ ମେନିନ୍‌ଜାଇଟିସ୍ ହୋଇଥିଲା । ପନ୍ଦର ବର୍ଷ ବୟସରେ ମଧ୍ୟ ତାହାର ମସ୍ତିଷ୍କ ପାଞ୍ଚ ବର୍ଷର ପିଲା ପରି ଅବିକଶିତ ଅବସ୍ଥାରେ ଥିଲା । କଥା ବୁଝେ ନାହିଁ କି ବୁଝେଇ ନାହିଁ । ଶୈବ୍ୟା ଅପଲକ ଭାବରେ ଚାହିଁ ରହିଥିଲା ନବନ୍‌କୁ । ନବନ କିନ୍ତୁ ଶୈବ୍ୟାକୁ ଦେଖି ପାରୁ ନଥିଲା ।

ହଠାତ୍ ଛଗନଭାଇ ଘରେ ରେଡ଼ିଓ ବାଜି ଉଠିଲା । ସଙ୍ଗୀତର ଧ୍ୱନି ବର୍ଷାର ଫୁଆରା ପରି ଝରିଆସି, ସମଗ୍ର ବାତାବରଣରେ ଖେଳିଗଲା । ନବନ୍ ଡାହାଣ ହାତର ମୃଗମୁଦ୍ରା ତିଆରି କରୁଥାଏ । ତାହାର ଦୁଇ ଓଠ ଫାଙ୍କରେ ଏକ ଅଜ୍ଞାତ ଆନନ୍ଦର ରହସ୍ୟମୟ ସ୍ମିତ ହସ ଉକୁଟି ଉଠିଲା । ଆଖିଡୋଳା ଯୋଡ଼ିକ ନଭ ନୀଳରେ ପଡ଼ିରହିଥିବା ପରିତ୍ୟକ୍ତ ଡଙ୍ଗା ପରି ଧୀରେ ଧୀରେ ଦୋହଲିବାକୁ ଲାଗିଥାଏ । ଗୋଟାଏ ଗୋଡରେ ଦେହର ସମସ୍ତ ଭାର ଲଦି ସେ ବକପରି ଠିଆ ହୋଇ ରହିଥାଏ, ନୀରବରେ ।

ଦୁଆର ମୁହଁ ଚଉକାଠ ଉପରେ ବସିଥିଲା ଶୈବ୍ୟା । ପଛକୁ ଘୁଞ୍ଚିଯାଇ ଘର-କୋଣିଆ ଖୁଣ୍ଟରେ ପିଠିକୁ ଭରା ଦେଇ, ଗୋଡ ଦୁଇଟା ଆଗକୁ ଲମ୍ବେଇ ଆରାମରେ ବସି ରହିଲା ଏବଂ ଏକ ଲୟରେ ନବନକୁ ଲକ୍ଷ୍ୟ କରି ଚାଲିଲା । ନବନ କିନ୍ତୁ ଶୈବ୍ୟାକୁ ଦେଖୁ ନଥିଲା ।

ତର୍ଜନୀ ଉଠେଇ ଭୂଇଁ ଆଡ଼କୁ ନିର୍ଦ୍ଦେଶ କରି ହାତ ହଲେଇ ହଲେଇ ନବନ୍ ଏମିତି ଠାରିବାକୁ ଆରମ୍ଭ କଲା ସତେ ଯେମିତି ଶିକ୍ଷକ ଛାତ୍ରମାନଙ୍କୁ ପଢ଼େଇବାରେ ଲାଗିଛନ୍ତି । ମଝିରେ ମଝିରେ ବାଁ ହାତ ପାପୁଲିକୁ ଡାହାଣ ହାତରେ ବାଡେଇ ତାଳି

ବଜାଇ ଥିଲ, ଯେତେ ଯେମିତି ସେ ଗୋଟାଏ ବଡ ଗୁପ୍ତ କଥାର ରହସ୍ୟ ଜାଣି ପାରିଛି । ଏମିତି ଥରେ ତାଳି ମାରୁ ମାରୁ ତା' କାନ୍ଧରୁ ପାଉଡରର ଡବାଟା ଖସିଯାଇ ତଳେ ପଡ଼ିଗଲା । ଅଥଚ ସେଥିପ୍ରତି ସେ ମୋଟେ ଦୃଷ୍ଟି ଦେଲା ନାହିଁ । ଛଗନଭାଇଙ୍କ ଘରେ ରେଡ଼ିଓ ବନ୍ଦ ହୋଇଗଲା । ବବନର ଆଖିଡୋଳା ଯୋଡ଼ିକ ବନ୍ଧ୍ୟା ପାଣିରେ ଚନ୍ଦ୍ରମାର ପ୍ରତିବିମ୍ବ ପରି ଝିଲ୍ ମିଲ୍ ହୋଇ ଉଠିଲା ଏବଂ ତା କଣ୍ଠରୁ ଗୋଟାଏ ବାଟିଏ ଚିତ୍କାର ବାହାରିଗଲା ।

ଶୈବ୍ୟାର ମୁଣ୍ଡ ଭିତରେ ଝୁଂଟଙ୍କନା ଗୋଟାଏ ସାମାନ୍ୟ ଧ୍ୱନି ସୃଷ୍ଟି ହେଲା, ଯେମିତି କାନ୍ଥରେ ମରାହୋଇଥିବା ପିତ୍ତଳ ନାମଫଳକରେ ଲାଗିଥିବା ସ୍କ୍ରୁଟିଆ ଛୁଟିଗଲଣିଟା ଉଏ ଘୁଞ୍ଚେଇ ଦେଲା, ଟେକଟାକୁ ଦେଖେଇବା ପାଇଁ-ଇନ୍ । ସେ ସେଇମିତି ଗୁହିଁ ରହିଲା ବବନ ଆଡ଼କୁ । ବବନ ହାତ ଦୁଇଟା ପିଠି ଆଡ଼କୁ ନେଇ, ଦଶଟାଯାକ ଆଙ୍ଗୁଳିକୁ ଛନ୍ଦି ଗୋଟାଏ ବିରାଟ ବୃତ୍ତ ରଚନା କରି ଘୂରିବାକୁ ଆରମ୍ଭ କଲା । ଆଉ ତା ମୁହଁରୁ ବାହାରି ଚାଲିଲା ଅବୋଧ, ଅଜ୍ଞାତ, ଅସ୍ପଷ୍ଟ ଧ୍ୱନି ସବୁ ।

ଶୈବ୍ୟାର ଆଖି ଆଗରେ ସାରା ପୃଥିବୀଟା ଗୋଲାକାରରେ ଘୂରିବାକୁ ଲାଗିଲା । ଅଜ୍ଞାତ ଇଲାକାର ଅସାମାନ୍ୟ ନୀରବତା ଏକ ବିଚିତ୍ର ଧ୍ୱନିରେ ମୁଖର ହୋଇ ଉଠିଲା...ସାଏଁ ସାଏଁ ସାଏଁ । ପୃଥିବୀର କକ୍ଷରେ ଠିଆ ହୋଇଥିଲା ପରି ତ'ର ମନେ ହେଲା । ହଠାତ ଯେମିତି ତା'ର ଗୋଡ଼ ଖସିଗଲା ଓ ତଳକୁ ଖସିବାରେ ଲାଗିଲା ଗୋଟାଏ ଭୟଙ୍କର ଶୂନ୍ୟତା ଭିତରେ, ଭୂଖାନିକା ଭିତରେ ଗଭୀର ଅଞ୍ଚଳକୁ, ଖସି ଚାଲିଲା ତଳକୁ ତଳକୁ ।

"ବେବି !" ଝରକା ଦେଇ ଘର ଭିତରୁ ବୋଉ ଡାକିଲା ।

"ହଁ...ଯାଉଛି ।" ଶୈବ୍ୟା ଉଠି ଠିଆ ହେଲା ।

"ସଞ୍ଜ ହୋଇଯାଉଛି । ଘୁଉଲ ଦଇଟା ବାଛି ଦେଇ ପଢ଼ି ବସିବୁ ।" ବୋଉ ଏତକ କହି ଚାଲିଗଲା ।

□□□

ଯେଉଁ ନାରୀ ନିଜର ମୃତ ସ୍ୱାମୀଙ୍କୁ ଅନୁସରଣ କରି ଘରୁ ଶ୍ମଶାନକୁ ଅତି ଆନନ୍ଦମନରେ ଯାଏସେ ପ୍ରତି ପଦେପଦେ ଅଶ୍ୱମେଧ ଯଜ୍ଞର ଫଳଲାଭ କରିଥାଏ, ଏଥିରେ ସନ୍ଦେହ ନାହିଁ ।

ସାପୁଆ କେଳା ବଳପୂର୍ବକ ସାପକୁ ଗାତ ଭିତରୁ ବାହାର କରି ଆଣିଲା ପରି ସତୀ ନାରୀ ସ୍ୱାମୀଙ୍କୁ ଯମଦୂତଙ୍କ କବଳରୁ ଜୋରରେ ଛଡ଼େଇ ଆଣି ସ୍ୱର୍ଗକୁ ନେଇଯାଏ ।

ଶୈବ୍ୟା ସ୍ୱାମୀଙ୍କ କୌଶିକଙ୍କର ମୁଣ୍ଡକୁ କୋଳରେ ଲଗେଇ ଓଦାକଲା ଓ ଶେଷ ବାକ୍ୟଟି ତଳେ ରେଖାଙ୍କିତ କଲା—ସେ ମାତା ପିତା ତଥା ପତି ଧନ୍ୟ, ଯାହାଙ୍କ ଘରେ ପତିବ୍ରତା ସତୀ ସ୍ତ୍ରୀ ଜନ୍ମଗ୍ରହଣ କରୁଥାଏ, ସେସ୍ଥାନ ତୀର୍ଥ କ୍ଷେତ୍ର ପରି ପରମ ପବିତ୍ର ହୋଇଯାଏ । ଶୈବ୍ୟା ବହି ବନ୍ଦ କରି ଆଖି ବୁଜି ଦେଲା । କେଉଁ ଦୂର ଦେବାଳୟରେ ଘଣ୍ଟାଧ୍ୱନି ହେଲା ପରି ତାକୁ ବୋଧ ହେଲା ଏବଂ ସେ ବିଚଳିତ ହୋଇ ଆଖି ଖୋଲି ପକେଇଲା । ବହି ଖୋଲିଲା ଶୈବ୍ୟା ଓ ପଢ଼ିବାକୁ ଲାଗିଲା ।

ସତୀ ଶାଣ୍ଡିଲୀ । ପ୍ରତିଷ୍ଠାନପୁରରେ କୌଶିକ ନାମକ ଜଣେ କ ବ୍ରାହ୍ମଣ ବାସ କରୁଥିଲେ । ପୂର୍ବ ଜନ୍ମର ପାପକର୍ମ ହେତୁରୁ ତାଙ୍କୁ କୁଷ୍ଠ ହୋଇଯାଇଥିଲା । ତାଙ୍କ ପତ୍ନୀଙ୍କର ନାମ ଥିଲା ଶୈବ୍ୟା —ଅଣ୍ଡରଲାଇନ— ! କିନ୍ତୁ ଶାଣ୍ଡିଲ୍ୟଗୋତ୍ରରେ ଜନ୍ମ ନେଇଥିବା ହେତୁ ସେ ଶାଣ୍ଡିଲୀ ନାମରେ ପରିଚିତା ଥିଲେ । ସେ ଥିଲେ ପରମ ପତିବ୍ରତା ନାରୀ । ସ୍ୱାମୀ କୁଷ୍ଠରୋଗାକ୍ରାନ୍ତ ହେବା ସତ୍ତ୍ୱେ ବି ତାଙ୍କୁ ଦେବତାଙ୍କ ପରିପୂଜା କରୁଥିଲେ । ଦିନ ରାତି ସେ ସ୍ୱାମୀଙ୍କର ସେବାରେ ନିଜକୁ ନିମ୍ନୋଜିତ ରଖୁଥିଲେ । କୌଶିକ ଚାଲିବୁଲି କରି ପାରୁ ନଥିଲେ । ତଥାପି ଦିନେ ସେ ଶାଣ୍ଡିଲୀଙ୍କୁ ଅନୁରୋଧ କଲେ ଯେ ସେ ତାଙ୍କୁ ସହରର ସେଇ ବେଶ୍ୟା ପାଖକୁ ନେଇଚାଲୁ ଯାହାକୁ କିଛି ଦିନ ତଳେ ତାଙ୍କ ଘର ଆଗ ଦେଇ ରାସ୍ତାରେ ଯାଉଥିବାର ଦେଖିଥିଲେ । ଉକ୍ତ ବେଶ୍ୟା ଥିଲା ଅନନ୍ୟା ସୁନ୍ଦରୀ ଓ ନଗରର ବହୁପୁରୁଷ ଉକ୍ତ ବେଶ୍ୟାର ଅଙ୍ଗ ସଙ୍ଗ କାମନା କରୁଥିଲେ । ସ୍ୱାମୀଙ୍କର କଥା ଶୁଣି ସେହି ଧୈର୍ଯ୍ୟଶାଳିନୀ ପତିବ୍ରତା ପତ୍ନୀ ସ୍ୱାମୀଙ୍କୁ କାନ୍ଧେଇ ବେଶ୍ୟାଟିର ଘର ଆଡ଼କୁ ଚାଲିଲେ । ସେତେବେଳେ ରାତିକାଳ । ତା ଉପରେ ଆକାଶରେ ମେଘ ଛାଇ ରହିଥାଏ । ଚାରିଆଡେ ଘନ ଅନ୍ଧକାର । କେବଳ ମଝିରେ ମଝିରେ ବିଜୁଳି ଆଲୁଅରେ ବାଟ ଠଉରେଇବାକୁ ପଡ଼ୁଥାଏ । ବେଶ୍ୟା ଘରକୁ ଯିବା ବାଟରେ ନଗରର ଶୂଳି ପଡେ । ସେବେ ଏବେ ଚୌର୍ଯ୍ୟାପରାଧ ସନ୍ଦେହରେ ମାଣ୍ଡବ୍ୟ ନାମକ ବ୍ରାହ୍ମଣଙ୍କୁ ଶୂଳିରେ ଚଢ଼େଇ ଦିଆଯାଇଥିଲା । ଅନ୍ଧକାର ଭିତରେ ନ ଦେଖି ଯାଉଥିବାରୁ ଶୂଳୀ ପାଖ ଦେଇ ଗଲାବେଳେ ପତ୍ନୀ କାନ୍ଧରେ ବସିଥିବା କୌଶିକର ଝୁଲୁଥିବା ଗୋଡ଼ଟା ଶୂଳିରେ ବାଜିଗଲା । ଫଳରେ ଶୂଳିରେ ଚଢ଼ିଥିବା ମାଣ୍ଡବ୍ୟଙ୍କୁ ଭୀଷଣ କଷ୍ଟ ହେଲା । ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ ଯେ" ଯେଉଁପାପାତ୍ମା ନରାଧମ ମୋତେ ଏପରି କଷ୍ଟ ଦେଲା ସେ ଆଗାମୀ ପ୍ରଭାତର ସୂର୍ଯ୍ୟୋଦୟ ପୂର୍ବରୁ ପ୍ରାଣତ୍ୟାଗ କରିବ ।'

ଏହି ନିଷ୍ଠୁର ଅଭିଶାପକୁ ଶୁଣି ଶାଣ୍ଡିଲୀ ଅତ୍ୟନ୍ତ ବ୍ୟଥିତ ହୋଇ କହିଲା, "ଆଉ ସୂର୍ଯ୍ୟୋଦୟ ହେବ ନାହିଁ ।" ବାଇଗଣିଆ ହୋଇଯାଇଥିବା ଜାଭ ଉପରେ ପେନ୍‌ସିଲ

ମୁନକୁ ଘୃଣପଟେ ବୁଲେଇଁ ଓଠାକର ଗାଢ଼ ସ୍ୱରରେ ଗାରଟାଏ ଏଭିଁ ଧାଡ଼ି ପଡ଼ିଲା ଟାଣିଲା—"ଆଉ ସୂର୍ଯ୍ୟୋଦୟ ହେବ ନାହିଁ ।"

ସହସା ଶୈବ୍ୟା ଆଖି ଆଗରେ ପରସ୍ତେ ବହଳ କୁହୁଡ଼ି ଜମିଗଲା ପର ମନେ ହେଲା । ସେ ମୁଣ୍ଡ ଟେକ ଗ୍ରୀଲରୁ ଓହଳୁଥିବା ବଲ୍‌ବ୍‌କୁ ଲକ୍ଷ୍ୟ କରିବାକୁ ଲାଗିଲା । ଠିକ୍ ଯେମିତ ବଲ୍‌ବର ଆଲୁଅ କମି କମି ନିଶ୍ଚିହ୍ନ ହୋଇଗଲା । ଘନ ଅନ୍ଧକାର ଗ୍ୱରକଡ଼ରେ ଘନୀଭୂତ ହେବାକୁ ଲାଗିଲା । ମନେ ହେଲା ସତେ ଯେମିତ ତା'ର ନିଃଶ୍ୱାସ ରୁନ୍ଧ ହେଇ ଯାଉଛି । ସେ କ୍ରମଶଃ ଅଣନିଃଶ୍ୱାସୀ ହୋଇଗଲା ପରି ଅନୁଭବ କଲା । କମ୍ପାଉଣ୍ଡ ଭିତରୁ ବବନ୍‌ର ଅମାନୁଷିକ ଚିତ୍କାର ଶୁଭୁଥିଲା । ମୁଦ ହୋଇ ଆସୁଥିବା ଆଖିକୁ ଜୋରଜବର୍-ଦସ୍ତ ସମସ୍ତ ଶକ୍ତି ଲଗେଇ ଖୋଲିବାକୁ ଚେଷ୍ଟା କଲା ଶୈବ୍ୟା । ବହିର ପୃଷ୍ଠା ଓଲଟି ଯାଇଥିଲା । "କୁନ୍ତୀ"

ବାସୁଦେବ ଇସ୍ୱେ କ ପ୍ରକାର ମନ୍ତ୍ର ଦେଲେ ? କୁନ୍ତୀ ଚିନ୍ତିତ ହୋଇ ପଡ଼ିଲେ । ତାଙ୍କ ମନରେ କୌତୁହଳ ସୃଷ୍ଟି ହେଲା । ଭଗବାନ ସୂର୍ଯ୍ୟଦେବଙ୍କ ଉପରେ ଦୃଷ୍ଟି ପଡ଼ିଲା କ୍ଷଣି କୁନ୍ତୀ ବିଧିପୂର୍ବକ ଆଚମନ ମରି ମନ୍ତ୍ର ଜପ କରିବାକୁ ଲାଗିଲେ ଓ ସୂର୍ଯ୍ୟ-ନାରାୟଣଙ୍କୁ ଆହ୍ୱାନ କଲେ । କବଚକୁଣ୍ଡଳଧାରୀ ତେଜୋମୟ ପୁରୁଷ ରୂପରେ ସୂର୍ଯ୍ୟ-ଦେବ କୁନ୍ତୀ ସମ୍ମୁଖରେ ତତ୍‌କ୍ଷଣାତ ଉପସ୍ଥିତ ହୋଇଗଲେ । "ଭଦ୍ରେ । ତୁମ ମନସ୍କାମନା ପ୍ରକାଶ କର," ସେ କୁନ୍ତୀଙ୍କୁ କହିଲେ । କୁନ୍ତୀ ତାଙ୍କୁ ପ୍ରଣାମ କରି ପ୍ରାର୍ଥନା କଲେ,"। ଆପଣ ଆପଣଙ୍କ କ୍ଷେତ୍ରକୁ ପୁନଃ ପ୍ରସ୍ଥାନ କରନ୍ତୁ । ମୁଁ କେବଳ କୌତୁହଳ ପରବଶ ହୋଇ ଆପଣଙ୍କୁ ଆହ୍ୱାନ କରିଥିଲି । ଦୟାକରି ମୋର ଅପରାଧ କ୍ଷମା କରନ୍ତୁ । "ଭଗବାନ ଭାସ୍କର କହିଲେ " ଦେବତାମାନଙ୍କର ଆଗମନ କେବେ ହେଲେ ବ୍ୟର୍ଥ ହୁଏ ନାହିଁ । ତୁମର ମନକଥା ଜାଣି ମୁଁ ତୁମକୁ ଏକ କବଚ କୁଣ୍ଡଳ-ଧାରୀ ଅତୁଳ ପରାକ୍ରମୀ ପୁତ୍ରଦାନ କରିବ ।"ଏହା ଶୁଣି ଅତ୍ୟନ୍ତ ଭୟଭୀତ ହୋଇ କୁନ୍ତୀ କହିଲେ, "ମୁଁ ଅବିବାହିତା, ମୁଁ ଅନୂଢ଼ା" —ଅଣ୍ଡରଲାଇନ— "ମୋ ଉପରେ କେବଳମୋର ପିତାମାତାଙ୍କର ଅଧିକାର ଅଛି"-ଅଣ୍ଡର ଲାଇନ-"ଅନାଚାରରୁ ଶରୀରକୁ ରକ୍ଷା କରିବା ହିଁ ସଦାଚାର" -ଅଣ୍ଡର ଲାଇନ-"ମୋ ଅପରାଧକୁ କ୍ଷମା କରି ଦୟା କରି ଫେରି ଯାଆନ୍ତୁ ।" ଭଗବାନ ଭାସ୍କର ବୁଝେଇବାକୁ ଚାହିଁଲେ ଯେ ତାଙ୍କର କଥାକୁ ଗ୍ରହଣ କଲେ ମଧ୍ୟ କୁନ୍ତୀଙ୍କର କୁମାରୀତ୍ୱ ନଷ୍ଟ ହେବ ନାହିଁ । (ଅଣ୍ଡର ଲାଇନ) ସେ ସତୀ ହୋଇ ହିଁ ରହିବ —ଅଣ୍ଡର ଲାଇନ— ସେ ସତୀ ହୋଇ ହିଁ ରହିବ ଦୁଇଥର ଅଣ୍ଡର ଲାଇନ ।

ଶୈବ୍ୟା ପେନସିଲର ମୁନକୁ ଏତେ ଜୋରରେ ମାଡ଼ିକରି ଲେଖିଲା ଯେ ମୁନ ଶରୀର ତଳାରେ ବୁଡ଼ି ରହି ସେ ଟେବୁଲ ଡ୍ରୟରୁ ବ୍ଲେଡ଼ ବାହାର କଲା ଏବଂ ପେନସିଲ

କାଟିବାକୁ ଲାଗିଲା । ଛନକ ଗୁରୁଥର ବ୍ଲେଡ ମାରିଲା ପରେ ହଠାତ ପେନ,ସିଲଟା ତାହାର ହାତରୁ ଖସିଗଲା ଏବଂ ବ୍ଲେଡ଼ ଯାଇ ସିଧା ବାଜିଲା ତାହାର ବାଁ ହାତର ତର୍ଜନୀରେ । ଆଙ୍ଗୁଳିରେ ଆଘାତ ଲାଗିଲା । ରକ୍ତ ବାହାରି ଆସିଲା । ଶୈବ୍ୟା ତାହାର ହାତରେ କଟିଯାଇଥିବା ଆଙ୍ଗୁଳିଟାକୁ ଜୋରରେ ଚାପି ଧରିଲା । କଟା ଜାଗାଟା ଆହୁରି ଅଧିକ ମେଲା ହୋଇଗଲା ଓ ରକ୍ତ ମଧ୍ୟ ଧାର ହୋଇ ବୋହି ଆସିଲା । ଅଜାଣତରେ କଟା ଆଙ୍ଗୁଳିଟାକୁ ମୁହଁ ପାଖକୁ ଆଣି ସେ ଫୁଙ୍କିବାକୁ ଲାଗିଲା ଯେପରି ଯେମିତି ଆଙ୍ଗୁଳିଟା କଟି ଯାଇନାହିଁ, ପୋଡି ଯାଇଛି । ଫୁଙ୍କି ଫୁଙ୍କି ତାହାର ଧ୍ୟାନ ରକ୍ତ ଉପରେ କେନ୍ଦ୍ରୀଭୂତ ହେବାରେ ଲାଗିଲା । ଦେହଟା ଅବସନ୍ନ ହୋଇ ପଡ଼ିଲା ଓ ରାତିର ସଂପୂର୍ଣ୍ଣ ନୀରବତା ତା କାନରେ ସତେ ଯେମିତି ଜମାଟ ବାନ୍ଧିବାକୁ ଆରମ୍ଭ କଲା ।

ସତେ ଯେମିତି କେଉଁ ଦୂର ପାହାଡ଼ର ଗୁମ୍ଫା ଭିତର ବୀଣା ବାଜିବାର ସ୍ୱର ଭାସି ଆସୁଥିଲା । "ପ୍ରଥମ ରାତରେ ହିଁ ରକ୍ତ ବାହାରେ ।"

□ □ □

"ବହୁତ ରାତି ଯାଏଁ ପଢ଼ୁଥିଲୁ, ବେବି !" ଶୁଖାଇବାକୁ ତାରରେ ଓଦାଲୁଗା ପକାଉ ପକାଉ ବୋଉ କହିଲା ।

"ଆଁ ହଁ" ଠିଆ ଠିଆ ଖବର କାଗଜର ପୃଷ୍ଠା ଓଲଟେଇ ଚାଲୁଥିବା ଶୈବ୍ୟା ଗୋଟିଏ ଶ୍ରେଷ୍ଠ ଉତ୍ତର ଦେଲା ।

ବୋଉ ପ୍ଲାଷ୍ଟିକ ବାଲଟି ନେଇ ଚାଲି ଯିବାକୁ ବାହାରିଲା ବେଳକୁ ଝିଅକୁ ନିରେଖେଇ ଦେଖିବାକୁ ଲାଗିଲା । ଶୈବ୍ୟା ଜାଣିପାରି ଖବରକାଗଜର ପୃଷ୍ଠା ଭିତରେ ମୁହଁ ଲୁଚେଇ ନେଲା । ବାଲଟିଟା ହାତରେ ଧରି ବୋଉ ପାଖକୁ ଆସିଲା । ମାତ୍ର ଶୈବ୍ୟା ମୁହଁ ଟେକିବାର ସାମାନ୍ୟତମ ଚେଷ୍ଟା ମଧ୍ୟ କଲା ନାହିଁ ।

"କଣଟେ ହେଲା ଏମିତି ମୁଁ ବରାବର ଦେଖୁଛି ତୁ କେମିତି କେମିତି ଅଲଗା ହୋଇ ରହୁଛୁ, ସତେ ଯେମିତି କିଛି ହଜେଇ ଦେଲୁ ପରି । କ'ଣ ହେଉଛି ? କଥା କ'ଣ ? କ'ଣ ସବୁ ଏତେ ଚିନ୍ତା କରୁଛୁ କିଲୋ ?" ବୋଉ ଗୋଟାଏ କାନ୍ଧରେ ମୃଦୁସ୍ପର୍ଶ କରି ପଚାରିଲା ।

"କାହିଁ କିଛି ନାହିଁ ତ ।" ସେ ପୁଣି ମନ ଧ୍ୟାନ ଦେଇ ଖବର କାଗଜ ପଢ଼ିବାକୁ ଲାଗିଲା, "ବମ୍ବଇ ପାଖରେ ଗୋଟାଏ ଭାରତୀୟ ନୌକା ଦୁର୍ଘଟଣା ଗ୍ରସ୍ତ ।"

"କିଛି ନାହିଁ କ'ଣ ଲେ ? ମୁଁ କଣ କୁନି ଝିଅ ହୋଇଛି ? ନା ତୁ ଭାବୁଛୁ ମୁଁ ଆଖି ବନ୍ଦ ରଖିଛି, କିଛି ଜାଣି ପାରୁ ନାହିଁ । ଆଁ ହଁ ଆଁ ହଁ ! ତୁ ଏତେଦିନଯାଏ ସବୁବେଳେ କଥାବାର୍ତ୍ତା କରୁଥିଲୁ ? ବୋଉ ନିଜକୁ ଆୟତ୍ତ କରି ପାରିଲା ନାହିଁ । ଘରେ ଜଳ ଯାଉଥିଲା ବୋଉ । ରୋଷେଇ ଘରୁ ଧୂଆଁ ବାହାରୁଥିଲା । ଦୁଧ ଉଛୁଳି ଚୁଲିରେ ପଡ଼ିବାର ଗନ୍ଧ ଆସୁଥିଲା । ଫଣ ଫଣ ମୁହଁ କରି ବୋଉ ଧାଇଁଗଲା ଭିତର ପଟକୁ ।

ଉଚ୍ଚ ନ୍ୟାୟାଳୟ ଦ୍ୱାରା ଦଣ୍ଡାଦେଶ ବାତିଲ — ଶୈବ୍ୟା ପଢ଼ିଲା ଏବଂ ଖବର କାଗଜଟାକୁ ଭାଙ୍ଗି ଭୁଙ୍ଗି ଟେବୁଲ ଉପରେ ରଖିଦେଲା । ଚୌକିଟାରେ ସେ ବସି ପଡ଼ିଲା, ଯେତେ ସେମିତି ଅନନ୍ତ କ୍ଳାନ୍ତି ତାକୁ ମାଡ଼ି ବସୁଥିଲା । ଦୁଇ ହାତରେ ଆଖିକୁ ଘୋଡେଇ ପାସିଙ୍ଗ୍ କରିବାକୁ ଚେଷ୍ଟା କଲା, କିନ୍ତୁ ଅନ୍ଧାରକୁ ଜମା'ରୁ ସହି ପାରିଲା ନାହିଁ । ବିବ୍ରତ ଭାବରେ ଟେବୁଲ ଉପରେ ହାତ ଦୁଇଟା ରଖି ବାହାରକୁ ଚାହିଁବାକୁ ଲାଗିଲା । ଘର ସାମ୍ନା ବଗିଚାରେ ସୂର୍ଯ୍ୟଙ୍କର ପ୍ରଖର କିରଣ ବିଛେଇ ହୋଇଥିଲା । ସେ ଉଠିଲା ଏବଂ ଦାଣ୍ଡପିଣ୍ଡା ଧାରକୁ ଲାଗିଥିବା ଚଉତରା ଉପକୁ ଯାଇଁ ଠିଆ ହେଲା । ଚଉତରା ଉପରେ ଖରା ପଡ଼ିଥିଲା ଓ ପାଦତଳେ ଚଉତରା ତାତିଥିବାର ଅନୁଭବ କଲା ।

"ହ୍ୟାଲୋ !" ଛଗନ ଭାଇଙ୍କ ଝିଅ କୁମୁଦ ତରତର ହୋଇ ଯାଉଯାଉ କହିଲା ।

"ହ୍ୟାଲୋ ।" ଶୈବ୍ୟା ଅନିଚ୍ଛାସତ୍ତ୍ୱେ ଈଷତ୍ ହସି ଉତ୍ତର ଦେଲା ।

"ଆଜି କଲେଜ ନାହିଁ ?" କୁମୁଦ ଯାଉ ଯାଉ ପଚାରିଲା ।

"ଅଫ୍‌ଟର ଓ୍ୱାନ ଅଛି"

"ବାଇ···ବାଇ"

"ବାଇ" ଶୈବ୍ୟା ହାତ ହଲେଇଲା ଅତି ଧୀର ଭାବରେ । କୁସୁମ ଗେଟ ଖୋଲି ବାହାରକୁ ଗଲା ଏବଂ ପୋଷ୍ଟମ୍ୟାନ ପଶି ଆସିଲା ଭିତରକୁ । ଅତି ଉଗ୍ର ନଜରର ସହିତ ଚଉତରାର ଧାରରେ ଆସି ଠିଆହେଲା ଶୈବ୍ୟା ? "ମୋର ଚିଠି ଅଛିକି ।" ପାଖେଇ ଆସିଥିବା ପୋଷ୍ଟମ୍ୟାନକୁ ପଚାରିଲା ।

'କ'ଣ ନାଁ । ସେ···ସେ ସେବ୍ୟା ।"

"ହଁ ହଁ" ହାତ ବଢ଼େଇ ଅନ୍ତର୍ଦେଶୀୟଟାକୁ ନେଇ ନେଲା ।

"କାହାର ଚିଠି ?-–ଲୋକେନ୍ଦ୍ରର ?" ଚଉତରା ଉପରେ ପଛରେ ଆସି ବୋଉ ଠିଆ ହୋଇ ଥିଲା ।

ନାଁ, ବାପା ଦେଇଛନ୍ତି । ଶୈବ୍ୟା ଦୁଇ ଆଙ୍ଗୁଳିରେ ଅଠାଲାଗିଥିବା ପଟିଟାକୁ ଖୋଲି ଖୋଲି କହିଲା ।

"କ'ଣ ଲେଖିଛନ୍ତି ?"

"ଚିଠି ଆଗ ଖୋଲେ ।"

"ହଁ,ହଁ ଚାଲ ଘରକୁ ଚାଲ, ଆଜି କେତେ ଖର ଦେଉଛୁ ।" ବୋଉ ଗଳା ଝିଙ୍ଗାସି କହୁଥିଲା । ମୁଣ୍ଡଟେକି ଆକାଶକୁ ଦେଖିଲା । ଜଳୁଥିବା ସୂର୍ଯ୍ୟ ବଳୁଛି । ଜଳିଆ ଆଖିକୁ ବନ୍ଧ ପକାଇଲେ । ତରକି ଗଲା ପରି ଛାଟିପିଟି ହୋଇ ସେ ଘରଭିତରକୁ ଖୁବ ଜୋରରେ ପଶିଗଲା । ଆଖି ଆଗରେ ନେଳିଆ ନେଳିଆ ଚକ୍ର ସବୁ ଆଙ୍କି ହୋଇ ଯାଉଥିଲା । କାନ୍ଥକୁ ଖୁବ ଦେଇ ବୋଉ ଠିଆ ହୋଇ ରହିଲା ଚୁପ୍ ଚାପ । କିଛି ସମୟ ପରେ ଆଖିକୁ ପରିଷ୍କାର ଦେଖାଗଲା ବେଳକୁ ବୋଉ ଦେଖୁଥିଲା ଯେ ଶୈବ୍ୟା ମନକୁ ମନ ଚୁପ୍ ଚାପ ଚିଠି ପଢି ଲାଗିଛି । ସେ ଆଉ ରାଗ ସମ୍ଭାଳି ପାରିଲା ନାହିଁ । "ବଡ ପାଟିରେ ପଢିବାକୁ କ'ଣ କଷ୍ଟ ଲାଗୁଛି ?" ସେ କହିଲା ।

ଶୈବ୍ୟା ଚିଠିଟା ମଝିରୁ ଦୁଖଣ୍ଡ କରି ବୋଉକୁ ବଢେଇ ଦେଲା । ବୋଉ ହାତେ ଯେମିତି ଚିଠିଟା ଝିଙ୍କି ନେଲା ତା'ହାତରୁ । ମୁହୂର୍ତ୍ତକ ପାଇଁ ସେ ଶୈବ୍ୟାକୁ ଗାରଡେଇ କରି ଚାହିଁଲା । କିଛି କହିବ କହିବ ହେଲା । କିନ୍ତୁ କହିଲା ନାହିଁ । ଚିଠି ଖୋଲି ପଢିବାକୁ ଆରମ୍ଭ କଲା ।

ଶୈବ୍ୟାର ମନେହେଲା ଯେମିତି ଏ ଦୃଶ୍ୟ ସହିତ ସେ ଆଗରୁ ପରିଚିତ; ଆଗରୁ କେଉଁଠି ଦେଖିଛି । ମନେ ପଡ଼ିଲା ସତେ ଯେମିତି କିଏ ଜଣେ ବାଟରେ ଯାଉ ଯାଉ କାହାକୁ ରାସ୍ତାର ନାଁ ପଚାରିବାକୁ ଚାହୁଁଥିଲା ମାତ୍ର ରାସ୍ତାର ନାଁ ଜଣେଇବା ପାଇଁ ମରାହୋଇଥିବା ସାଇନ୍‌ବୋର୍ଡ଼ ଉପରେ ନଜର ପଡ଼ିଗଲାରୁ ଚୁପ୍ ଚାପ ନିଜ ବାଟରେ ଚାଲିବାକୁ ଲାଗିଲା ।

*□*

ବ୍ରହ୍ମା କନ୍ୟାକୁ ଆଶୀର୍ବାଦ ଦେଇ ମହର୍ଷି ମେଧାତିଥିଙ୍କୁ କହିଲେ, "ମୁନେ ! ଏବେ ଅରୁନ୍ଧତୀକୁ ଶିକ୍ଷା ଦେବାର ସମୟ ଉପଗତ । ଏଣୁ ଏବେ ତାକୁ ସତୀ ସାଧ୍ୱୀ ସ୍ତ୍ରୀମାନଙ୍କ ପାଖରେ ରଖି ଶିକ୍ଷା ଦେବା ଆବଶ୍ୟକ । କନ୍ୟାମାନଙ୍କର ଶିକ୍ଷା ପୁରୁଷ-ମାନଙ୍କ ଦ୍ୱାରା ହୋଇ ପାରିବ ନାହିଁ । ସ୍ତ୍ରୀମାନେ ହିଁ ସ୍ତ୍ରୀମାନଙ୍କୁ ସମୁଚିତ ଶିକ୍ଷା ଦେଇ ପାରିବେ । ତୁମେ ତୁମର କନ୍ୟାକୁ ବହୁଲା ଏବଂ ସାବିତ୍ରୀଙ୍କ ପାଖରେ ରଖ । ସେ ଯଥାଶୀଘ୍ର ବିଦ୍ୟାବତୀ ଓ ଗୁଣବତୀ ହୋଇ ପାରିବ । ବ୍ରହ୍ମାଙ୍କର ଆଦେଶ ଶିରୋଧାର୍ଯ୍ୟ

କରି ମେଘାତିଥି ଅନୁରୂପ ଭାବରେ କାର୍ଯ୍ୟ କଲେ । ସାତ ବର୍ଷ ପୂର୍ଣ୍ଣ ହୋଇ ଯାଆନ୍ତେ ସାବିତ୍ରୀଙ୍କର ଅନୁରୋଧକ୍ରମେ ମେଘାତିଥି ଅରୁନ୍ଧତୀଙ୍କର ବିବାହ ନିମିତ୍ତ ପ୍ରଯତ୍ନ କଲେ । ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱରଙ୍କ ଉପସ୍ଥିତିରେ ମହର୍ଷି ବଶିଷ୍ଠ ଅରୁନ୍ଧତୀଙ୍କର ପାଣିଗ୍ରହଣ କଲେ ।

ଏକଦା ସ୍ତ୍ରୀମାନଙ୍କର ପାତିବ୍ରତ୍ୟ ଧର୍ମ ସମ୍ପର୍କରେ ଜାଣିବା ପାଇଁ ସୂର୍ଯ୍ୟ, ଇନ୍ଦ୍ର ଏବଂ ଅଗ୍ନି ତିନିଦେବତା ଅରୁନ୍ଧତୀଙ୍କ ପାଖକୁ ଗଲେ । ଦେବତା ଅରୁନ୍ଧତୀଙ୍କ ପାଖକୁ ଗଲେ । ଅଣ୍ଡର ଲାଇନ— ।

ସେତେବେଳେ ପାଣି ଆଣିବା ପାଇଁ ମାଠିଆ ଧରି ଅରୁନ୍ଧତୀ ଯାଉଥିଲେ । ଦେବତାମାନଙ୍କୁ ଦେଖି ସେ ଅଟକିଲେ ଏବଂ ନମସ୍କାର କରି ପଚାରିଲେ; "ଦୟାକରି ଆପଣମାନଙ୍କର ଆଗମନର ଉଦ୍ଦେଶ୍ୟ କଣାନ୍ତୁ ।" ଦେବତାମାନେ କହିଲେ; "ଆମ୍ଭମାନଙ୍କ ମନରେ ଗୋଟାଏ ପ୍ରଶ୍ନ ଉଠିଛି, ଆମେ ତାହାର ସମାଧାନ ପାଇଁ ଆପଣଙ୍କ ନିକଟକୁ ଆସିଛୁ ।" 'ସେ କହିଲେ; "ଆପଣମାନେ ଅଳ୍ପ ସମୟ ପାଇଁ ବିଶ୍ରାମ କରନ୍ତୁ । ତା' ଭିତରେ ମୁଁ ଏହି ମାଠିଆକ ପାଣି ନେଇ ଆସୁଛି ।"

ଦେବତାମାନେ କହିଲେ, "ଦେଖ ! ଆମେ ଆମର ମହିମା ବଳରେ ମାଠିଆକୁ ଏଇଠି ଭରି ଦେଇ ପାରିବୁ ।" ସୂର୍ଯ୍ୟଦେବ ନିଜର ସମସ୍ତ ଶକ୍ତି ଖଟାଇଲେ ମାତ୍ର ମାଠିଆର ଏକଚତୁର୍ଥାଂଶରୁ ଅଧିକ ଜଳ ଭରି ପାରିଲେ ନାହିଁ । ଇନ୍ଦ୍ର ଏବଂ ଅଗ୍ନି ଉଭୟ ନିଜ ନିଜର ସମସ୍ତ ଶକ୍ତି ଉପଯୋଗ କରି ମାତ୍ର ଏକ ଏକ ଚତୁର୍ଥାଂଶ ପୂର୍ଣ୍ଣ କରିବାକୁ ସମର୍ଥ ହେଲେ । ବାକି ଏକ ଚତୁର୍ଥାଂଶ ତିନିଜଣଯାକ ଦେବତା ମିଶିକରି ଯେତେ ଚେଷ୍ଟା କଲେ ମଧ୍ୟ ପୂର୍ଣ୍ଣ ହୋଇ ପାରିଲା ନାହିଁ । ସେଇଠୁ ଅରୁନ୍ଧତୀ ସତୀଧର୍ମର ମହତ୍ତ୍ୱ ବର୍ଣ୍ଣନା କଲେ ଏବଂ ମାଠିଆର ଅବଶିଷ୍ଟ ଏକ ଚତୁର୍ଥାଂଶ ଭକ୍ତି ମହିମା ବଳରେ ପୂର୍ଣ୍ଣ କରାଇଲେ । —ଅଣ୍ଡର ଲାଇନ— ଯେଉଁଠୁ ଠାରୁ କରାଇଲେ ପର୍ଯ୍ୟନ୍ତ ବ୍ରାକେଟ ଏବଂ ପୁଣି ଆଉ ଏକ ଅଣ୍ଡର ଲାଇନ୍ ।

ଦେବତାମାନଙ୍କୁ ସେମାନଙ୍କ ପ୍ରଶ୍ନର ଉତ୍ତର ମିଳିଗଲା ଏବଂ ସେମାନେ ଅରୁନ୍ଧତୀଙ୍କ ପାଦତଳେ ମୁଣ୍ଡିଆ ମାରି ନିଜ ନିଜ ଲୋକକୁ ବାହୁଡ଼ି ଗଲେ । ପାଦତଳେ ମୁଣ୍ଡିଆ ମାରି—ଅଣ୍ଡର ଲାଇନ । ଶୈବ୍ୟା ମୁଣ୍ଡ ଟେକିଲା । କାନ୍ଥରେ ଅନ୍ଧାରର ଛାଇ ଚିହ୍ନିତ ହୋଇଥିଲା । ଟେବୁଲ ଲ୍ୟାମ୍ପର ଆଲୁଅ କେବଳ ଟେବୁଲ ଉପରେ ସୀମିତ ଥିଲା ।

"ତୋର ପରୀକ୍ଷା ହେବାକୁ ଆହୁରି ଅନେକ ଦିନ ଅଛି ନା ।" ଶୈବ୍ୟା ଚମକି ପଡ଼ି ପଛକୁ ବୁଲି ଚାହିଁଲା । "ତୁ ଏମିତି ଚୁପ୍‌ଚାପ ଆସୁଛୁ ଯେ" ସେ କହିଲା ଏବଂ ତା'ର କଣ୍ଠସ୍ୱରରେ ସେ ନିଜେ ଆଶ୍ଚର୍ଯ୍ୟ ହୋଇଗଲା । ସତେ ଯେମିତି ତା'ର ଗଳାରେ କ'ଣ ହୋଇ ଯାଉଥିଲା ।

"ତାହେଲେ ତୁ କ'ଣ କହୁଛୁ ମୁଁ ବାଜା ବଜେଇ ଯିବା ଆସିବା କରିବ ?" ବୋହୂର ଚେହେରା ହସିଲେ କେତେ ସୁନ୍ଦର ଦେଖାଯାଉଛି ? ଶୈବ୍ୟା ଭାବିଲା । "ତୁ କହୁଲୁ ନାହିଁତ କେବେ ତୋର ପରୀକ୍ଷା ହେବ ?"

"ଆଉ ଦଶ ଦିନ ମାତ୍ର ଅଛି ।"

"ତାହା ହେଲେ ଏବେ ଏତେ ପଢ଼ାପଢ଼ି କାହିଁକି କରୁଛୁ । ଆଜି ମଧ୍ୟ କଲେଜ ଗଲୁ ନାହିଁ ?"

"ଆଜି କଲେଜରେ ସେମିତି କିଛି ବିଶେଷ କ୍ଲାସ ନଥିଲା । ମୁଁ ଭାବିଲି ଘରେ ବସି ନୋଟସ କରିବି ।" ଶୈବ୍ୟା ଏବେ ଖାଲି ତା କଣ୍ଠସ୍ୱର ନୁହେଁ ମସ୍ତିଷ୍କର କାର୍ଯ୍ୟକାରୀତା ଦେଖି ଆଶ୍ଚର୍ଯ୍ୟ ହେଲା । ତା' ପରେ ସେ ଚକିତ ହୋଇ ପଡ଼ିଲା ଯେ ବୋହୂର ଆଖି ଟେବୁଲ ଉପରେ ଖୋଲା ହୋଇ ପଡ଼ିଥିବା ବହି ଉପରେ ଯେମିତି ପଡ଼ି ନଥା'ଏ । ସେ ଚୌକିରୁ ଉଠି ଠିଆ ହେଲା ।

"ପଢ଼, ପଢ଼ ମୁଁ ଯାଉଛି । ହେଲେ ଏତେଠୁ ଏତେ ପରିଶ୍ରମ କାହିଁକି ? ଜଲଦି ଶୋଇ ପଡ଼ ।" ବୋଲି ଚାଲିଗଲା । ଶୈବ୍ୟା ସୁରେଇରୁ ଗିଲାସେ ପାଣି କାଢ଼ିଲା । ପାଣି ଗିଲାସକୁ ଧରି ପୁଣି ଚୌକି ଉପରେ ବସି ପଡ଼ିଲା ଓ ଗ୍ଲ' ପିଇଲା ପରି ଟ୍ରେଟ ଟ୍ରେଟ ଢୋକ ଢୋକିବାକୁ ଲାଗିଲା । ସତେ ଯେମିତି ସେ ପାଣି ପିଉ ନଥିଲା, ବରଂ ଜିକଲା ପରି ପାଣି ଢୋକକୁ ସେ ସମ୍ପୂର୍ଣ୍ଣ ଢଙ୍ଗି ଭିତରେ ଗଳେଇ ଦେବାକୁ ଚେଷ୍ଟା କରୁଥିଲା ।

□ □ □

'ଦଶ ଦିନ ଦିନ ହେଲା କଲେଜ କାହିଁକି ଯାଉନୁ ?" ହାତରେ ଧରିଥିବା ବହିଟିକୁ ପଲଙ୍କ ଉପରେ ଥୋଉ ଥୋଉ ଅମ୍ମା ପଚାରିଲା, 'ଖାଣ୍ଡା କହୁଥିଲା ବୋଧହୁଏ ତୋ ଦେହ ଖରାପ ହେଇଛି ।"

'ସେ ଆସିଲା ନାହିଁ ?" କେଜାଣି କାହିଁକି ଶୈବ୍ୟା ଅମ୍ମା ଆଡ଼କୁ ମୁହଁ ଟେକି ଆଖି ମିଳେଇବାକୁ କଷ୍ଟକର ମନେ କଲା ।

ଗୋଟାଏ କେଉଁ ହେଲବେଦନକୁ ଆଜି ତାର ଯିବାର କଥା । ଲାଷ୍ଟ ପିରିୟଡ଼ ମଧ୍ୟ ଆଟେଣ୍ଡ କଲା ନାହିଁ । ଲମ୍ବା ବେଞ୍ଚ ଉପରେ ଅସହାୟ ମୁଣ୍ଡଟା ଗୋଟାଏ ପାଇଭେଟର କଣ୍ଢା ପରି ଘୂରେଇ କରି କହିଲା ଓ କୋଠରୀରେ ପଡ଼ିଥିବା ଏକମାତ୍ର ଚୌକି ଉପରେ ବସିଗଲା ।

ଶୈବ୍ୟା କ୍ଷଣକ ଲାଗି ପଲଙ୍କ ପାଖରେ ଠିଆ ହୋଇ ରହିଲା, ପୁଣି ତାପରେ ଧୀରେ ବୁଲି ଯାଇ ଟେବୁଲ ଉପରେ ଚୌକିକୁ ଲାଗି ବସି ପଡ଼ିଲା ।

ଦେହ ଭଲ ଅଛି ତ ? ଅସ୍ମା ମଝି ଆଙ୍ଗୁଳିରେ ଶୈବ୍ୟାର ଚିବୁକକୁ ଟେକି ମୁହଁକୁ ମୁହଁ ମିଳେଇ ପଚାରିଲା ।

"ହୁଁ"

"କିନ୍ତୁ ତୁ ଭାରି ଶୁଖିଲା ଶୁଖିଲା ଦିଶୁଛୁ ।"

"ଆଚ୍ଛା ?" ଶୈବ୍ୟା ମୁହଁରେ କୃତ୍ରିମ ହସ ଖେଳାଇ ଶ୍ଳେଷଟିଏ ପକେଇ କହିଲା

"ହ୍ଲ ଢ଼ିଲା ହୋଇ ଯାଇଛୁ ନା କ'ଣ ?" ଅସ୍ମା ଠୋ ଠୋ ହୋଇ ହସି ପଚାରିଲା । "ମୋ ମୁହଁକୁ କ'ଣ ଦେଖୁଛୁ; ଯା ଦର୍ପଣରେ ନିଜ ମୁହଁ ଦେଖିବୁ ।"

"କାହିଁକି ମୋର କ'ଣ ହୋଇଛି କି ?" ଶୈବ୍ୟା କହିଲା ଓ ନିଜ ଚେହେରା ବୁଲେଇ ନେଲା । ଝରକା ଦେଇ ଘର ବାହାରର ଦୃଶ୍ୟ ଦେଖିବାକୁ ଲାଗିଲା । ବାହାର ପଡ଼ିଆରେ ଠିଆ ହୋଇଥିବା ଏକମାତ୍ର ନଡ଼ିଆଗଛର ଗଣ୍ଡିରେ ହାତ ଦେଇ ବବନ ଆକାଶ ଆଡ଼କୁ ଠିଆ ହୋଇ ଦେଖୁଥିଲା ।

"ତୋର କିଛି ହେଲା ଭଳିଆ ଦିଶୁ ନାହିଁ ଯେ," ଅସମା ଥଟ୍ଟା କରି କହିଲା; "କିନ୍ତୁ ଆଖି ତଳେ ମାନେ ଦୀପ ତଳେ କିଛି କିଛି ଅନ୍ଧାର ସ୍ପଷ୍ଟ ବାରି ହୋଇ ଯାଉଛି । ଆଚ୍ଛା କହତ ଭଲା; ଏଇ ଦୁ' ଚାରି ଦିନ ଭିତରେ ତୋ ଫିଆଁସି ଆସି ନାହିଁ ତ ?"

"ତୁ ଭାରି ବଦମାସୀ କରି ଶିଖିଲୁଣି" ଶୈବ୍ୟା କୃତ୍ରିମ କ୍ରୋଧ ପ୍ରକାଶ କଲା ଓ ପୁଣି ହସିବାକୁ ଚେଷ୍ଟା କଲେ ମଧ୍ୟ ହସ ଉକୁଟି ଉକୁଟି ମରିଗଲା ।

ଅସମା ଠୋଠୋ କରି ହସିବାକୁ ଲାଗିଲା । "ଏଇ ବୟସରେ ଦେହ ଖରାପ ହେବାର ଏଇ ଏକମାତ୍ର କାରଣ ।"

ତୋର ତାହାହେଲେ ବେଶ୍ ଅନୁଭବ ହୋଇଛି । ଶୈବ୍ୟାର ଓଠରେ ପୁଣି ଧୀରେ ହସ ଚହଟି ଚହଟି ମିଳେଇଗଲା । କିନ୍ତୁ ବିନା ବାଧାରେ ଅସମା ସେମିତି ହସି ଚାଲିଥିଲା ।

ଅସ୍ମା ହସର ଝରଣା ବିନା ବାଧାରେ ଝରି ଚାଲିଥିଲା । ଟେବୁଲ ଧାରରେ ଶୈବ୍ୟାର ହାତ ମୁଠାଟା କ୍ରମଶଃ କଠିନ ହୋଇ ଉଠୁଥିଲା । ଘରର ବତାଶ ଦବି ଦବି ଗଲା ପରି ତା'ର ମନେ ହେଲା । "ଆଚ୍ଛା, ଏଇଠି ବସେଇ ରଖିବୁ ନାଁ । ଫାଇଭ୍ ଗାର୍ଡେନ ଆଡ଼େ ବୁଲେଇ ନେବୁ ?" ହସ ରୋକିବାକୁ ଚେଷ୍ଟା କରୁ କରୁ ଅସ୍ମା ପଚାରିଲା ।

"ଏଇଠି ବସି ଗହଳି ଚହଳି ଭିତରେ କୁଆଡ଼େ ଯାଇ ବୁଲିବୁ ?" ଶୈବ୍ୟା ଗୋଟାଏ ଦୀର୍ଘ ଶ୍ୱାସ ଟାଣି କହିଲା ।

ନାଁ । ବାବା ନାଁ । । କେତେ ହୋଇ ଯିବ । ମୁଁ ଘରେ କହିକରି ଆସିଥିଲି ଯେ ଅଳ୍ପ ସମୟ ପାଇଁ ତୋ ପାଖକୁ ଯାଉଛି ।" ଅପୁ । ଉଠି ଠିଆ ହେଲା ।

"ଆଜିଲେ ନହେ । ସ୍ବ' କେପେ ଯିଇକରି ଯିବୁ ।"

"ନାଁ, ଆଉ ଏବେ । କାଲି କଲେଜ ଆସିବୁ ନା ?"

"ପରବାପତ୍ରେ" ଚଳକୁ ମୁହଁ ପୋତି ଶୈବ୍ୟା ଉତ୍ତର ଦେଲା ।

ଘର ଭିତରୁ ଆସି ଅପୁ । ପଦାକୁ ଆସିଲା । ଦାଣ୍ଡ ଦୁଆର ଯାଏଁ ଶୈବ୍ୟା ବଳେଇ ଦେବାକୁ ଆସିଲା ତାଙ୍କରେ । ଅପୁ । ଶୈବ୍ୟାକୁ ନଇଁପଡ଼ି ଗୁହିଁ ପଚାରିଲା, "କାଲି କ'ଣ ଦେଇବ ତୋ'ର ?"

"କିଛି ନାହିଁ ଭ...ଏମିତି ...ଦେହ ଛିଜାଏ ପଛରେ କହିବି ।" "ଆରେ ! ଅଚ୍ଛା, ଅଚ୍ଛା ଗୁଡ଼ ବାଇ" ଅଟ୍ଟାକରି କହି କହି ସେ ଗ୍ଲଲିଗଲା ।

"—ବାଇ—"ଶୈବ୍ୟା ତଳ ଓଠକୁ ଦାନ୍ତରେ ଚ୍ଚପିବାକୁ ଚେଷ୍ଟାକଲା । ଅପୁ । ଚ୍ଚାଲିଗଲା, ଶୈବ୍ୟା କିଛି ସମୟ ସେଇଠି ଠିଆ ହୋଇ ରହିଲା । ସେ ଅପୁର ଯିବା ବାଟକୁ ଦେଖୁଥିଲା କିନ୍ତୁ କିଛି ଦେଖି ପାରୁ ନଥିଲା । ପଛକୁ ବୁଲି ଘର ଭିତରକୁ ଗ୍ଲହିଁଲା ଓ ଚବୁତରା ଉପରେ ଯାଇ ବସି ପଡ଼ିଲା । ସାମ୍ନା ପଡ଼ିଆ ଉପରେ ସନ୍ଧ୍ୟା ନଇଁ ଆସୁଥିଲା ଜଣ ଦୁଇ ଜଣ ଗୁେଟ ଗୁେଟ ପିଲା କାଚ ଗୁଲି ଖେଳୁଥିଲେ । ଗୋଟିଏ ନ'ଦଶ ବର୍ଷର ଝିଅ ଛୋଟିଆ ଚୌକିଆ ସାଇକେଲ ଚଲଉ ଥିଲା । ତାର ଯାଆଁଳା ଭାଇ ଠିଆ ହୋଇ ଅପେକ୍ଷା କରୁଥିଲା ତା'ର ପାଳି ଆସିବାକୁ ଓ ମନେ ମନେ ଉଦ୍‌ଗ୍ରୀବ ହୋଇ ଉଠୁଥିଲା । ମୁହଁ ଉଠେଇ ସାରା ପଡ଼ିଆଟାକୁ ଥରେ ଦେଖି ନେବାକୁ ଚେଷ୍ଟା କଲା ଶୈବ୍ୟା । ପଡ଼ିଆ ମଝାମଝି ଏକୁଟିଆ ଠିଆ ହୋଇଥିଲା ବବନ ।

ଅଜାଣତରେ ଶୈବ୍ୟା ତା' ଆଡ଼କୁ ଏକ ଲୟରେ ଗ୍ଲହିଁ ରହିଥିଲା । ସେ ଗୋଟାଏ ଗୋଡରେ ଠିଆ ହୋଇଥିଲା । ଦଉଟା ଯାକ ଗୋଡ ଭୂଇଁକୁ ଛୁଇଁ ଥିଲା ସତ, ମାତ୍ର ନାଁ । ଗୋଡ଼ କେବଳ ଟିପ ଉପରେ ଭାର ଦେଇଥିଲା । ବବନ୍‌ର ଠିଆ ହେବାର ଭଙ୍ଗୀକୁ ଦେଖି ଶୈବ୍ୟାର ମନେ ପଡ଼ିଲା ଗାଁ ପୋଖରୀ କଥା । ଗାଁ ପୋଖରୀ କୂଳରେ ମାଛ ଖାଇବା ପାଇଁ ବଗ ଯେମିତି ଗୋଟାଏ ଗୋଡରେ ନିଶ୍ଚଳ ହୋଇ ଠିଆ ହୋଇ ଥାଏ ଓ ଆର ଗୋଡ଼ଟା ଭୂଇଁକୁ ଛୁଆଁଇ ଥାଏ, ଠିକ୍ ସେମିତି ଠିଆ ହୋଇ ରହିଥିଲା ବବନ୍ । ବଗମାନେ ଠିଆ ହୋଇ ରହନ୍ତି, ପୁଣି ହଠାତ୍ ଉଡ଼ିବାକୁ ଆରମ୍ଭ କରନ୍ତି । ଡେଣା ମେଲିଇ ଉଡ଼ି ଗଲାବେଳେ ମଧ୍ୟ ସେମାନଙ୍କର ଗୋଡ ଭୂଇଁକୁ ଛାଡ଼ି ନଥାଏ । ହଠାତ୍ ଗୋଟାଏ ଭୟଙ୍କର ଶବ୍ଦ ଶୁଣିଲା ପରି ମନେ ହେଲା ଶୈବ୍ୟାର । ଭୟଙ୍କର—ଅସହ୍ୟ ସେ ଶବ୍ଦ ! ସେ ବିକଟ ଶବ୍ଦ କାନରେ ନପଶୁ ବୋଲି ଦୁଇ ହାତରେ କାନକୁ ଚ୍ଚପି ଧରିଲା ଶୈବ୍ୟା । ଶବ୍ଦ କମିଗଲା ପରି ମନେ ହେଲା

ସତ ମାନ ଅଖି ଆଗରେ ଶହ ଶହ ଧଳା ବଗ ଡେଣା ହଲେଇ ଉଡ଼ୁଥିବାର ଦୃଶ୍ୟ, ହଲୁଥିବା ଡେଣାମାନଙ୍କର ଅନ୍ତହୀନ ଜଙ୍ଗଲ ଲହରେଇ ଲହରେଇ ତା ଆଡ଼କୁ ମାଡ଼ି ଆସିଲା ପରି ମନେ ହେଲା । ଡେଣା, ଡେଣା, ଡେଣା, ଧଳା, ଧଳା ଧଳା—ଧଳା ଡେଣା—ଫଡ଼୍ ଫଡ଼୍ ଫଡ଼୍—ଧଳା ଡେଣା ପଛର ପଛ, ପଛର ପଛ ପଛର ପଛ ! ସେ....ସେ··· କ'ଣ ? କାହାବେଢେଇ । ଫଡ଼ ଫଡ଼ ହେଉଥିବା ଅଗଣିତ ଧଳା ପର-ଗୁଡାକ ମଝିରେ ସେ କିଏ ? କାହାର ଚେହେରା ? ଓଃ ଅଙ୍କଲ ନିଜର ସମସ୍ତ ଜୋର ଖଟେଇ ସେ ଚିତ୍କାର କରି ଉଠିଲା ।

ବ୍ୟସ୍ତ ବିବ୍ରତ ହୋଇ ଶୈବ୍ୟା ଆଖି ଖୋଲି ଦେଲା । କାନ ଉପରୁ ହାତ ହଟେଇ ନେଲା । ତା'ର ମନେ ହେଲା ସେ ଗୋଟାଏ ବିକଟ ଚିତ୍କାର କରିଥିଲା, ଏକ ବିକଟ ଚିତ୍କାର ଅଥଚ ନିଃଶବ୍ଦ--ଧ୍ୱନିହୀନ ଚିତ୍କାର । ଚଉତରା ଉପରେ ସେ ଠିଆ ହେଲା । ଦୁଇ ହାତରେ ଶାଢ଼ୀ କୁଞ୍ଚିକୁ ସଜାଡ଼ି ନେଲା ଓ ଘର ଭିତରକୁ ଚାଲିଗଲା । ତାର ସମଗ୍ର ଶରୀର କମ୍ପିବାକୁ ଲାଗିଥିଲା । ସେ ପଲଙ୍କ ଉପରେ ପେଟକୁ ଭରା ଦେଇ ଶୋଇ ପଡ଼ିଲା ।

ବେଶ ଅନେକ ବେଳ ଯାଏଁ ଶୈବ୍ୟା ଖୁବ ଜୋରରେ ନିଃଶ୍ୱାସ ନେଉଥିଲା । ଦୀର୍ଘ ନିଃଶ୍ୱାସ ନେବା ବନ୍ଦ ହେବା ପର୍ଯ୍ୟନ୍ତ, ନିଜକୁ ଆୟତ୍ତ କରିବା ଆଗରୁ ସେ ପୁଣି ଘର ଭିତରେ ଡେଣା ଗୁଡାକ ଗୁଣ୍ଡିପିଟି ହେବାର ଫଡ ଫଡ଼ ଶବ୍ଦ ଅନୁଭବ କଲା । ତା' ଦେହ ସାରା ଗୋଟାଏ ବିଚିତ୍ର ପୀଡା ଅତ୍ୟନ୍ତ ତୀବ୍ର ଗତିରେ ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଖେଳିଗଲା ପରି ମନେ ହେଲା, ଠିକ୍‌ ଯେମିତି ଗୋଟାଏ ଲମ୍ବି ଯାଇଥିବା ସାପ ଉପରେ କିଏ ଜଣେ ଓଜନିଆ କାଠ ଗଡ଼ଟାଏ ଗଡ଼େଇ ନେଉଛି । ମୁଣ୍ଡ ଟେକି ସେ ଚାହିଁଲା । କାନ୍ଥରେ ଝୁଲୁଥିବା କ୍ୟାଲେଣ୍ଡର, ପବନରେ ଫଡ ଫଡ଼ ଶବ୍ଦ କରୁଥିଲା । କ୍ୟାଲେଣ୍ଡରର ଚିତ୍ର ଉପରେ ସେ ତାର ଦୃଷ୍ଟିକୁ କେନ୍ଦ୍ରିତ କଲା ଓ ଭାବି ଚାଲିଲା ଅନେକ କଥା, ଆକାଶ ପାତାଳ ପର୍ଯ୍ୟନ୍ତ କେତେ ନା କେତେ !

ବିଶାଳ ବକ୍ଷ ସୁଗଠିତ ଶରୀର ସମ୍ପନ୍ନ ମା'ଟିଏ ଗୋଟିଏ ସୁସ୍ଥ ପ୍ରମୋଦିତ ବାଳକକୁ ନିଜର ସୁପୁଷ୍ଟ ଭୁଜ ଦ୍ୱୟରେ କାଖେଇଛି । ଉଭୟ ପ୍ରସ୍ତର ପ୍ରତିମା ପରି ସମ୍ପୂର୍ଣ୍ଣ ଉଲଗ୍ନ । ଚିତ୍ରଟି ଶୈବ୍ୟାର ନେତ୍ର ପଟଳରେ ଲାଗି ରହିଲା । ତା'ର ଆଖି ଆଗରେ ପୁଷ୍ପଭରା ବାଟିକା, ଫଳଭାରରେ ଅବନତ ବୃକ୍ଷରାଜି ଏବଂ ସ୍ୱଚ୍ଛ ଜଳରାଶିରେ ପରିପୂର୍ଣ୍ଣ ସରୋବରର ଦୃଶ୍ୟ ଗତିବାନ ହୋଇ ଉଠିଲା । ଅଜାଣତରେ ତା'ର ଓଠ ପାଙ୍କରେ ସ୍ମିତ ହାସ ଫୁଟି ଉଠିଲା, ସେ ଉଠିପଡ଼ି ବସି ରହିଲା ଏବଂ କ୍ୟାଲେଣ୍ଡର ଆଡକୁ ଚାହିଁ ରହିଲା, ଅଙ୍କିତ ଦୁଇଟିର ନଗ୍ନତା ଏବେ ଅଧିକ ପ୍ରଖର ଭାବରେ ଲକ୍ଷିତ ହେଲା । ତା'ର ମନେ ହେଲା ଯେ ସେ ସତେ ଯେପରି ଜାନେଟ୍‌ ହିଲ ଉପରେ

ବସିଛି ଏବଂ ତା'ର ହାତ ହିଁ ଚୌକାଠ ଉପରୁ ତଳକୁ ଖସିବାକୁ ଲାଗିଛି । ସେ ସତେ ତା'ର ଛାତି ଭିତରେ ଏକ ଚମକ ଅନୁଭବ କଲା । ତା'ର ଆଖି ଆଗରେ ଏକ ବାଧ୍ୟ ମରୁଭୂମି ହାହାକାର କରି ଉଠିଲା ପରି ଏକ ଅବ୍ୟକ୍ତ ଯନ୍ତ୍ରଣା, ବାତାସ ହାୟ ହାୟ ସେ ଅନୁଭବ କଲା ।

"ମୁହଁ ସନ୍ଧ୍ୟା ବେଳୁଁ ହିଁ ତୁ ଶୋଇବୁ ନା କ'ଣ ।" ପଚ୍ଛଆ ଘରର ଲୋଖା-ଯୋଖା ଖୁଡ଼ି ପାଙ୍ଗରେ ଘର ଭିତରକୁ ପଶି ଆସୁ ବୋଉ ପଚାରୁଥିଲା । ଶୈବ୍ୟା ଉଠି ଠିଆ ହେଲା । ବୋଉ ପ୍ରାତରେ ମୁହଁ ଜାକି ମନଇଚ୍ଛା କୁହେ କାନ୍ଦିବାକୁ ମନ ହେଲା ତା'ର । କିନ୍ତୁ ତା'ର ମନେ ପଡ଼ିଲା ଯେ ସେ ଆଜିକୁ ଅନେକ ଦିନ ହେଲା କାନ୍ଦି ନାହିଁ । ହୁଏତ କାନ୍ଦିବା କଥା ସେ ଭୁଲି ଯାଇଛି । କିମ୍ବା ହୁଏତ ତାକୁ କାନ୍ଦ ଆସେ ନାହିଁ । ସେ ଖୁଡ଼ୀକୁ ମୁଣ୍ଡିଆ ମାରିଲା ନାହିଁ ଅଥଚ ଖୁଡ଼ି ତାକୁ ଆଶୀର୍ବାଦ କରି କରି କୋଉ ପାଙ୍ଗରେ ହାଣ୍ଡିଶାଳ ଆଡ଼କୁ ଆଗେଇ ଯାଇଥିଲେ । ପଢ଼ା ଟେବୁଲ ପାଖରେ ବସି ପତ୍ରିକାର ଉପକ୍ରମ କଲା ଶୈବ୍ୟା ।

ଶ୍ରୀ, ଶିବା ଏବଂ ସରସ୍ୱତୀ, ଏମାନଙ୍କ ନିଜ ନିଜ ପତିବ୍ରାତ୍ୟ ଉପରେ ଘୋର ଅଭିମାନ ଥିଲା । ଭଗବାନ କାହାର ଗର୍ବ ସହନ୍ତି ବା ନସହନ୍ତି, ମାତ୍ର ଭକ୍ତ ହୃଦୟରେ ଜନ୍ମିଥିବା ଅଭିମାନର ଅଙ୍କୁରକୁ ସମୂଳେ ବିନାଶ କରନ୍ତି । ଏଣୁ ଭଗବାନ ଏହି ତିନି ଠାକୁରାଣୀଙ୍କ ଗର୍ବ ଖର୍ବ କରିବା ପାଇଁ କୌତୁକପ୍ରିୟ ନାରଦଙ୍କ ହୃଦୟରେ ପ୍ରେରଣା ସୃଷ୍ଟି କଲେ । ଭଗବାନଙ୍କର ଇଚ୍ଛା ସମ୍ପର୍କରେ ଅବଗତ ହୋଇ ନାରଦ କୌତୁକ ରଚନା କରିବା ଉଦ୍ଦେଶ୍ୟରେ ବାହାରିଲେ । ସର୍ବ ପ୍ରଥମେ ସେ ଲକ୍ଷ୍ମୀଠାକୁ-ରାଣୀଙ୍କ ନିକଟରେ ପହଞ୍ଚିଲେ । ଆପନାଧ ଗ୍ରହଣ କରିବା ପରେ ଦେବର୍ଷି ନାରଦ ନାରଦ କହିଲେ, "ମାତେଶ୍ୱରୀ ! ଏବେ ଏବେ ଘନେ ବୁଲି ବୁଲି ମୁଁ ଚିତ୍ରକୂଟ ପର୍ବତ ଆଡ଼େ ଚାଲିଗଲି । ସେଠାରେ ପଯସ୍ୱିନୀ ତୀରସ୍ଥ ଅତ୍ରି ମୁନିଙ୍କ ଆଶ୍ରମରେ ପହଞ୍ଚିଲି । ସେଠାରେ ତାଙ୍କର ପତ୍ନୀ ଭଗବତୀ ଅନସୂୟାଙ୍କର ଦର୍ଶନ ଲଭକରି କୃତାର୍ଥ ହେଲି । —ଅଣ୍ଟର ଲାଇନ— ସେ ତାଙ୍କ ତପସ୍ୟା ବଳରେ ଗଙ୍ଗାଙ୍କର ଗୋଟିଏ ଧାରା ପ୍ରକାଶ କରାଇଥିଲେ, ଯାହା ସର୍ବପାପନାଶିନୀ ମନ୍ଦାକିନୀ ନାମରେ ପ୍ରସିଦ୍ଧ । ସମଗ୍ର ବିଶ୍ୱରେ ତାଙ୍କ ପରି ପତିବ୍ରତା ନାରୀ ଆଉ କେହି ନାହାନ୍ତି । ଅଣ୍ଡର ଲାଇନ । ଚଉଦ ଭୁବନ ମଧ୍ୟରେ ବୁଲି ଆସିଲି । ମାତ୍ର ତାଙ୍କ ସମସର ଆଉ ଜଣେ ହେଲେ ପତିବ୍ରତା ନାରୀ ଦେଖିବାକୁ ପାଇଲି ନାହିଁ । ଅଣ୍ଡର ଲାଇନ ।

"ମୋ'ଠାରୁ ବଳିକରି ?" ଲକ୍ଷ୍ମୀ ଦେବୀ ରାଗିକରି ପଚାରିଲେ ।

"ମାତେଶ୍ୱରୀ । ଆପଣ ଖରାପ ଭାବିବେ ନାହିଁ । ସତରେ ଆପଣ ଦେବୀ ଅନସୂୟା-ଙ୍କର ସହିତ ତୁଳନାରେ ସମାନ ହୋଇ ପାରିବେ ନାହିଁ । ନାରଦ କଳହର ବୀଜବପନ କରି ବୀଣା ବଜାଇ ବଜାଇ ଚାଲିଗଲେ । ଏହିପରି ସେ ସତୀ ଏବଂ ବ୍ରହ୍ମାଣୀଙ୍କ ହୃଦୟରେ ମଧ୍ୟ ଇର୍ଷ୍ୟାର ବୀଜ ବପନ କଲେ ।

ତିନି ଠାକୁରାଣୀଯାକ ନିଜ ନିଜ ସ୍ୱାମୀମାନଙ୍କଠାରୁ ପ୍ରତିଶ୍ରୁତି ଆଦାୟ କରି ନେଲେ ଯେ ଯେମିତି ହେଉ ଅନସୂୟାଙ୍କର ପାତିବ୍ରତ୍ୟ ଭଙ୍ଗ କରିବାକୁ ହେବ । ଅନ୍ତର ଲାଇନ୍ । ପାତିବ୍ରତ୍ୟ ଭଙ୍ଗ କରିବାକୁ ହେବ । ଡବଲ ଅଣ୍ଡର ଲାଇନ ।

ପରଦିନ ମନ୍ଦାକିନୀର ତଟସ୍ଥ ମହାମୁନି ଅତ୍ରିଙ୍କ ଆଶ୍ରମରେ ଦେବତା ତ୍ରୟ ଉପଗତ ହେଲେ । ତିନିଜଣ ଯାକ ସ୍ଥିର କରି ସାଧୁବେଶ ଧାରଣ କରି ଅନସୂୟାଙ୍କୁ ସାକ୍ଷାତ କଲେ । ସେ ସମୟରେ ଭଗବାନ ଅତ୍ରି ଆଶ୍ରମରେ ନଥିଲେ । ଅତିଥି ରୂପରେ ତିନି ଜଣ ସନ୍ଥଙ୍କୁ ଆସିବାର ଦେଖି ପତିବ୍ରତା ଅନସୂୟା ତାଙ୍କର ସ୍ୱାଗତ ସତ୍କାର କଲେ । ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଦେଇ ସେ କନ୍ଦ, ଫଳ ମୂଳ ପ୍ରଦାନ କଲେ ମାତ୍ର ମୁନି ତ୍ରୟ ଆତିଥ୍ୟ ସ୍ୱୀକାର କଲେ ନାହିଁ । ଭଗବତୀ ଅନସୂୟା ତାଙ୍କୁ ଅତ୍ୟନ୍ତ ବିନମ୍ର ସ୍ୱରରେ ପ୍ରଶ୍ନ କଲେ, "ମୁନି ଗଣ! ମୋ ଦ୍ୱାରା କେଉଁ ଅପରାଧ ହୋଇଅଛି ଯେ ଆପଣମାନେ ମୋର ପୂଜା ଗ୍ରହଣ କରୁ ନାହାନ୍ତି ?

ମୁନିମାନେ କହିଲେ, "ଆପଣ ଯଦି ସତ୍ୟ କରିବେ ତେବେ ଆମେ ଆପଣଙ୍କର ପୂଜା ଗ୍ରହଣ କରିବୁ । ଅନ୍ୟଥା ନୁହେଁ ।"

"ପ୍ରାଣ ପର୍ଯ୍ୟନ୍ତ ବିସର୍ଜନ କରି ବି ଅତିଥି ସତ୍କାର କରିଯାଏ । ମୁନିଗଣ ! ଆପଣମାନେ କହନ୍ତୁ, ଆପଣମାନେ କିପରି ପ୍ରସନ୍ନ ହେବେ ?"

"ଦେବି !" ମୁନିମାନେ କହିଲେ, "ଆପଣ ବିବସ୍ତ୍ରୀ ହୋଇ ଆମର ଆତିଥ୍ୟ ସତ୍କାର କରନ୍ତୁ । ଅଣ୍ଡର ଲାଇନ ।

ଏକଥା ଶୁଣି ସତୀ ଅନସୂୟା କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ସେ ଧ୍ୟାନ କରିବା ପାଇଁ ସମାଧିସ୍ଥ ହୋଇ ଦେଖିଲେ ସମସ୍ତ ରହସ୍ୟ ବୁଝି ପାରିଲେ ଓ କହିଲେ, ସେହି ପରି ହେବ । ମୁଁ ଯଦି ପ୍ରକୃତରେ ପତିବ୍ରତା ହୋଇଥିବ ତେବେ ଆପଣମାନେ ସମସ୍ତେ ନବଜାତ ଶିଶୁ ହୋଇଯିବେ । ଅଣ୍ଡର ଲାଇନ । "ମୁଁ ଯଦି" ଠାରୁ "ଶିଶୁ ହୋଇଯିବେ" ପର୍ଯ୍ୟନ୍ତ ବ୍ରାକେଟ । କଡରେ ଗୋଟାଏ ସିଧା ଗାର ।

"ବେବି !" ହାଣ୍ଡିଶାଳରୁ ବୋଉ ଡାକୁଥିଲା ।

ଶୈବ୍ୟା ମେଲା ବହିଟା ଥୋଇ ଦେଇ ଭିତରକୁ ଗଲା । "ଆଲୋ ସନ୍ଧ୍ୟା କରି ଦେଇଛୁ, ଖାଇବୁ ନା ?"

"ମୁଁ ଖାଇବି ନାହିଁ ।"

"କାହିଁକି ଲୋ ଆଜି କ'ଣ କି ?"

"ଆଜି ଗୁରୁବାର, ଗୋଟାଏ ବେଳା ଉପାସ ।"

"ଇଏ୍ ତୋ'ର କ ପାଗଳାମି ?" ବୋଉ ଚିଡ଼ି ଉଠିଲା । ମଙ୍ଗଳବାର ଉପାସ ଜଲୁ, ମୁଁ କିଛି କହି ନଥିଲି, ଶୁଭ ମଙ୍ଗଳ ଭଲରେ ନାହିଁ, ମଙ୍ଗଳବାର ଉପାସ କରୁ ।" ବୋଉ ଶାନ୍ତିଙ୍କି ଅନେଇ କହି ଚାଲିଲା । "ସେଇଠୁ ରବିବାରକୁ ବେଳାଏ ଉପାସ ଆରମ୍ଭ କରି ଦେଲୁ । ତଥାପି ମଧ୍ୟ ମୁଁ ଚୁପ୍ ରହିଲି । ଏବେ ପୁଣି ଗୁରୁବାର ।"

"ବୋଉ !"

"ସାତ ଦିନ ଯାକ କଆଁ ଉପାସ କରୁନୁ" ବୋଉ ରାଗିକରି କହିଲା । ଶୈବ୍ୟା କିଛି ଉତ୍ତର ନଦେଇ ଚୁପ୍ ଚାପ୍ ଫେରିଗଲା । ସାତଦିନ ଯାକ ତ ଅଛନ୍ତି । ସତରେ ଖାଇଦା କୌଣସି ଦରକାର ନେଇ । ସେ ଭାବିବାକୁ ଲାଗିଲା ।

"ସତରେ ବଢ଼ ହେଉନାହିଁ ।" ଶୈବ୍ୟା ଡାକ୍ତରଙ୍କ ଚେୟାରର ଝରକା ଦେଇ ଘରଟା ଆଉଜି ଲୁହି ଦୃଷ୍ଟି ଡାକ୍ତରଙ୍କୁ କହୁଥିଲା ।

"ତାହା ହେବେ ଦିଖେଚ ଦେଇଯାଅ," ଡାକ୍ତର କାବ୍ରା ହସି ହସିକହିଲେ । ଶୈବ୍ୟାକୁ ଚଳାନ୍ତା ଚେଇଗାଡ଼ିରେ ଇଂଜିନରୁ ବାହାରୁ ଥିବା ସିଟି ଶୁଭିଲା । ତା ମୁଣ୍ଡ ଭିତରେ ଛୁକ୍ ଛୁକ୍ ଛୁକ୍ ଶବ୍ଦ ଆରମ୍ଭ ହୋଇଗଲା ।

ତୁମେ କଣ ଭାବୁଛ ଆଁ ! ଡାକ୍ତର କାବ୍ରାଙ୍କ ତରୁଣ ଚେହେରାରେ ଗାମ୍ଭୀର୍ଯ୍ୟ ଅଥ ବ୍ୟଗ୍ରତାର ସହିତ ପ୍ରକଟିତ ହେଲା ।

"ଆଜ୍ଞା ! ମୋତେ ବଢ଼ ଦେଉ ନାହିଁ । ଏଥରକ ଶୈବ୍ୟା ତଳକୁ ମୁହଁ ପୋତି ତା ପାଦ ବୁଢ଼ାଟାକୁ ହଲା କରୁଥିଲା ।

" କେଉଁ କଥା ଏତେ ଚିନ୍ତା କରୁଛ ? କାହିଁକି ତାହା ହେଲେ ବଢ଼ ହେଉ ନାହିଁ ?" କାବ୍ରାଙ୍କ ଆଖି ଶୈବ୍ୟାର ଚେହେରା ଉପରେ ଘୂରି ବୁଲୁଥିଲା ।

"ଗୁଡ଼ାଏ ଏଣ୍ଟୁ ଡେଣ୍ଟୁ ଚିନ୍ତା କରୁଛ ବୋଧେ ।" ଡାକ୍ତର କାବ୍ରା ଶୈବ୍ୟାକୁ ନିରୀକ୍ଷଣ କରୁ କରୁ କହୁଥିଲେ, "ନହେଲେ କାହିଁକି ବଢ଼ ହେଉନାହିଁ ?"

"ଆଜ୍ଞା ...!" ଡ୍ରେସ୍ ପେନ୍ ସିଥି ସାମ୍ନାରେ କେତେ ବଡ଼ ସାଇନବୋର୍ଡ଼ଟାଏ ଲାଗିଛି ? ସେ ଭାବୁଥିଲା । ସତେ ଯେମିତି ଏଟା ଗୋଟାଏ ହୋଟେଲ । ନିଶ୍ଚୟ କେଉଁଠି ନା କେଉଁଠି ଟୁଡେଜ୍ ସ୍ପେଶାଲ ବୋଲି ଲେଖା ହୋଇଥିବ ।

"ନହେଲେ ଏ ବୟସରେ ବଢ଼ ହେବନାହିଁ କାହିଁକି ?" ଡାକ୍ତର ପ୍ରଶ୍ନ କଲେ ।

ଇଡ଼ଲି- ସମ୍ବର ନାହିଁ, କହିବେ ଯଦି ଦୋଶା ଦେବ ? ଶୈବ୍ୟା ଭାବିଲା ଏବେ ଚମକି ଉଠିଲା । ତା'ର ମନେ ହେଲା ସତେ ଯେମିତି ସେ ହସୁଛି । ସେ ପୁଣି କହିଲା

"ରାତିରେ କମାରୁ ନିଦ ହେଉ ନାହିଁ ।"

"ହେଲା, ଜାଣିଲି ନିଦ ହେଉନାହିଁ । ଖାଲି ଏତିକ ଜାଣିବା ଦରକାର, ଯେ ନିଦ ହେଉ ନାହିଁ କାହିଁକି ।" ଡ଼ାକ୍ତର ମୁଖ ମଣ୍ଡଳରେ ଝଲକାଏ ମନ୍ଦ ହସ ପୁନର୍ବାର ଚହଟି ଉଠିଲା ।

ଆଜିର ସ୍ପେଶାଲ ଅଣ୍ଡା ପାଉଁସ୍ଥ, ବି କଂପ୍ଲେକ୍ସ—ଶୈବ୍ୟା ମୁଣ୍ଡ ଉପରେ ହାତ ବୁଲେଇ ଆଣିଲା ।

"ନିଦ ନହେବାର କାରଣ ତ ଥିବ । ରାତି ସାରା କ'ଣ ସବୁ ଭାବୁଛ ?"

"କିଛି ନାହିଁ ।" ଆଜି ଆପଣ କ'ଣ ଖାଇବେ ? ଏପିସି; ହଲଫା ଡ଼ାଧ୍ୟାଙ୍କନ ଇମ୍ଯୁ। କାଲସିଅମ ଭ ଉଲ୍‌ଥ ଭିଟାମିନ ସି । ବି । ହାରନଟା ମୁଠାକର ସେ ମୁଣ୍ଡରେ ଘୁରି ହେବାକୁ ଲାଗିଲା ।

"କ'ଣ ହେଲା ?" ଚୌକି ପଛକୁ ଭରା ଦେଇ ଅଣ୍ଟା ସଳଖେଇଲା ପରି ବସୁ ବସୁ ଡ଼ାକ୍ତର କାବ୍ରା କହିଲେ "ମୁଣ୍ଡ ଭିତରେ କ'ଣ ହେଉଛି ?"

"କାହିଁ କିଛି ନାହିଁତ" ହଠାତ୍ ଯେମିତି ସେ ହୋଟେଲରୁ ଛିଟିକି ଅସି ଫୁଟପାଥ ଉପରେ ପଡ଼ି ଯାଉଛି ।

"ବିଜୟ । ଡ଼ାକ୍ତର କାବ୍ରା କମ୍ପାଉଣ୍ଡରକୁ ଡ଼ାକିଲେ । ମେପ୍ରୋର ଗୋଟେ ଦେଲେ ।"

"ମେପ୍ରୋର ସରି ଯାଇଛି ।" କ୍ୟାବିନର ଝରକା ଦେଇ କମ୍ପାଉଣ୍ଡର ବିଜୟ ଜଣେଇ ଦେଲା ।

"ଫିନୋବାର୍ବ ଗୋଟାଏ ଦିଅ" ଶୈବ୍ୟାକୁ ଉଦ୍ଦେଶ୍ୟ କରି କହିଲେ "ରାତିରେ, ଖାଇ ସାରି, ଶୋଇବା ପୂର୍ବରୁ, ନିଶ୍ଚୟ ନିଦ ଲାଗିବ । କମ୍ପାରୁଏ ଟ୍ରି ଟେଣ୍ଟ୍ରି ଚିନ୍ତା କରିବ ନାହିଁ, ଆଉ ଘରେ ସମସ୍ତେ ଭଲ ଅଛନ୍ତି ତ ?"

ଶୈବ୍ୟା ଉଠି ଠିଆ ହେଲା । "ଅଜ୍ଞା"

"ଆଉ ତ କିଛି ଅସୁବିଧା ନାହିଁ ?" ଚୌକିରୁ ଉଠି ଠିଆ ହେଉ ହେଉ ଡାକ୍ତର କାବ୍ରା ପଚାରିଲେ ।

"ନାଁ।" ଶୈବ୍ୟା ଆଗେଇଗଲା କମ୍ପାଉଣ୍ଡର କ୍ୟାବିନର ଝରକା ପାଖକୁ ଓ ଓଷଧ ଥିବା କାଗଜ ପୁଡ଼ିଆଟା ଧରି ଥରେ ପାଇଁ ଡାକ୍ତରଙ୍କୁ ଦେଖି ନେଇ ଚୁପ୍ ଚାପ ଡିସ୍‌ପେନ୍‌ସରିରୁ ବାହାରି ଗଲା । ଘରେ ପହଞ୍ଚିଲା କ୍ଷଣି ବୋଉ ଧମକେଇ ପଚାରିଲେ, "ଅଲୋ, ଡ଼ାକ୍ତରଙ୍କୁ ସବୁ କଥା କହିଲୁଟି ?"

—ହଁ

—କ'ଣ କହୁଚନ୍ତି ସିଏ

—କିଛି ନାହିଁ ।

—ତୁ'ତ କିଛି କହୁ ନଥିବୁ ।

...ଓଟଦ ଦେଉଥିନ୍ତି । ଶୈବ୍ୟା ନିଜକୁ କ୍ଲାନ୍ତ ମନେ କଲା । ବୋଧ ହୁଏ ନିଜର ନିଜର ହେବାକୁ ଲାଗିଲା, "ଭଲ ରୋଗ ହେଉଛି । ଜୀବନ ବେଳାରେ କାହାର ହେଉ ନାହିଁ କ'ଣ ଲୋ ଏ କଥାତ ମୁଁ ଜୀବନ ସାକଟରେ ଶୁଣି ନଥିଲି । କାଲି ପୁଣି ଗଲି ଡାକ୍ତର ପାଖକୁ, ମୋ ସାଙ୍ଗରେ । କେଜାଣି କ'ଣ ବୋଲି କ'ଣ ତୁ କହୁଥିବୁ ଆଉ ଡାକ୍ତର ଏଣ୍ଡ୍ରୁ ଡେଣ୍ଟ ବଟିକା ଓ'ସୁଧ ଧରେଇ ଦେଇଥିବ । ତା'ର କଣ ଅଛି । ମାସକୁ ମାସ ତ ମୁଠା ମୁଠା ଦରମା ମିଳି ଯାଉଛି । ରୋଗ ଭଲ ହେଲେ କେତେ, ନ ହେଲେ କେତେ ।"

□□□

କେଉଁ ଏକ ଦୁର୍ଦ୍ଦମ୍ୟ ବୁଭୁକ୍ଷିତ ବନ୍ୟ ପଶୁ ସାରା ବ୍ରହ୍ମାଣ୍ଡ ଧାଇଁ ଧାଇଁ ଫେରି ଆସିଲା ପରି ସେ ସଁ ସଁ ଥିଲା । ହୋ° ହୋଃ; ହୋ° ହା, ହୋ° ହାଃ । ପୃଥିବୀର ଗୋଲକଟି ଉପରକୁ ଉଠୁଥିବା ପେଣ୍ଡୁ ପରି ପ୍ରଥମେ ସିଧା ଉପରକୁ ଅନନ୍ତ ଆଡ଼କୁ ଉଠିଲା ଏବଂ ତା'ପରେ ହୋ° ହାଃ, ହୋ° ହାର ସେହି ସର୍ବତୋମୁଖୀ, ସର୍ବବ୍ୟାପୀ, ସର୍ବଗ୍ରାସୀ ମହାନାଦ ଭିତରେ ଅତ୍ୟନ୍ତ ଜୀବନ୍ତ ଗଭୀରେ ଭଉଁରି ଖାଉଥିବା ଜଳ-ରାଶିରେ ଶ୍ରେଷ୍ଠ ଫୁଲ ଡ଼ଙ୍ଗାଟିଏ ବୁଡ଼ି ଗଲା ପରି ବିଲୀନ ହୋଇଗଲା । କୋଟି କୋଟି ଜଳବିନ୍ଦୁ ପରି ସେ ମହାନାଦ ଅସଂଖ୍ୟ ଅଣ୍ଡରେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ହୁଂକାର କରିବାକୁ ଲାଗିଲା । ପବନ୍ ତାହାରେ ଏକ ଅଦ୍ଭୁତ ନୃତ୍ୟ କରିବାରେ ଲାଗିଥିଲା ।

ଚଉତରା ଉପରେ ବସି ଶୈବ୍ୟା ବିମୋହିତ ହୋଇ ଉପଭୋଗ କରୁଥିଲା ପବନର ଏହି ଅଦ୍ଭୁତ ନୃତ୍ୟକୁ । ଘରର ଝରକା ଦୁଆର ଦେଇ ବାହାରି ଆସୁଥିବା ଅଳ୍ପ ବ୍ୟତୀତ ସମଗ୍ର ପଡ଼ିଆଟାରେ ଅନ୍ଧାର ଘୁଞ୍ଚି ହୋଇ ରହୁଥିଲା । ପବନ ସେହି ଅଂଧାର ଭିତରେ ନାଚୁଥିଲା ଓ ବେଳେ ବେଳେନାଚୁ ନାଚୁ ସାମାନ୍ୟ ଆଲୋକିତ ଅଂଶକୁ ଆସିଗଲା ବେଳେ ତା'ର ଶରୀର ସମ୍ପୂର୍ଣ୍ଣ ଦୃଶ୍ୟମାନ ହେଉଥିଲା । ପୃଥିବୀ ରୂପକ ଗୋଲକ ଉପରେ ଏକ ଗାଢ଼ର ପରିବର୍ତ୍ତନ ପରି ଦୃଶ୍ୟାନ୍ତର ଘଟି ଚାଲିଥିଲା । ଶୈବ୍ୟାର ମୁଣ୍ଡ ବୁଲେଇ ଗଲା ପରି ମନେ ହେଲା । ହଠାତ୍ ପବନ୍ ଏକ ବିଚିତ୍ର ଚିତ୍କାର କଲା ଓ ଶୈବ୍ୟାର ମନେ ହେଲା ସତେ ଯେମିତି କିଏ ଜଣେ ତା ପିଠିରେ ଏପଟୁ ସେପଟ ଯାଏଁ କଣ୍ଟାଟାଏ ଫୁଟେଇ ଦେଉଛି । ସେ ଭୟଭୀତ ହୋଇ ଉଠି

ଠିଆ ହୋଇଗଲା । ଯେତେବେଳକୁ ଉପର ମହଲାରୁ କିଏ ଚଟେଇଟାଏ ଫିଙ୍ଗି ଦେଲା ଓ ସେଇଟା ଚଉତରା ଉପରୁ ଆସି ପଡ଼ିଲା । ସେ ଆଶ୍ଚର୍ଯ୍ୟ ହୋଇ ପଡ଼ୁଆ ତାଙ୍କୁ ଆଖି ବୁଲେଇ ଆଣିଲା । ଘନ ଅନ୍ଧାର ଭିତରେ କିଏ ଜଣେ ଦଉଡ଼ି ପଳେଇଲା ପରି ସେ ଅନୁଭବ କଲା । ଆହୁରି ମଧ୍ୟ ଗଙ୍ଗାଟାଏ ପାଚିରି ଉପରୁ ଫଡ଼ ଫଡ଼ କରି ସେଠୁ ଆଡ଼କୁ ଉଡ଼ିଗଲା ପରି ତା'ର ମନେ ହେଲା । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ତା'ର ଥରି ଉଠିଲା । ମୁଣ୍ଡ ଟେକି ବିସ୍ଫାରିତ ନେତ୍ରରେ ସେ ଉପର ଆକାଶକୁ ଦେଖିବାକୁ ଲାଗିଲା । "ଚନ୍ଦ୍ରରେ କେତେ କଳଙ୍କ ?" ଘର ଭିତରକୁ ଯିବା ପାଇଁ ସେ ଉପକ୍ରମ କଲା ।

ଶୈବ୍ୟାର ସମଗ୍ର ଶରୀରରେ ଏକ ବିଚିତ୍ର ସ୍ପନ୍ଦନ ସୃଷ୍ଟି ହେଲା । ସେ ଦେଖିଲା, ଚଉତରା ତଳେ ଦୁଆର ଦୁଆର ମୁହଁରେ ଠିଆ ହୋଇ ଜଣେ ବଳିଷ୍ଠ କାୟ, ସୁଦୃଶ୍ୟ ମୁଖ, ଜଟାଜୁଟଧାରୀ ମହର୍ଷି ଆଗ୍ନେୟ ନେତ୍ରରେ ଶୂନ୍ୟକୁ ନିରୀକ୍ଷଣ କରି ଚାଲିଛନ୍ତି । ଶୈବ୍ୟା ଏହି ଦୃଶ୍ୟ ଦେଖି ଅତୀବ ରୋମାଞ୍ଚିତ ହୋଇ ଉଠିଲା । ତାହାର ପ୍ରତିଟି ରୋମ ସଚେତ ଯେପରି ଚିତ୍କାର କରି ଉଠିଲେ, "ଗୌତମ, ଗୌତମ ଗୌତମ, ।" ହାତ ତାହାର ମୁଠା ମୁଠା ହୋଇଗଲା । ପାଦ ଭୂଇଁରେ ସ୍ଥିର ହୋଇଗଲା । ଆଖି ଆଗରେ ଭାସି ଉଠିଲା ଭୟଙ୍କର ଶବ୍ଦ କରି ବୁଲୁଥିବା ଗୋଲାକାର ପୃଥିବୀର ଦୃଶ୍ୟ । ଗୋଟାଏ ଭୟଙ୍କର ବିସ୍ଫୋରଣ ହେଲା ଓ ଗୋଲାକାର ପୃଥିବୀଟା ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ଶୈବ୍ୟା ମୁହଁରୁ ଫେଣ ବାହାରିଲା ଓ ଗଦାଏ ଓଦା ଲୁଗା ପରି ସେ ଚଉତରା ଉପରେ ଢୁଳୁଢୁଳା ପଡ଼ିଗଲା ।

□□□

"ଅଖିଳେଶଙ୍କୁ ଖବର ଦେବା ନଥିଲା ?" ବାପା ତୃତୀୟ ଥର ପାଇଁ ପଚାରୁଥିଲେ । ବୋଉ ତାଙ୍କ ଆଡ଼କୁ ଚାହିଁଲା କିନ୍ତୁ କିଛି କହିଲା ନାହିଁ । ସେ ଆଗରୁ ଦି'ଥର କହି ସାରିଛି ଯେ ଏମିତିକା ଘଟଣାରେ ସେ ଏତେ ବିବ୍ରତ ହୋଇ ପଡ଼ିଲା ଯେ ସେ କିଛି ତା'ମୁଣ୍ଡରେ ପଶିଲା ନାହିଁ ଓ ଯାହା ଯାହା କଥା ମନକୁ ଆସିଲା ସେମାନଙ୍କୁ ସେ ତାର କରିଥିଲା ବାପା ଦୀର୍ଘଶ୍ୱାସ ପକେଇ ପଚାରୁଥିଲେ, "ଲୋକେନ୍ଦ୍ର କୁଆଡେ ଚାଲିଗଲା ?"

"ତୁମର କ'ଣ ହେଇଛି ? ସେ ପରା ତୁମକୁ କହି ଷ୍ଟେସନକୁ ଯାଇଛି ।"

"ହଁ, ହଁ, ଏଇ ହିଅଖଣ୍ଡକ ମୋ ମୁଣ୍ଡ ଏକଦମ ବିଗାଡ଼ ଦେଇ ସାରିଲାଣି ।" ସେ ପଲଙ୍କ ଉପରେ ଶୋଇଥିବା ଶୈବ୍ୟାକୁ ଦେଖିଥିଲେ । ଶୈବ୍ୟା କିନ୍ତୁ ଜଳଜଳ

ନୋହାଇ ପାଖ ଟେବୁଲ ଉପରେ ଥୁଆ ହୋଇଥିବା କାଚ ଜଗକୁ ଓ ସେଥିରେ ଥିବା ପାଣିକୁ ଗୃହି ରହୁଥିଲା । "ପୁସ୍ ହୋଇ ଯା, ପୁସ୍ ହୋଇଯା," ସେ କହୁଲା । ତା'ର ଓଠ ଥର ଥରିଲା ହଚ ହେଲେ ବି କୋ କାହୁ ଶଲା ନାହିଁ ।

"ଏଇ ଘାଡ଼ରେ ଯଦି ନ ଅସେ ତେବେ ଅଲ୍‌ଓ଼େଲ କହୁ ତାର କଣ ତାକୁ ଆସିବାକୁ ମନା କରିଦେବ ।" ବାପା ହଟେ ଯେମିତ ନିଜକୁ ନିଜେ କହୁଥିଲେ ।

"ନ ଆସିବ ଯଦି ତେବେ ନେନେନଦ ଷ୍ଟେସନରୁ ତାର କରି ଆସିବ ।" ବୋଉ ବାପାଙ୍କୁ ମନେ ପଡ଼େଇ ଦେଉଥିଲା ।

"ପୁସ୍ ହୋଇଯା, ମୁଁ କହୁଛି ପୁସ୍ ହୋଇଯା ।" ଶୈବ୍ୟା ଦାନ୍ତ କଡ଼ମଡ଼ କଲା ।

"ନେନେନଦକୁ ଡ଼କେଇ ଅଣି ଖୁବ ଭଲ କଲ । ତାର ପାଇଁ ତ ମୋ ମୁଣ୍ଡ ଏକଦମ ବିଗିଡ଼ ଗଲା ।"

"ଏବେ ବା କୋଉ ଭଲ ହେଲଣି ଯେ ।" ବୋଉର ଝାଉଁଳା ପଡ଼ିଥିବା ଚେହେରାରେ ସାମାନ୍ୟ ହସଟିଏ ଖେଳିଗଲା ।

"ଯାହା ହେଉ, ଅନ୍ତତଃ ଏତିକ ଭରସା ତ ମିଳିଲା ଯେ ସିଚୁଏସନକୁ ସମ୍ଭାଳି ନେଇ ହେବ ।" ଦୀର୍ଘଶ୍ୱାସ ପକେଇ ବାପା କହିଲେ ।

ଅନନ୍ତର ଅଚୁହ୍ନତା ସତଧର୍ମର ମହିମା ବର୍ଣ୍ଣନା କଲେ ତଥା ଉକ୍ତ ମହିମା ବଳରେ ମାଟିଆର ଅବଶିଷ୍ଟ ଏକ ଚତୁର୍ଥାଂଶ ପୂର୍ଣ୍ଣ କରି ଦେଲେ । ଅଣ୍ଡର ଲାଇନ । ପୁସ୍ ହୋଇ ଯା । ପୁସ୍ ହେଉ ନାହୁଁ କାହିଁକରେ, ହତଭାଗା ? ଶୈବ୍ୟା ବେଶ ଜୋରରେ ହାତଟାକୁ କଚୁଡ଼ ଦେଲା ବିଛଣା ଉପରେ । ସେ ଉଠି ପଡ଼ ବସିଗଲା । ଜଳ ଜଳ ହୋଇ ବାପାଙ୍କ ଆଡ଼କ ଗୃହିଁଲା ଓ ତା'ପରେ ବୋଉକୁ ଦେଖିବାକୁ ଲାଗିଲା । ବାପା କୋଉ ଦି'ଜଣ ଯାକ ମଧ୍ୟ ତାକୁ ଦେଖୁଥିଲେ ।

"ବେବି !" ବାପାଙ୍କ ସ୍ୱରରେ କାରୁଣ୍ୟ । ବୋଉ ଉଠିଯାଇ ପଲଙ୍କ ଉପରେ ବସିଲା । ମୁଣ୍ଡ ଆଉଁସି କହିଲା, "ଛି, ସୁନାଟି ପରା, ଚୁପ୍‌ଚାପ ଶୋଇଯା । ନିଦ ଲାଗୁନାହିଁ ନା କ'ଣ ?"

"ବୋଉ ! ଜମାରୁ ନିଦ ହେଉ ନାହିଁ ଲେ ବୋଉ" ଶୈବ୍ୟା ସତେ ଯେମିତ ବୋଉକୁ ତାହାର ପ୍ରଥମ ଥର ପାଇଁ ଦେଖୁଥିଲା । ଶଙ୍କିତ ଦୃଷ୍ଟିରେ ସେ ପୁଣି କାଚ ଜଗଟା ଆଡ଼କ ଲକ୍ଷ୍ୟ କରିବାକୁ ଲାଗିଲା ।

"ହେବ, ହେବ ତୁ ଚେଷ୍ଟା କର । ଏଣୁ ତେଣୁ କିଛି ନ ଭାବି ତୁ ଖାଲି ନିଦ କଥା ଭାବିଲୁ । ଝଟ୍‌କେ ଲାଗିବ ।"

ଏଥର ନିଷ୍ଠୁର ଅଭିଶାପକୁ ଝୁଣ୍ଟି ଶାଣ୍ଡିଲ ବ୍ୟଥିତ ହୋଇ କହିଲେ, ସୂର୍ଯ୍ୟୋଦୟ ହେବ ନାହିଁ । ଅଣ୍ଡର ଲାଇନ । ସୂର୍ଯ୍ୟୋଦୟ ଆଦୌ ହେବ ନାହିଁ । ଅଣ୍ଡର ଲାଇନ । ମୁଁ କହୁଛି, ଏଇଟା ପୂରା ହୋଇ ଯିବା ଦରକାର । ଶୈବ୍ୟା ଟେବୁଲ ଉପରେ ଥୁଆ ହୋଇଥିବା ଜଗକୁ କ୍ରୁର କ୍ରୁର ହୋଇ ଚାହିଁଲା ।

"ଯୁନାଷ୍ଟା ପରି, ଶୋଇ ଯା । କୌଣସି କଥା ଭାବ ନାହିଁ । ଦେଖିଲୁ, ତୋର ବାପା ବୋଉ ଖାଇ ଆସିଛନ୍ତି । ହୁଏତ ଅଖିଳେଶ ମଧ୍ୟ ଅଳ୍ପ ସମୟ ଭିତରେ ଆସି ପହଞ୍ଚି ଯିବ ।" ବୋଉ ବୁଝେଇବାକୁ ଚେଷ୍ଟା କଲା ।

"ଏଇ ଗାଡ଼ିରେ ଯଦି ନ ଆସେ ତେବେ ଅଲ୍ ଓ୍ୱେଲ କହି ତାର କରି ତାଙ୍କୁ ଆସିବାକୁ ମନା କରିଦେବ ।" ବାପା ସତେ ଯେମିତି ନିଜକୁ ନିଜେ କହୁଥିଲେ ।

"ଖାଇ ଖାଇ ଭଲ । ନାଇଁ ଲୋ ବୋଉ ? ତୁ ଅଖିଳକୁ କହି ସେ ଚାକିରି ଛାଡ଼ି ଦେଉ । ନହେଲେ ମୁଁ ଏଠି ଆଉ ରହିବ ନାହିଁ ।" ହଠାତ୍ ମା କୋଳରେ ମୁଣ୍ଡ ଗୁଞ୍ଜି ସେ କାନ୍ଦି କାନ୍ଦି ହୋଇ କହିଲା ।

"ହଁ, ହଁ, ସେଇଆ କରିବା । ତୁ ଏବେ ତା'ସାଙ୍ଗରେ ଚାଲିଯା । ସେଠି କିଛି ଦିନ ରହିଗଲେ ଜଳବାୟୁ ପରିବର୍ତ୍ତନ ହୋଇଯିବ ।" ବୋଉ କଥା ଶୁଣି ଶୈବ୍ୟା ଚମକି ପଡ଼ି ପାଣି ରଖା ହୋଇଥିବା କାଚ ଜଗ ଆଡ଼କୁ ଚାହିଁଲା, ପାଣି ଯେତିକି ଥିଲା ସେତିକି ଅଛି । ଖଟ ଉପରୁ ତକିଆଟାକୁ ଉଠେଇ ଜଗ ଉପରକୁ ଫିଙ୍ଗି ଦେଲା । କାଚ ଜଗଟି ଫଟାକ୍ କିନା ଚଟାଣ ଉପରେ ପଡ଼ିଗଲା । ଓ ଚୂନ୍ ଚୂନା ହୋଇଗଲା । ଶୈବ୍ୟାର ଆଖି ଆଗରେ ପୃଥିବୀ ଗୋଟାଏ ବେଲୁନ ପରି ଫୁଲି ଉଠିଲା । ଓ ଠୋ'କରି ଫାଟିଗଲା । ଗୋଟାଏ ଭୟଙ୍କର ଶୂନ୍ୟତା ଭିତରେ ସେ ମିଳେଇ ଗଲା ପରି ମନେ କଲା । ଆଖି ବୁଜି ଦେଲା । ବୋଉ ତାକୁ ଖଟ ଉପରକୁ ଆଉଜାଇ ଆଣିଲା । ବାପା ଧାଇଁ ଆସିଲେ ଧରି ପକେଇବାକୁ ବାପା ବୋଉ ଦୁହେଁ ଆସ୍ତେ କରି ଶୁଆଇ ଦେଲେ, ପଲଙ୍କ ଉପରେ ।

"ତୁମେ ଦେଖୁଥାଅ, ମୁଁ ଡାକ୍ତରଙ୍କୁ ଡାକି ଆଣେ ।" ବାପାଙ୍କ ଚେହେରା ମଳିନ ପଡ଼ି ଯାଉଥିଲା ।

"କ'ଣ ହେବ ? ଏମିତି କେତେଥର ହେଲାଣି । ଡାକ୍ତର ମଧ୍ୟ କେତେ ଆସିବ ? କାହ୍ନା ବଡ଼ ଡାକ୍ତର ଖାନାରେ ଦେଖାଇବାକୁ କହୁଥିଲା ।

"କେଉଁ ଡାକ୍ତରଙ୍କୁ ?"

"ନାଁ ··ନାଁ ମୋର ମନେ ନାହିଁ, ପାଗଳାମାନଙ୍କର...."

"କ'ଣ କହୁଛ ?" ବାପା ହାତରେ ଧରିଥିବା ଘଣ୍ଟା ପ୍ରତି ଦୃଷ୍ଟି ପକାଇଲେ ମାତ୍ର ସମୟ ଦେଖିଲେ ନାହିଁ ।

ବୋଉ ନିଜକୁ ସଙ୍କୁଚିତ ମନେ କଲେ, "ଆମର ତ କପାଳ ଫଟା । କି ଏ କରି ପାରୁ । ଏମଏ କରି ପାରୁ । ଏବେବେଲକୁ ହାତକୁ ବାହାର ହୋଇ ସାରନ୍ତାଣି । ଏବେ ନିଅ, ଏ ବାହାଘର ଆସି ଭାଙ୍ଗିବା ଉପରେ ।"

"ବୋଉ !" ବାହାରୁ ଲୋକେନ୍ଦ୍ର ଡାକୁଥିଲା ।

"ତୁମେ ବସ ଏଠି । ମୁଁ ଦେଖୁଛି ଅଖିଳେଶ ତା' ପାଙ୍କରେ ଆସିଛି କି ନା ।" ବାପା କହିଲେ ।

□ □ □

"ସେମିତି କିଛି ନୁହେଁ ।" ତୁମ ବୋଉ ବ୍ୟସ୍ତ ହୋଇ ସମସ୍ତଙ୍କ ପାଖକୁ ଏପ୍ରାର କରି ଦେଲ ।" ଅଖିଳେଶ କୌଣସି ପ୍ରଶ୍ନ ପଚାରିବା ଆଗରୁ ବାପା ଡଗ ଡଗ କରି କହି ଚାଲିଥିଲେ । ଲୋକେନ୍ଦ୍ର ଶୈବ୍ୟା ଶୋଇଥିବା କୋଠରି ଭିତରକୁ ଚାଲି ଯାଉଥିଲା । ଅଖିଳେଶ ବସିଥିବା ଚୌକି ପାଖରେ ବୋଉ ଠିଆ ହୋଇରହିଥିଲା ।

"ସତ କଥା, ବୋଉ ମଧ ଆଉ କ'ଣ କରି ପାରି ଥାଆନ୍ତେ ? ଏକୁଟିଆକୁ ଆମେମାନେ ମଧ ପାରୁନେଇ ଯାଉଛୁ ।" ଅଖିଳେଶ ବାପାଙ୍କ ଆଡ଼କୁ ଦୃଷ୍ଟି ପକେଇଲା ଓ ତା'ପରେ ମୁଣ୍ଡ ନୁଆଁଇ ଚଟାଣ ଉପରେ ପାଦ ଆଙ୍ଗୁଳି ସାହାଯ୍ୟରେ ଅଦୃଶ୍ୟ ଗାର ମାନ ଆଙ୍କିବାକୁ ଲାଗିଲା ।

"ହଁ, ସେଇଆ ନୁହେଁ ଆଉ କ'ଣ ?" ସମସ୍ତେ କିଛି ସମୟ ତୁନି ହୋଇ ବସିଲେ । "କେବେଠୁ ··କେବେଠୁ ଖରାପ ହେଲାଣି ?" ଅଖିଳେଶ ପଚାରୁଥିଲା ।

"ପଅର ଦିନ; ପଅର ଦିନଠୁ, ଜାଣ ମଙ୍ଗଳବାର ଠାରୁ । ହଠାତ୍ ମୁଣ୍ଡଟା —କିଛି ବୁଝାଉ ନାହିଁ ।" ବାପା ଉଠି ପଡ଼ିଲେ ଚୌକିରୁ । "ଆଜି ପ୍ରବଳ ଗରମ ହେଉଛି ।" ଛାତରୁ ଝୁଲୁଥିବା ପଙ୍ଖାଟାକୁ ଲକ୍ଷ୍ୟ କଲେ ଓ ଘର ଭିତରକୁ ଚାଲିଗଲେ ଅଖିଳେଶ ତା'ର ଗୋପାଳ କକେଇଙ୍କ ଘରକୁ ଯିବାକୁ ଚାହିଁଲା । ବୋଉ କିନ୍ତୁ ଏଇଠି ରହିବାକୁ ଜିଗର କରୁଥିଲା ।

"ଆଉ କୁହ, କେମିତି କ'ଣ ଚାଲିଛି ?" ଫୋଲଡ଼ିଙ୍ଗ୍ ଚୌକିଟାକୁ ପକେଇ ବସୁ ବସୁ ଲୋକେନ୍ଦ୍ର ପଚାରିଲା ।

"ସବୁ ଭଲ । କେବେ ମୋତେ ଏଠୁ ତୁରନ୍ତ ପଳେଇବାକୁ ହେବ । ମଝି କକେଇ ଜାଣିବେ ଯେ ଯୋଉଁ ଯାଉଛି ଶଶୁର ଘରକୁ, ମୋ ମୁଣ୍ଡ ଫାଟିଲା ଜାଣ ।" ଅଖିଳେଶ ହସୁଥିଲା, ଲୋକେନ୍ଦ୍ର ମଧ୍ୟ ।

"ହଉ ଆଉ ଅଳ୍ପ ସମୟ ରୁହ । ଯାହାକୁ ଦେଖିବାକୁ ଆସିଛ, ଅନ୍ତତଃ ତାକୁ ତ ଦେଖିକରି ଯାଅ । ରୁହ, ମୁଁ ତାକୁ ଡାକୁଛି ।" ଲୋକେନ୍ଦ୍ର ଅତି ଶୀଘ୍ର ଉଠିଗଲା । ତାକୁ ଅଟକେଇବାକୁ ଚେଷ୍ଟା କରିବା ଆଗରୁ ସେ ଚାଲି ଯାଇଥିଲା । ଅଳ୍ପ ସମୟ ପରେ ଲୋକେନ୍ଦ୍ର ଫେରି ଆସିଲା ।" ବାସ ଆଉ ମିନିଟିଏ ବସ ।" କହି କହି ଖଟ ଉପରେ ବସିଗଲା । "ରେଡ଼ିଓ ଶୁଣାଯାଉ" ସେ ପୁଣି ଉଠିଗଲା । ଅଳ୍ପ ସମୟ ଭିତରେ ସଂଗୀତର ଲହରୀ ଭାସି ଆସିଲା । ଲୋକେନ୍ଦ୍ର ଖଟ ଉପରେ ବସି ପଡ଼ିଲା । "ଏବେ ଫିଲ୍ମ ଗୀତ ହେଉନାହିଁ ।"

"ମୁଁ ବୋଧେ ଜାଣି ନାହିଁ ଯେ ଏ ଫିଲ୍ମଗୀତ ସହିତ ଏ ଘରର ଅହିନକୁଳ ସମ୍ପର୍କ ।" ଅଖିଳେଶ ଥଟ୍ଟା କରୁଥିଲା । ମୁଁ ବୁଝି ପାରୁନି, ଯେଉଁମାନେ ଫିଲ୍ମଗୀତ ଶୁଣିବାକୁ ଚାହାନ୍ତି ନାହିଁ ସେମାନେ ରେଡ଼ିଓ ରଖନ୍ତି କାହିଁକି ?" ସେ ପ୍ରଶ୍ନ କରୁଥିଲା । ଲୋକେନ୍ଦ୍ର ଉତ୍ତର ଦେବାକୁ ଭାବୁ ଭାବୁ ଶୈବ୍ୟା ଟ୍ରେରେ ଧରି ପାଣି ଆଣୁଥିଲା । ସେ ଆଗୁଆ ଉଠିଯାଇ ତା' ହାତରୁ ଟ୍ରେ'ଟା ଧରି ପକେଇ ଟେବୁଲ ଉପରେ ଥୋଇ ଦେଲା । ତା' ପାଦ ପଛରେ ବୋଉ ମଧ୍ୟ ଆସୁଥିଲା । ଶୈବ୍ୟା ଆଖିରେ ସତେ ଯେମିତି ନଦ ଖୁନ୍ଦ ହୋଇ ଯାଉଥିଲା । ତଳକୁ ମୁଣ୍ଡ ପୋତି ସେ ଅଖିଳେଶ ପାଖରେ ଠିଆ ହୋଇ ରହିଲା । ବୋଉ ଶାଢ଼ୀ କାନିରେ ମୁହଁ ପୋଛି ଦେଲା ।

"ଏଇଠି ବସ" କହି ଲୋକେନ୍ଦ୍ର ଶୈବ୍ୟାକୁ ଅଖିଳେଶ ସାମ୍ନାରେ ପଡ଼ିଥିବା ଫୋଲଡ଼ିଙ୍ଗ୍ ଚେୟାରଟାରେ ବସିବାକୁ ଇଙ୍ଗିତ କଲା ଓ ଅଖିଳେଶ ଆଡ଼କୁ ଚାହିଁ ହସିବାକୁ ଚେଷ୍ଟା କଲା । ଅଖିଳେଶ ଅନ୍ୟ ଦିଗକୁ ମୁହଁ ବୁଲେଇ ନେଲା । ଚୌକିରେ ବସୁ ବସୁ ଶୈବ୍ୟା ଅଖିଳେଶକୁ ଉଦ୍ଦେଶ୍ୟ କରି ନମସ୍କାର କଲା । ବାପା ମଧ୍ୟ ଆସି ପହଞ୍ଚିଗଲେ । ସହସା ଘରଟା ଲୋକ ଗହଳିରେ ଭର୍ତ୍ତି ହୋଇଗଲା । ବୋଉ, ଲୋକେନ୍ଦ୍ର, ବାପା, ଲୋକେନ୍ଦ୍ର ବୋଉ, ବାପା ଲୋକେନ୍ଦ୍ର ଅଖିଳେଶ ବୋଉ ବାପା ଲୋକେନ୍ଦ୍ର ସମସ୍ତେ ସମସ୍ତଙ୍କ ସହିତ ବାର୍ତ୍ତାଳାପରେ ବ୍ୟସ୍ତ ହୋଇଗଲେ । କେଜାଣି କେମିତି ରେଡ଼ିଓ ଶବ୍ଦ ବଢ଼ି ବଢ଼ି ଯାଉଥିଲା । ଅତି କ୍ଷୀଣ କଣ୍ଠରେ ଅଖିଳେଶକୁ ଲକ୍ଷ୍ୟ କରି ଶୈବ୍ୟା କହିଲା "ଯିବ ରକ୍ତ ନବାହାରେ ତେବେ ?"

"ବେବି ! ଡାକ୍ତର ଆସିଲେଣି" ଖଟ ପାଖକୁ ଆସି ବୋଉ କହିଲା, ସତେ ଯେମିତି ଶୈବ୍ୟା କିଛି ଶୁଣି ପାରୁ ନଥିଲା । ସେ ଝରକା ଦେଇ ବାହାରକୁ ଦେଖୁଥିଲା ଡାକ୍ତର କାବ୍ରା ତାଙ୍କ ବ୍ୟାଗକୁ ଟି' ପୟ ଉପରେ ରଖିଲେ ଓ ଖଟ ପାଖକୁ ଲାଗିଯାଇ ଶୈବ୍ୟାର ଆଡ଼କୁ ହାତ ବଢ଼େଇଲେ । ଶୈବ୍ୟା ଖୁବ୍ ଜୋରରେ ହାତ ମୁଠା ମୁଠା କଲା; ସତେ ଯେମିତି ସେ ମୁଠା ଭିତରେ ଚିପି ହୋଇ ଯାଉଥିବା ପୃଥିବୀ ଭୟଙ୍କର ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲା । ଶୈବ୍ୟା କମ୍ପି ଉଠିଲା । ଏଇ ! ପଳାଅ ଏଠୁ; ମୋତେ ଛୁଅଁନା ।" ସେ ଚିତ୍କାର କଲା ।

ଡାକ୍ତର କାବ୍ରାଙ୍କ ହାତରୁ ଶୈବ୍ୟାର ହାତ ଖସିଗଲା । ଏକ ଭୟାର୍ତ୍ତ ଠେକୁଆ ପରି ଖଟର ଆରପଟ ପାଖକୁ ଶୈବ୍ୟା ଲୁଚିଗଲା ପରି ସଙ୍କୁଚିତ ହୋଇ ଯାଉଥିଲା ।

"ବେବି !" ବୋଉ କ'ଣ କହିବାକୁ ଚେଷ୍ଟା କରୁଥିଲା ।

"ଶୁଣ !" ଡାକ୍ତର ବୋଉକୁ ବାଧା ଦେଇ ପ୍ରଶ୍ନ କଲେ, "କ'ଣ ହେଲା ? ତୁମେ ଏମିତି ଡରୁଛ କାହିଁକି ? ମୁଁ କ'ଣ ତୁମର କିଛି କ୍ଷତି କରୁଛି ? ୟୁ ଆର ଏ ଗୁଡ୍ ଗାର୍ଲ । କମ ହିଅର ।"

"ନାଁ, ମୋ ଦେହରେ ହାତ ଦିଅନା କହୁଛି; ଯାଅ ଏଠୁ ପଳେଇ ଯାଅ କହୁଛି ।"

"ବେବି ! ଇୟେ ପରା ଡାକ୍ତର; ଚିହ୍ନି ପାରୁନୁ ?"

"ଠିକ୍ ଚିହ୍ନୁଛି; ସମସ୍ତଙ୍କୁ ଚିହ୍ନିଛି ଯାଅ; ଏଠୁ ପଳାଅ ।"

"ବେବି ! ସେ ପରା ଡାକ୍ତର, ଡାକ୍ତର କାବ୍ରା, ତାଙ୍କ ଭଳିଆ ଦେବତା··· ଏମିତି କ'ଣ ସବୁ କହୁଛୁ ?"

"ଦେବତା ! ତୁମେ ସବୁ ଦେବତା ଗୁଡ଼ାକ କୁକୁର ଠାରୁ ହୀନ, ଛିଃ ଛିଃ" ଶୈବ୍ୟା ନିଜର ସମସ୍ତ ଶକ୍ତି ଖଟେଇ ଚିତ୍କାର କଲା । "ବୋଉ ଏଇ ଦେବତାମାନେ ସର୍ବଦା ନାରୀମାନଙ୍କର ସତୀତ୍ୱ ଲୁଣ୍ଠନ କରନ୍ତି । ଏମାନଙ୍କୁ ଏଠୁ ତଡ଼ି ଦେ' ବୋଉ ଜଳନ୍ତା ଆଖିରେ ଶୈବ୍ୟା ରଟମଟ କରି ଚାହିଁବାକୁ ଲାଗିଲା ! ନିଃଶ୍ୱାସ ପ୍ରଶ୍ୱାସର ଗତି ତୀବ୍ର ହୋଇ ଉଠିଲା । "କୁଆ ହୋଇ ଯାଆ···କୁନି କୁଆଟାଏ ହୋଇ ଯା.... ଛ' ମାସିଆ କୁଆ ହୋଇଯା" । ଡାହାଣ ହାତଟା ଏମିତି ହଲଉଥିଲା, ଯେମିତି ସିଏ ମନ୍ତ୍ର ପଢ଼ି ଡାକ୍ତରକୁ ଛୋଟ ଶିଶୁ କରି ଦେବାକୁ ଚାହୁଁଛି ।

ଡାକ୍ତର ରୁମାଲରେ ମୁହଁ ପୋଛି ନେବାକୁ ଚେଷ୍ଟା କଲେ । ବୋଉ କାଠ ହୋଇ ଶୈବ୍ୟାକୁ ଦେଖୁଥିଲା ମାତ୍ର ।

"ଅବଶ୍ୟ ଆଉ ଆମ ହାତରେ ନାହିଁ ହସ୍‌ପିଟାଲ ନେଇଯିବାକୁ ହେବ । ମେଣ୍ଟାଲ ହସ୍‌ପିଟାଲ । "ତୋଉ କହ ମୁଁ ସୀତା ନା ନୁହେଁ ?" "ଆଁ, ହଁ; ହଁ ମୋ ଝିଅ ତ ଗୋଟାଏ ସୀତା । ସୀତାଙ୍କ ଠାରୁ ବଳି ।"

"ତାହା ହେଲେ ମନ୍ଦାକିନୀର ଧାର ବାହାରୁ ନାହିଁ କାହିଁ ? ବୋଉ ମୁଁ ମେଘ ଉପରେ ଚଢ଼ିବି । ସିଏ ମୋତେ ଯୁଆଡ଼େ ଇଚ୍ଛା ସିଆଡ଼େ କେମିତି ନେଇଯିବ ଦେଖିବୁ । ବୋଉ ଅଙ୍କଲ ସେ ମେଘକୁ ଝଡ଼େଇ ନେବେ ନାହିଁ ତ ?"

"କୋଉ ଅଙ୍କଲ ? କେବ ।"

"ସେଇ, ବାପାଙ୍କ ସାଙ୍ଗ ଯିଏ ମୋତେ ପଢ଼େଇବାକୁ ଆସୁଥିଲେ ।" ତା'ର ମନେହେଲା ସତେ ଯେମିତି ଇନ୍ଦ୍ରଦେବ ଗୌତମ ଋଷିଙ୍କ ଆଗରେ ସ୍ୱୀକାରୋକ୍ତି କରୁଛନ୍ତି, କ୍ଷମା ଭିକ୍ଷା କରୁଛନ୍ତି । ଆଉ ଶୈବ୍ୟାର ସମସ୍ତ ଶରୀରଟା ପଥର ପାଲଟି ଯାଉଛି । ସେ ଚତ୍କାର କରି ଉଠିଲା, "ବୋଉ, ବୋଉ ଦେଖେଲୋ ବୋଉ, ମୁଁ କେମିତି ପଥର ହୋଇ ଯାଉଛି ।"

ଏକ ଭୟଙ୍କର ବିସ୍ଫୋରଣ ପରେ ସୂର୍ଯ୍ୟ ତଳକୁ ଓଲେଇ ଆସିଲେ । ସମୁଦ୍ରର ଲହରୀ ଆକାଶକୁ ସ୍ପର୍ଶ କଲା । ମରୁଭୂମିରେ ଝଡ଼ ଉଠିଲା ହିମାଳୟ ଭାଙ୍ଗି ଚୂରମାର ହୋଇ ଗଲା । ଶୈବ୍ୟା ଦୁ ହାତରେ ଶାଢ଼ୀଟାକୁ ଚିରିଦେଲା । ତା ଆଖିରେ ଡ଼ୋଳା ଦୁଇଟା ଥରିଲା ହାତରେ ଧରିଥିବା ବେଲାର ପାଣି ପରି ଚହଲି ଉଠିଲେ । କୌଣସି ଅଜ୍ଞାତ ରହସ୍ୟ ଉଦ୍‌ଘାଟନର ଉତ୍କଣ୍ଠା ନେଇ ବଦନର ରୂପ ଝରକା ଆର ପଟେ ଦେଖା ଦେଲା ।



# ଓଣି

**ରାଜେନ୍ଦ୍ର କୁମାର**

ଏକେତ ସେ ଆଗରୁ କୁକୁରମାନଙ୍କୁ ଡରୁଥିଲା, କିନ୍ତୁ ସହରରେ ପାଗଳା କୁକୁର କାମୁଡ଼ିବାର ଗୁଡ଼ାଏ ଘଟଣା ଶୁଣିଲା ପରଠାରୁ ସେ ଭୀଷଣ ଭୟଭୀତ ହୋଇ ପଡ଼ିଥିଲା । ଅନ୍ଧାର ହେଲା ପରେ ସେ ଘରୁ ପଦାକୁ ମୋଟେ ଗୋଡ଼ କାଢ଼ୁ ନଥିଲା । ଦିନବେଳା ମଧ୍ୟ କାଳେ କୁକୁରମାନଙ୍କ ସହିତ ସାମନା ସାମନି ହୋଇଯିବ, ସେଇ ଡରରେ ସେ ଶିହରି ଉଠୁଥିଲା ।

ଏପ୍ରକାର ଭୀଷଣ ଭୟ ନିମିତ୍ତ ସେ ମନେମନେ ଲଜ୍ଜିତ ହେଉଥିଲା ତଥା ଯେଉଁମାନେ ତାହାର ଏମନ୍ତ ଡର ସମ୍ପର୍କରେ ଜାଣିଯାଇଥିଲେ ସେମାନଙ୍କୁ ସେ ସଫେଇ ଦେଉଥିଲା ଯେ ସେ କୁକୁର କାମୁଡ଼ାକୁ ଡରୁ ନାହିଁ, ପ୍ରକୃତରେ କୁକୁର କାମୁଡ଼ିଲା ପରେ ଯେଉଁ ଚଉଦ ଚଉଦଟା ଇଞ୍ଜେକ୍ସନ୍ ନେବାକୁ ପଡ଼େ ସେଇ ଛୁଞ୍ଚି ଫୋଡ଼ାକୁ ଯାହା ଡରୁଛି । ନିଜର ଏମନ୍ତ ସ୍ପଷ୍ଟୀକରଣକୁ ଅଧିକ ବିଶ୍ୱାସନୀୟ କରିବା ନିମିତ୍ତ ସେ ସମସ୍ତ ପ୍ରକାର ଇଞ୍ଜେକ୍‌ସନ ବିରୁଦ୍ଧରେ ଯୁକ୍ତି କରୁଥିଲା । ଇଞ୍ଜେକସନ ବିରୁଦ୍ଧରେ ତାହାର ଏହି ବିରୋଧ କ୍ରମଶଃ ବୌଦ୍ଧିକ ଆଲୋଚନାର ଅଂଶ ହୋଇ ଯାଇଥିଲା ଏବଂ ସ୍ୱମତର ସମର୍ଥନ ନିମିତ୍ତ ସେ ଅଧିକାଂଶ ସମୟରେ ପ୍ରଖ୍ୟାତ ଇଂରେଜ ସାହିତ୍ୟିକ ବର୍ଣ୍ଣାର୍ଡ ଶ'ଙ୍କର ଉକ୍ତିଗୁଡ଼ିକୁ ଉଦ୍ଧାର କରୁଥିଲା ।

ସେଦିନ ସେତେବେଳେ ସେ ଶୋଇବାକୁ ଉପକ୍ରମ କରୁଥିଲା । ଏହି ସମୟରେ ହଠାତ୍ ଦାଣ୍ଡକବାଟରେ କିଏ ଜଣେ ଠକ୍‌ଠକ୍ ଶବ୍ଦ କରୁଥିବାର ଶୁଣିଲା । "କିଏ ?" ସେ ପ୍ରଶ୍ନ କଲା ସତ, ମାତ୍ର ଦୁଆର ଖୋଲିବାକୁ ଆଦୌ ପ୍ରସ୍ତୁତ ହେଲା ନାହିଁ ।

"ମୁଁ ମିସେସ୍ ଅଗ୍ରୱାଲ !"

"ମିସେସ୍ ଅଗ୍ରୱାଲ ! ଏତେ ରାତିରେ ?" କବାଟ ଖୋଲୁ ଖୋଲୁ ସେ ଭାବି ଚାଲିଲା ।

ଶ୍ରୀମତୀ ଅଗ୍ରୱାଲଙ୍କ ବୟସ ମାତ୍ର ବାଇଶି ତେଇଶି । ଦେଖିବାକୁ ବେଶ ସୁନ୍ଦରୀ । ତାଙ୍କର ସୁନ୍ଦର ଆଖିଯୋଡ଼ିକରେ ଆତଙ୍କର ଚିହ୍ନ ସ୍ପଷ୍ଟ ବାରି ହୋଇ ଯାଉଥିଲା । ସେ ଅତ୍ୟନ୍ତ କରୁଣ ସ୍ୱରରେ କହିଲେ, "ଅଗ୍ରୱାଲ ବାବୁଙ୍କର ଦେହ ଭାରି ଖରାପ ।" ସେ କାନ୍ଦି ପକେଇଲେ ।

ଅଜାଣତରେ ସେ ଶିହରି ଉଠିଲା । ତାଙ୍କୁ ଏବେ ଡାକ୍ତର ଡାକିବାକୁ ଯିବାକୁ ପଡ଼ିବ ନାହିଁ ତ ? ନହେଲେ ଏତେ ରାତିରେ ତା' ଘରକୁ ଶ୍ରୀମତୀ ଅଗ୍ରୱାଲ ଆସିବାର ଆଉ କେଉଁ କାରଣ ହୋଇପାରେ ? ଡାକ୍ତର ଏଠୁ ଦୁଇ ମାଇଲ ଦୂରରେ ରହନ୍ତି । ଶହ ଶହ କୁକୁରମାନଙ୍କ ଭିତର ଦେଇ ତାଙ୍କୁ ଯିବାକୁ ହେବ ।

ଶ୍ରୀମତୀ ଅଗ୍ରୱାଲ କହିଲେ, " ଏବେ ସଞ୍ଜବେଳେ କିଛୁ ବୁଝାଯାଉ ନଥିଲା । ସେ ବେଶ ଭଲ ଥିଲେ । ହଠାତ ଗୋଟାଏ ବାନ୍ତି ହେଲା ଓ ଦେହରେ ସାମାନ୍ୟ ଜର ପରି ତାତି ଆସିଲା । ଆମେ ଏହାକୁ ଖୁବ ବେଶୀ ଗୁରୁତ୍ୱ ଦେଲୁ ନାହିଁ । ଭାବିଲୁ ଆପେ ଆପେ ଭଲ ହୋଇଯିବ । ସେ ଗୋଟାଏ ପେଟେଣ୍ଟ ବଟିକା ଖାଇଥିଲେ । "

"ଅଗ୍ରୱାଲଙ୍କ ଅସୁସ୍ଥତାର ଡିଟେଲସ ଶୁଣିବା ପାଇଁ ତାହାର ଧୈର୍ଯ୍ୟ ରହିଲା ନାହିଁ । ସେ ଜୋର ଦେଇ ପ୍ରଶ୍ନ କଲା, " ତାଙ୍କ ଦେହ କ'ଣ ସତରେ ଭୀଷଣ ଖରାପ ? " ଅର୍ଥାତ ଡାକ୍ତରଙ୍କୁ ଡାକିବାକୁ ପ୍ରକୃତରେ ଯିବାକୁ ହେବ ? ତାହା ସହିତ ସେ ପାଖରେ ମଧ୍ୟ କେଉଁଠି ଟେଲିଫୋନ ନାହିଁ ବୋଲି ଭାବିନେଲା ।

" ହଁ; ଭୀଷଣ ଖରାପ ଅବସ୍ଥା । ଶହେ ପାଞ୍ଚ ଜର । ଡିଲେରିୟମ୍ ଅବସ୍ଥା ।"

ବାହାରୁ କୁକୁର ଭୁକିବାର ଶବ୍ଦ ପୁଣି ଶୁଭାଗଲା ଓ ଡ଼ର ଭିତରେ ଏହି ଦାମ୍ପତିକୁ ନେଇ କେଇ ମାସ ତଳେ ଶୁଣିଥିବା ଗୁଜବ କଥା ସେ ମନେ ପକେଇ ଚାଲିଲା । ସାମାନ୍ୟ ରୁକ୍ଷ ଗଳାରେ ସେ ପ୍ରଶ୍ନ କଲା; " ଆପଣ ଆଗରୁ କାହିଁକି କିଛୁ ବନ୍ଦୋବସ୍ତ କଲେ ନାହିଁ ? ପାଠଶାଠ ପଢ଼ିଛନ୍ତି । ରାତି ଆସି ଅଧା ସରିକି ହେଲାଣି । ଏବେ ଅନ୍ୟ କ'ଣ କରାଯାଇପାରିବ ? ମୋତେ ଲାଗୁଛି ଏତେ ରାତିରେ ଡାକ୍ତର ପାଇବା ମଧ୍ୟ କଷ୍ଟକର; କଷ୍ଟକର କାହିଁକି, ଅସମ୍ଭବ ମଧ୍ୟ । ଆଉ ତା'ଠାରୁ ଅଧିକ ବା ମୁଁ କ'ଣ କରିପାରିବ ?" ଏତିକ କହି ଦେଇ ସେ ହେଲେ ନିଜର ଡର ଏବଂ ଅପାରଗତାଣିଆ ଲାଗି ଲଜ୍ଜା ଅନୁଭବ କରିବା ସତ୍ତ୍ୱେ ସେ ବିଶ୍ୱାସ ନକଲା ପରି ପ୍ରଶ୍ନ କଲା, " ସତରେ ସିଏ ଡିଲେରିୟମ୍‌ରେ ଅଛନ୍ତି ? ହୋଇପାରେ ଆପଣଙ୍କୁ ସେମିତି ଲାଗୁଥିବ । ମୋତେ ତ ଆଦୌ ଜଣାଯାଉ ନାହିଁ ଯେ ଯେଉଁଲୋକ ସଞ୍ଜବେଳଯାଏଁ ଭଲ ଥିଲା ସିଏ ଏତେମାଏ କେଇ ଘଣ୍ଟାରେ ଡିଲେରିୟମ ଅବସ୍ଥାକୁ ଆସିଯିବ ।"

ଶ୍ରୀମତୀ ଅଗ୍ରୱାଲ କହିଲେ, " ଆପଣଙ୍କୁ କଷ୍ଟ ଦେବି ନାହିଁ ବୋଲି ମୁଁ ମଧ୍ୟ ନିଜେ ଚାହୁଁ ନଥିଲି । ସେଇଥି ପାଇଁ ଏଯାଏଁ ମନେ ମନେ ବାରମ୍ବାର ଭାବୁଥିଲି ଡାକ୍ତର ଡାକିବା ଦରକାର କି ନାହିଁ । "

କୁକୁର ଗୁଡ଼ାକ ପୁଣି ଭୁକିଲେ । ଭଦ୍ର ଲୋକ ବେଳକୁ ବ୍ୟଙ୍ଗାତ୍ମକ ଢଙ୍ଗରେ ସେ କହିବାକୁ ଆରମ୍ଭ କଲା; " ହଉ ହେଲା, ମାନି ନେଉଛି, ଆପଣ ଯେତେବେଳେ ଏତେ ଜୋର ଦେଇ କହୁଛନ୍ତି ! ଇଏ୍ବ ତାହା ହେଲେ ଗୋଟାଏ ଅସାଧାରଣ କଥା । "

ଶ୍ରୀମତୀ ଅଗ୍ରୱାଲ ତା କଥାର ବ୍ୟଙ୍ଗକୁ ଠଟ୍ଟରେଇ ନେଇ କହିଲେ, " ଡାକ୍ତର ନପୁର ଯଦି ଜାଣିବେ ନାଁ । ତାଙ୍କ ଦେହ ଏତେ ଖରାପ ହୋଇଛି ସେ ସାଙ୍ଗେ ସାଙ୍ଗେ ନିଶ୍ଚୟ ଆସିବେ । କାହିଁକି ନାଁ ବାରଟା ଏବେ ବାଜିଛି । "

" ଡାକ୍ତର କପୂର ? " ସନ୍ଦେହଯୁକ୍ତ ସ୍ୱରରେ ସେ ପ୍ରଶ୍ନ କଲା ଓ ପୁନର୍ବାର ଜଣେ ସୁନ୍ଦରୀ ଯୁବତୀ ନାରୀ ଆଖିରେ ନିଷ୍ଠୁର ହେବାର ଗ୍ଲାନି ତଥା କୁକୁରମାନଙ୍କ ପ୍ରତି ମନରେ ବହୁ ବାନ୍ଧିଥିବା ଆତଙ୍କ ଭିତରେ ସେ ବିମୂଢ଼ ହୋଇ କହିଲା, " ଯଦି ଡାକ୍ତର ଡାକିବା ନିହାତି ଦରକାର ତେବେ ସେ ବ୍ୟବସ୍ଥା ନିଶ୍ଚୟ କରାଯିବ । କିନ୍ତୁ ଚାଲନ୍ତୁ ମୁଁ ଆଗ ଦେଖେ ତାଙ୍କ ଦେହ କେମିତି ଅଛି । ".

ବ୍ୟସ୍ତବ୍ୟସ୍ତ ହୋଇ ସେ କହିଲେ, " ମୁଁ ଆପଣଙ୍କୁ ସତ କହୁଛି ଯେ ତାଙ୍କ ଦେହ ଭୀଷଣ ଖରାପ । ଆପଣ ଡାକ୍ତର ଡାକିବାରେ ଜମାରୁ ଡେରି କରନ୍ତୁ ନାହିଁ । ତାଙ୍କର କିଛି ହୋଇଯାଇପାରେ ।"

ସେ ମଧ୍ୟ ଦୃଢ଼ ସ୍ୱରରେ କହିଲା, " ମୁଁ ଆପଣଙ୍କୁ କହିଲି ନାଁ । ଡାକ୍ତର ଡାକିବା ଯଦି ନିହାତି ଦରକାର ହେବ ତେବେ ସେ ବ୍ୟବସ୍ଥା ନିଶ୍ଚୟ କରାଯିବ । ମାତ୍ର ଆଗ ଚାଲନ୍ତୁ ମୁଁ ଯାଇଁ ଟିକେ ଦେଖେ । ପାଞ୍ଚ ମିନିଟରେ କ'ଣଟା ହୋଇଯିବ ? " ପୁଣି ତା'ର ସ୍ୱର କୋମଳ କରି କହିଲା " କିଛି ଗୋଟାଏ ଖରାପ ହେବ, ଏମିତି କାଲି କଥା ଆପଣ କାହିଁକି ଏଭଳି ଭାବୁଛନ୍ତି? ତା'ଛଡ଼ା ଆପଣ ଯେତେ ଯାହା କରି ପାରିବା କଥା ତାହା କରୁଛନ୍ତି, ସେଥିପାଇଁ ଆପଣ ନିଜକୁ ଦୋଷୀ ଭାବିବା ଉଚିତ୍ ନୁହେଁ । ଅଯଥା ଡରିଲେ କି ଲାଭ ମିଳିବ ? ମୁଁ ଦେଖିଲେ ସ୍ଥିର କରିବା କ'ଣ କ'ଣ କରିବା ଦରକାର । ଚାଲନ୍ତୁ । "

ଶ୍ରୀମତୀ ଅଗ୍ରୱାଲ ପ୍ରାୟ ହତାଶ ସ୍ୱରରେ କହିଲେ, " ଆପଣ ଯଦି ନିହାତି ଦରକାର ବୋଲି ଭାବୁଛନ୍ତି, ତାହା ହେଲେ ଚାଲନ୍ତୁ ଦେଖିବେ । " ଆଉ ସେ ପ୍ରାୟ ବୁଝିପାରିଲେ ଯେ ଏଇ ଲୋକଟା ବୋଧହୁଏ ଡାକ୍ତର ଡାକିବାକୁ ଯିବ ନାହିଁ । ହୁଏତ ଏବେ ଆଉ ଅନ୍ୟ କେହି ଲୋକ ମଧ୍ୟ ମିଳିବେ ନାହିଁ । ଦୁ' ଦୁ' ଜଣ ପଡ଼ିଶାଙ୍କୁ ତ ସାହାଯ୍ୟ ମାଗି ଆଗରୁ ଫେରିଛନ୍ତି । ଆଉ ସେ ନିଜେ ଅବା ଯାଆନ୍ତେ, ମାତ୍ର ସେ ତ ଡାକ୍ତରଙ୍କ ଘର ଦେଖି ନାହାନ୍ତି; ତା'ଛଡ଼ା ସ୍ୱା ଭିତରେ ମିଃ ଅଗ୍ରୱାଲଙ୍କର ଯଦି କ'ଣ କିଛି ହୋଇଯାଏ, ତାହା ହେଲେ ? ଅଚାନକ ତାଙ୍କୁ ଏଭଳି ଏକ ଭୟାବହ ସମ୍ଭାବନା ଦେଖାଗଲା ଯେ ହୁଏତ ତାଙ୍କ ସ୍ୱାମୀ ବିନା ଚିକିତ୍ସାରେ ମରିଯିବେ ।

ବାଟରେ କିଛି କହିବା ଉଦ୍ଦେଶ୍ୟରେ ସେ ସହାନୁଭୂତି ଓ ଉଦ୍‌ବେଗର କିଛିଟା ଗୋଳଆମିଶା କୃତ୍ରିମ ଢ଼ଙ୍ଗରେ ଅସୁସ୍ଥତାର ସବିଶେଷ ବିବରଣୀ ସମ୍ପର୍କରେ ପ୍ରଶ୍ନ ପଚାରିବାକୁ ଲାଗିଲା । ଅଥଚ ନିଜର ପୁଂସତ୍ତ୍ୱହୀନ ଭୟ ଜନିତ ଅନୁଭବ କରୁଥିବା ଦୁର୍ବିସହ ଗ୍ଲାନି ହେତୁ ଶ୍ରୀମତୀ ଅଗ୍ରୱାଲ ଯାହା ଉତ୍ତର ଦେଉଥିଲେ ତାହାକୁ ଠିକ୍ ଭାବରେ ଶୁଣିପାରୁ ନଥିଲା । ଅଗ୍ରୱାଲଙ୍କ ଅବସ୍ଥା ଦେଖି ସେ ପୁନଃ ଆତଙ୍କିତ ହୋଇ ପଡ଼ିଲା । ତାଙ୍କ ଅସୁସ୍ଥତା ପାଇଁ ନୁହେଁ, ପରନ୍ତୁ ଡ଼ାକ୍ତରଙ୍କ ଘରକୁ ଗଲା ବେଳେ ରାସ୍ତାରେ କୌଣସି ପାଗେଳା କୁକୁର କାମୁଡ଼ିବାର ଭୟରେ ।

କୁକୁରଗୁଡ଼ାକ ପୁଣି ଜୋରରେ ଭୁକିବାକୁ ଲାଗିଲେ ।

ନିଜକୁ ରକ୍ଷା କରିବାର ଚିନ୍ତାରେ ସହସା ତାହାର ଆଖି କ୍ୟାମେରାର ଲେନ୍‌ସ ଭଳିଆ ହୋଇଗଲା, ଯିଏ ରୋଗୀର ଚେହେରାକୁ ଅସାଧାରଣ ସାବଧାନତା ସହକାରେ ତନ୍ନ ତନ୍ନ କରି ଦେଖିବାକୁ ଲାଗିଲା ଓ ତାହାର ମସ୍ତିଷ୍କରେ ସୂକ୍ଷ୍ମାତିସୂକ୍ଷ୍ମ ଡ଼ିଟେଲସ୍ ଅଙ୍କିତ କରିବାକୁ ଚେଷ୍ଟା କଲା । ଅଥଚ ତାହାର ମନରେ ସାମାନ୍ୟତମ ଉଦ୍‌ବେଗ ବା ସହାନୁଭୂତି ସୃଷ୍ଟି ହେଲା ନାହିଁ, ଯେମିତି କ୍ୟାମେରାର ହୁଏ ନାହିଁ ।

ଏକ ସମ୍ଭାବ୍ୟ ଅମଙ୍ଗଳର ଆଶଙ୍କାରେ କମ୍ପମାନ ଦୃଷ୍ଟି ପକେଇଲେ ଶ୍ରୀମତୀ ଅଗ୍ରୱାଲ । ସତେ ଯେମିତି ସେ ପଚାରୁଥିଲେ, "ଦେଖିଲେ ତ, ଅବସ୍ଥା କେତେ ଖରାପ ?" ତା'ପରେ ପ୍ରାର୍ଥନା, ଭୟ ଏବଂ କରୁଣା ମିଶ୍ରିତ କଣ୍ଠରେ କହିଲେ, "ଜଗନ୍ନାଥଙ୍କ ରାଣ ଡ଼ାକ୍ତରକୁ ଡ଼ାକିବାରେ ଆପଣ ଆଉ ଜମାରୁ ଡେରି କରନ୍ତୁ ନାହିଁ । ନହେଲେ ଯଦି ତାଙ୍କର କିଛି ହୋଇଯାଏ ତାହାହେଲେ ମୋର କ'ଣ ହେବ ?"

"ଏଟା ଖାଲି ନିଜ ବିଷୟରେ ବେଶୀ ଭାବୁଛି, ସ୍ୱାମୀଙ୍କ ଚିନ୍ତା ମୋଟେ ନାହିଁ ।" ସେ ଭାବିଲା ଓ ପଚାରିଲା, "ଆପଣ କ'ଣ ଆଉ କାହା କାହା ଘରକୁ ଯାଇଥିଲେ ?" ହାତରେ ତ ଆହୁରି ଅନେକ ଥିଲେ ଯାହାଙ୍କର ସାଇକେଲ ଅଛି, ସ୍କୁଟର ଅଛି, କେତେ ଜଣଙ୍କ ପାଖରେ ସରକାରୀ ଜିପ୍ ମଧ୍ୟ ଅଛି । ସେମାନେ ବରଂ ଡ଼ାକ୍ତରଟାକୁ ଆଣିଲେ ଭଲ ହୁଅନ୍ତା—ସେ ଭାବିଲା ।

ଶ୍ରୀମତୀ ଅଗ୍ରୱାଲ ଜଲ୍‌ଦି ଜଲ୍‌ଦି କହି ଚାଲିଲେ, "ମୁଁ ମୁଦ୍‌ଗଲ ବାବୁଙ୍କ ଘରକୁ ଯାଇଥିଲି । ହେଲେ କିଛି ଲାଭ ହେଲା ନାହିଁ । ଆପଣ ଦୟାକରି ଶୀଘ୍ର ଡ଼ାକ୍ତର ଡ଼ାକି ଆଣନ୍ତୁ ।

ସେ ଏଭଳିଆ ତରବର ହେବା ଦେଖି ତାର ଭୀଷଣ ରାଗ ହେଲା, କିନ୍ତୁ ସ୍ତ୍ରୀ-ଲୋକଟିର ମାନସିକସ୍ଥିତିକୁ ବିଚାର କରି ସେ ନିଜକୁ ନିୟନ୍ତ୍ରିତ କରିବାକୁ ଲାଗିଲା । ପୁଣି କହିବାକୁ ଆରମ୍ଭ କଲା, " ମୁଁ ଥରେ ଆପଣଙ୍କୁ କହିଛି ନା ଯଦି ଧରନ୍ତୁ ମଲେ ହେବ ନିଶ୍ଚୟ ଡାକ୍ତର ଡ଼ାକାଯିବ । ଆପଣ ମିଛରେ ଡ଼ରୁଛନ୍ତି । ଡ଼ରିଲେ କ'ଣ ଲାଭ ହେବ ? ମୁଦ୍‌ଗଲବାବୁ କ'ଣ କହିଲେ ? "

"ମୁଦ୍‌ଗଲବାବୁଙ୍କ ସ୍ତ୍ରୀ କହିଲେ ଯେ ସନ୍ଧ୍ୟାବେଳେ ନିକେ ମୁଦ୍‌ଗଲ ବାବୁ ଜରରେ ଶୋଇଛନ୍ତି । ସେ ଆପଣଙ୍କୁ ଡ଼ାକିବାକୁ କହିଲେ । "

"କ'ଣ, ସେ ବି ଅଗ୍ରୱାଲଙ୍କ ପରି କେଇ ଘଣ୍ଟା ଭିତରେ ସ୍ତ୍ରୀଲୋକଟିଏ ଅବସ୍ଥା ଭୋଗ କଲେ ? " ବ୍ୟଙ୍ଗାତ୍ମକ ଦୃଷ୍ଟିରେ ସେ ପ୍ରଶ୍ନ କଲା । " ଆଜି ସନ୍ଧ୍ୟାବେଳେ ତ ବ୍ୟାଡ଼୍‌ମିଣ୍ଟନ ଖେଳୁଥିଲେ ।" ପୁନରାୟ ମନେ ମନେ ଭାବିଲା; "ଆଜି ଶନିବାର, ସ୍ୱାମୀ ପାଖରେ ମନଭରି ଶୋଇବ ବୋଲି ଜର ହୋଇଛି ବୋଲି କହି ଦେଲା, ପଛକେ କେଉଁ ପଡ଼ୋଶୀ ଛଟପଟ ହୋଇ ମରିଯାଉ, ଶଳେ ପାଠଶାଠ ପଢ଼ିଛନ୍ତି ! ଅଉ ମୋତେ ଆଣି ଏ ଜଞ୍ଜାଳରେ ପୂରେଇ ଦେଲା ।

ଶ୍ରୀମତୀ ଅଗ୍ରୱାଲଙ୍କ ସମ୍ପର୍କରେ ଶୁଣିଥିବା ସ୍କାଣ୍ଡାଲ କଥା ତାର ପୁଣି ମନେ ପଡ଼ିଗଲା ଓ ସେ କହିଲା, "ଆଜି ଶନିବାର ତ, ମିଃ ଏବଂ ମିସେସ ମୁଦ୍‌ଗଲ ଡ଼ିଷ୍ଟର୍ବ ହେବାକୁ ଚାହିଁଲେ ନାହିଁ ।" ଏକ ଅଶ୍ଳୀଳ ଭାବାତ୍ମକ ଆଖିରେ ଶ୍ରୀମତୀ ଅଗ୍ରୱାଲଙ୍କୁ ନିରୀକ୍ଷଣ କରି ଚାଲିଲା, ସେ ଜାଣିବାକୁ ଚାହୁଁ ଥିଲା ଯେ ମହିଳା ଜଣକ ଠିକ୍ ସେଇକଥା ଭାବୁଛନ୍ତି କି ନାଁ । । ଏବେ ସେ କେବଳ ଜଣେ ମହିଳାକୁ ନୁହେଁ ବରଂ ସାହିର ଜାହା ପ୍ରତି ସମ୍ମାନଜନକ ବ୍ୟବହାର କଲାପରି ମାନସିକ ସ୍ଥିତି ଦୂରେଇ ବସିଲା । " ଆପଣ ଘୋଷବାବୁଙ୍କ ଘରକୁ ଯାଇଥିଲେ ? ତାଙ୍କର ସ୍କୁଟର ଅଛି । ସେ ଯାଇଥିଲେ ଅତିଶୀଘ୍ର ଡାକ୍ତର ଡ଼ାକି ଆଣି ପାରିଥା'ନ୍ତେ । "

" ହଁ, ତାଙ୍କ ଘରକୁ ବି ଯାଇଥିଲି ।" ଶ୍ରୀମତୀ ଅଗ୍ରୱାଲ ଉତ୍ତର ଦେଲେ ଓ ତାଙ୍କ ସ୍ୱରରେ ଏହି ଲୋକଟିର ବ୍ୟବହାର ଉପରେ ବିରକ୍ତି ସୃଷ୍ଟି ଦେଉଥିଲା । ଏବେ କିଛି ଭାବିବା-ବୁଝିବା, ଶୁଣିବା-କହିବା ଅବସ୍ଥାରେ ସେ ନଥିଲେ । ସ୍ୱାମୀଙ୍କ ମୃତ୍ୟୁର ଭୟ ମଧ୍ୟ ଆଉ ତାଙ୍କର ମସ୍ତିଷ୍କରେ ଉତ୍ତେଜନା ସୃଷ୍ଟି କରିପାରୁ ନଥିଲା । ବରଂ ଏକ ବିଚିତ୍ର ଅସହାୟତା ତାଙ୍କୁ କବଳିତ କରି ସାରିଥିଲା , ଅଥଚ ଲୋକଟା ପ୍ରଶ୍ନ ପରେ ପ୍ରଶ୍ନ କରୁଥିଲା । ସେ ପଚାରୁଥିଲା, " ସେଠି କ'ଣ ଜବାବ ମିଳିଲା ? "

ସମ୍ଭବତଃ ସେ ଉତ୍ତର ଦେଲେ, "ଘୋଷବାବୁ ଘରେ ନଥିଲେ ।"

ଲୋକଟା ଭୟଙ୍କର ରାଗି ଉଠିଲା, "ଏକଥା ତାଙ୍କ ସ୍ୱାସ୍ଥ୍ୟ ଅପେକ୍ଷା ବଳି ନାହିଁ ତ ? ଆଜିଠୁ ଏତେ ପିଲାବେଳୁ ସେଇଟା ଭୀଷଣ ମିଛୁଆ ବଦମାସ ହେଇଗଲାଣି । ଲୋକମାନେ ତ ପିଲାଏ ମିଛ କହିବା ଟାକୁ ଆଉ ଗୁରୁତ୍ୱ ଦେଉ ନାହାନ୍ତି ।"

" ମୋର ତାଙ୍କ ଗୁଜରଟୋକା ସାଙ୍ଗରେ ଦେଖା ହୋଇଥିଲା । ମୁଁ ତାକୁ ଅଗ୍ରଓ୍ୱାଲଙ୍କ ଅସୁସ୍ଥତା ସମ୍ପର୍କରେ କହିଥିଲି ।"

"ତାହା ମିଛ ହେ ଟୋକାଟା କହିଥିବ । ମୂର୍ଖ ଅଶିକ୍ଷିତ ଗାଉଁଲି ହେଲେ ଯାହା ହୁଏ । କିଏ ମଲା କି ଗଲା ସେଥିପ୍ରତି ତାର କୋଉ ଖାତିର ଅଛି । ସେ ଭାବିଥିବ ଯେ ଦୋଷିବାରୁ ହୁଏତ ତାକୁ ଡାକ୍ତର ଡାକିବାକୁ ପଠେଇ ଦେଇ ପାରନ୍ତି । ସେଥି-ପାଇଁ ମୂଳରୁ ନାହାନ୍ତି ବୋଲି କହିଦେଲେ କଥା ସରିଲା ।"

ଏତେବେଳକୁ ହଠାତ ସେ ଲକ୍ଷ୍ୟ କଲା ଯେ ସେ ଆସିଲା ବେଳଠାରୁ ଏ ଯାଏଁ ଅଗ୍ରଓ୍ୱାଲ ବାଉଳା ହୋଇ ନାହାନ୍ତି । ଜବାବ ମାଗିଲା ଢଙ୍ଗରେ ସେ କହିଲା, "ଆପଣ ତ କହୁଥିଲେ ଡ଼ିଲେରିୟମରେ ଅଛନ୍ତି । କାହିଁ ? ଡ଼ିଲେରିୟମ ଅବସ୍ଥାରେ ଲୋକ ବାଉଳା ଗୁଡ଼ଉଳା ହୁଏ । କିନ୍ତୁ ଇଏ ତ ଚୂପ୍‌ ଚାପ୍‌ ଶୋଇଛନ୍ତି ।"

" ମୁଁ ଯେତେବେଳେ ଆପଣଙ୍କ ପାଖକୁ ଯାଇଥିଲି ସେତେବେଳେ ସେ ପ୍ରଳାପ କରୁଥିଲେ । ମଝିରେ ମଝିରେ ଚୂପ ହୋଇ ଯାଉଥିଲେ ।" ଡାକ୍ତର ତାଙ୍କ ଦାରେ ଟେଣ୍ଡର ହେଉଥିବାର ଦେଖି ସେ ଉଦ୍‌ବିଗ୍ନ ହୋଇ ପଡ଼ିଥିଲେ ।

" ଆଚ୍ଛା, ଆପଣ ତାଙ୍କୁ କି ବଟିକା ଦେଇଥିଲେ ମୋତେ ଟିକେ ଦେଖେଇଲେ ।" ଏମିତି ସବୁ ମନକୁ ମନ ମେଡ଼ିସିନ ଖାଇଲେ ଅଉ କଣ ହୁଅନ୍ତା ? ଏଥିରେ ଖାଲି ଆପଣଙ୍କର ନୁହେଁ, ଅନ୍ୟମାନଙ୍କ ପାଇଁ ମଧ୍ୟ ବିପତ୍ତି ସୃଷ୍ଟି ହୋଇଥାଏ ।"

" ସାରଡନ ! " ସେ କହିଲେ ଓ ଅନ୍ୟ ଆଡ଼େ ମୁହଁ ବୁଲେଇ ନେଲେ । ଲୋକଟା ପ୍ରତି ତାଙ୍କ ମନରେ ଭୟଙ୍କର ବିରକ୍ତି ଜମାଟ ବାନ୍ଧିଥିଲା ଓ ସେ ତାହାକୁ ଲୁଚେଇ ପାରୁନଥିଲେ । ବର୍ତ୍ତମାନ ସ୍ୱାମୀଙ୍କର ବିପଜ୍ଜନକ ଅବସ୍ଥା ଲାଗି ଯେଉଁ ଡର ଥିଲା ତାହା କ୍ରମେ କମିଗଲା ପରି ମନେ ହେଉଥିଲା । ଯଦି ଆପଣ ଦୟାକରି ତାଙ୍କ ପାଖରେ କିଛି ସମୟ ରହନ୍ତେ ତେବେ ମୁଁ ଯାଇଁ ଡାକ୍ତରଙ୍କୁ ଡାକି ଆଣନ୍ତି । ଏବେ ତ ଏତେ ଡେରି ହୋଇ ନାହିଁ । ଗୋଟାଏ ବୁଝିଟା ଯାଏ ତ ଲୋକମାନେ ରାସ୍ତାରେ ଯାଆ ଆସ କରୁଛନ୍ତି । ଗାଡ଼ି ମଟର ମଧ୍ୟ ଯିବା ଆସିବା କରୁଛି । ଫ୍ରେଣ୍ଡସ୍ କଲୋନୀ ଶେଷ ମୁଣ୍ଡରେ ତ ଡାକ୍ତରଙ୍କ ଘର ।"

ଜଣେ ସ୍ତ୍ରୀ ଲୋକ ଏତେ ରାତିରେ ଏକୁଟିଆ ଡାକ୍ତର ଡାକିବାକୁ ଯିବ ଓ ସେ ଘରେ ରହିବ ? କଥାଟା ତାକୁ ଭଲ ଲାଗିଲା ନାହିଁ । କାଲି ସକାଳୁ ଲୋକେ ଶୁଣିଲେ ତାକୁ କଣ ବୋଲି ଭାବିବେ ? ଏକଥା ହୋଇ ପାରିବ ନାହିଁ । ସେ କହିଲା, "ନା; ଆପଣ କେମିତି ଯିବେ ? ଡାକ୍ତରଙ୍କ ଆସିବା ବ୍ୟବସ୍ଥା କରାହେବ । ମୁଁ ଏବେ ଯାଇଁ ଦେଖୁଛି, ଘୋଷବାବୁ ଫେରିଲେଣି କି ନାହିଁ ।" ଏବଂ ଖଟରେ ନିର୍ବେଦ ଭାବରେ ଶୋଇ ରହିଥିବା ଅଗ୍ରୱାଲଙ୍କୁ ଏକ ନିଃସଙ୍ଗ ଦୃଷ୍ଟିପାତ କରି ଘୋଷବାବୁଙ୍କୁ ଡାକିବା ପାଇଁ ସେ ଚାଲିଗଲା ।

ଘଣ୍ଟାଏ ସାରା, ମୋଟେ ଡେରି କରନ୍ତୁ ନାହିଁ । ସେ କାନ୍ଦି ପକାଇଲେ ।

ଦଶମିନିଟ୍ କାଳ ଘୋଷବାବୁଙ୍କ ଦୁଆରେ ଡାକିଲେ ମଧ୍ୟ କେହି ଶୁଣିଲେ ନାହିଁ । ସେ ଏହି ଘୋଷ ଲୋକଟିକୁ ଭଲ ଭାବରେ ଜାଣେ । ପର ଲାଗି ନିଜର ସାମାନ୍ୟ ଅସୁବିଧା ହେବା ପାଇଁ ସେ ପ୍ରସ୍ତୁତ ନୁହେଁ । ଅବଶ୍ୟ ତାହାର ଘୋଷବାବୁଙ୍କ ସାଙ୍ଗରେ ଭଲ ପଡ଼େ, କିନ୍ତୁ ଛୋଟିଆ ମୋଟିଆ ମତପାର୍ଥକ୍ୟର ଘଟଣା ଯେ ନାହିଁ ଏମିତି ନୁହେଁ । ସେହି ସାମାନ୍ୟ କଥାକୁ ନେଇ ଘଟିଥିବା ମନୋମାଳିନ୍ୟର ମୁହୂର୍ତ୍ତ କିଛି ପୁରୁଣା କିଛି ନୂଆ, ତା ମନରେ ଉଙ୍କି ମାରିଲା । ସେ ଆହୁରି ଜୋରରେ କବାଟ ପାହିରେ ଡାକିଲା । ଯେତେବେଳେ କୌଣସି ଉତ୍ତର ମିଳିଲା ନାହିଁ ସେତେବେଳେ ନୈରାଶ୍ୟ ସହିତ ଏକ ବିଚିତ୍ର ଆନନ୍ଦ ମଧ୍ୟ ସେ ଅନୁଭବ କଲା । ଘୋଷ ଯଦି ଭିତରେ ଲୁଚିକରି ରହେ ଅଥଚ ମୃତ୍ୟୁଶଯ୍ୟାରେ ପଡ଼ିଥିବା ଜଣେ ବନ୍ଧୁ ଓ ପଡ଼ୋଶୀଙ୍କୁ ସାହାଯ୍ୟ କରିବା ପାଇଁ ଯଦି ସେ ନିଜେ ନବାହରେ ତେବେ ତାହାର ଅସଲ ରୂପ ପଦାରେ ପଡ଼ିଯିବ । ଏକ୍ସ୍‌ପୋଜ୍ ହୋଇଯିବ ।

ବାରଣ୍ଡାରେ ଶୋଇଥିବା ଚାକର ପିଲାଟି ଶେଷକୁ ଉଠିଲା ଓ ପୂରା ମିନିଟିଏ କାଳ ଭଡ଼ ମୋଡ଼ ହୋଇ, ଆଖି ଜକେଇ, ନିଦ୍ରାଜନିତ ବିମୂଢ଼ତା ଭିତରେ ତାକୁ ନିରୀକ୍ଷଣ କରିବାକୁ ଲାଗିଲା । ତା'ପରେ ନିଜକୁ କିଞ୍ଚିତ ପ୍ରସ୍ତୁତ କରି ଚିଡ଼ିଚିଡ଼ା ଗଳା-ରେ କହିଲା, "କ'ଣ ହେଲା ଆଜ୍ଞା ? ଏତେ ରାତିରେ ଆପଣଙ୍କର କି କାମ ପଡ଼ିଲା ?"

ଚାକର ଟୋକାର ଅପରାଧକୁ ଅଣଦେଖା କରି ସେ ଯଥାସମ୍ଭବ କୋମଳ ସ୍ୱରରେ କହିଲା, "ଘୋଷବାବୁଙ୍କୁ ଟିକିଏ ଦେଖା କରିବାର ଅଛି, ଅଗ୍ରୱାଲବାବୁଙ୍କର ଭାରି ଦେହ ଖରାପ । ଜଲଦି ଡାକ୍ତର ଡାକିବାକୁ ହେବ; ନ ହେଲେ ହୁଏତ ସେ ମରି ଯାଇ ପାରନ୍ତି । ଘୋଷବାବୁଙ୍କର ସ୍କୁଟରଅଛି । ସେ ଜଲଦି ଯାଇଁ ଡାକ୍ତର ଡାକି ଆଣି ପାରିବେ । ମୋ ପାଖରେ ଗାଡ଼ି ଘୋଡ଼ା ନାହିଁ ।

ଆଗରୁ ସେ ଟୋକାଟା ଏସବୁ କଥା ଶୁଣିଥିଲା । ଶ୍ରୀମତି ଅଗ୍ରୱାଲ ଗଲା ପରେ ପରେ ଘୋଷ ଆସିଥିଲା ଏବଂ ଚାକରଠାରୁ ଅଗ୍ରୱାଲର ଦେହ ଖରାପ କଥା ଶୁଣି ସେ

ଖବ ନେଇଥିଲା ଯେ ଡାକ୍ତର ଡାକିବା ପାଇଁ ଏନ୍ଥା ଭିତରେ ଅଉ କଏ ଜଙ୍କୁ ଗୃହ୍ଲା ଯିବଣି । ତେଣୁ ସେ ନିଶ୍ଚିନ୍ତରେ ଶୋଇଗଲା ।

"ବାବୁ ଶୋଇ ପଡ଼ିଲେଣି । କୌଣସି ଅବସ୍ଥାରେ ମଧ୍ୟ ନଉଠେଇବାକୁ ଅନ୍ତର କରିଛନ୍ତି ।"

ଏଇକ୍ଷିଣିକା ଘୋଷ ଘରେ ନଥିଲେ ଆଉ ଏତେ ଜଲଦି ଶୋଇଗଲେ ? ସେ ଭାବିବାକୁ ଲାଗିଲା । ସେଇଠୁ ସେ ଶ୍ରୀମତୀ ଅଗ୍ରୱାଲଙ୍କୁ ସନ୍ଦେହ କଲା । ହୁଏତ ସେ ଘୋଷବାବୁଙ୍କ ଘରକୁ ଆସି ନାହିଁ । ମୋତେ ମିଛରେ କହୁଛି । ଯଦି ଘୋଷଘରକୁ ଯାଇନାହିଁ ତେବେ ମୁଦ୍‌ଗଲ ଘରକୁ ଯିବା କଥା ମଧ୍ୟ ତାହା ମିଛ । ଅର୍ଥାତ ସିଧା-ସଳଖ ମୋର ପାଖକୁ ଚାଲି ଆସିଛୁ । ମୁଦ୍‌ଗଲ ଓ ଘୋଷଙ୍କ ଘରକୁ ଯାଇ ନଗର ବୁଲାଇ ଫେରିଲା ପରେ ମୋ ପାଖକୁ ଆସିଛୁ ବୋଲି କହିବାର କି ତାତ୍ପର୍ଯ୍ୟ ? ଏ ସମ୍ପର୍କରେ ଘୋଷର ଚାକର ପାଖରୁ 'ଘଟଣା' ସମ୍ପର୍କରେ ଜାଣିବାକୁ ଚେଷ୍ଟା କରିବା ଅପେକ୍ଷା; ( ଜାଣିକରି ମଧ୍ୟ କି ଲାଭ ଯେ ) ବରଂ ··· । ସେ ଏଠିକୁ ଆସିଥିଲେ ତ ଚାକର ଠୋକାଠା ନିଶ୍ଚୟ କହିଥାଆନ୍ତା । ଏଇ ଗ୍ରେଟିଆ କଥାରେ ଏତେ ମିଛ କହିବା କ'ଣ ଲୋଡ଼ା ?

ଚାକର ପିଲାକୁ ସେ କହିବାକୁ ଆରମ୍ଭ କଲା, "ଅଗ୍ରୱାଲ ଘୋଷ ବାବୁଙ୍କର ଘନିଷ୍ଠ ବନ୍ଧୁ । ସେଇଥି ପାଇଁ ମୁଁ ଏଠାକୁ ଆସିଛୁ । ସେ ମଲାଗଲା ହୋଇ ପଡ଼ିଛନ୍ତି । ଯଦି ଶୀଘ୍ର ଡାକ୍ତର ଡକା ନଯାଏ ହୁଏତ ତାଙ୍କ ପ୍ରାଣ ଚାଲିଯାଇପାରେ । ପୁଣି ସକାଳୁ ଘୋଷବାବୁ ଏକଥା ଜାଣିବେ ଯେ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ଡାକ୍ତର ନଆସିବା ହେତୁରୁ ମୃତ୍ୟୁବରଣ କଲା ଏବଂ ତୁ ତାଙ୍କୁ ଉଠେଇଲୁ ନାହିଁ ତେବେ ତରଦାନକୁ ଦୁଃଖ ରହିଯିବ ତାଙ୍କର । ଆଉ ସେ ତୋତେ କ'ଣ କହିବେ ବିଚାର କରୁ । ତୁ ନିଜେ ଚିନ୍ତା କର । ମୁଁ ତୋତେ କିଛି କହୁ ନାହିଁ ।"

"ଥରେ ଏମିତି ରାତିରେ ବାବୁଙ୍କୁ ଉଠେଇଥିଲି ବୋଲି ସେ ମୋତେ ଚାକିରିରୁ ବାହାର କରି ଦେଇଥିଲେ । ବହୁ କଷ୍ଟରେ ମୋତେ ସେ ପୁଣି ରଖିଲେ, ମୁଁ ତାଙ୍କୁ ଜମାରୁ ଉଠେଇବି ନାହିଁ ।" ଚାକର ପିଲା କହିଲା ।

"ତୁ ଉଠେଇବା ଦରକାର ନାହିଁ । ମୁଁ ଉଠେଇବି ।"

"ନାଁ । ଆଜ୍ଞା, ସେକଥା କୁହନ୍ତୁ ନାହିଁ । ଆପଣ ଉଠେଇଲେ ମଧ୍ୟ ବାବୁ ମୋ ଉପରେ ରାଗିବେ । ଆପଣ ଆଉ କାହା ପାଖକୁ ଯାଉ ନାହାନ୍ତି । ମୁଦ୍‌ଗଲ ବାବୁଙ୍କୁ ଡାକିବେ ଯାଆନ୍ତୁ ।"

"ମୁଚଗଲ୍ ବାବୁ ତ ନିଜେ ଜରରେ ପଡ଼ିଛନ୍ତି । ତାଙ୍କ ପାଇଁବି ଡ଼ାକ୍ତର ଡ଼ାକିବା ଦରକାର । ମୁଁ ଏଇକ୍ଷଣି ତାଙ୍କଠାରୁ ଆସୁଛି । ସେ ହିଁ ମୋତେ ଘୋଷବାବୁଙ୍କୁ ଡାକିବାକୁ କହିଲେ ।"

" ତାହାହେଲେ ଆପଣ ଆଉ କାହା ପାଖକୁ ଯାଆନ୍ତୁ ।". କହି ସେ ଅଲୁଅ ଲିଭେଇ ଦେଲା ।

ଅତ୍ୟନ୍ତ ବ୍ୟସ୍ତ ହୋଇ ସେ କହିଲା, " ଅଗ୍ରୱାଲ ବାବୁ ମରଣାସନ୍ନ ଅବସ୍ଥାରେ ପଡ଼ିଛନ୍ତି । ଜଣେ ଲୋକର ପ୍ରାଣ ବଞ୍ଚେଇବା ପାଇଁ ବି କ'ଣ ଏତକ ମଧ୍ୟ କରି ପାରିବୁ ନାହିଁ ?" ଏହା କହି ସେ ଗୃହର ପିଲାଟାକୁ ପ୍ରଭାବିତ କରିବା ପାଇଁ ଅଗ୍ରୱାଲଙ୍କର ମରଣାସନ୍ନ ଅବସ୍ଥା ପ୍ରତି ଦୟା ଓ ସମ୍ଭାବ୍ୟ ଦୁର୍ଘଟଣାର ଭୟର ଏକ ମିଶ୍ରିତ ଭାବ ସୃଷ୍ଟି କରୁଥିଲା । ଘଟଣାର ଗୁରୁତ୍ୱବୃଦ୍ଧି ଓ ତା' କଥାର ବିଶ୍ୱାସନୀୟତା ସୃଷ୍ଟି କରିବାକୁ ଚେଷ୍ଟା କରୁଥିଲେ ତାହାର ମନରେ ଅଗ୍ରୱାଲ ପ୍ରତି ପ୍ରକୃତ ସମବେଦନା ଓ ସହାନୁଭୂତି ଜାଗରିତ ହେଲା ।

ଗୃହର ପିଲାଟି ମଧ୍ୟ ହଠାତ ଭାରସାମ୍ୟ ହରେଇ ଇତସ୍ତତଃ ଚିନ୍ତା କରିବାକୁ ଲାଗିଲା ମାତ୍ର ପରକ୍ଷଣରେ ନିଜକୁ ସମ୍ଭାଳି ନେଇ କହିଲା, "ମୁଁ କ'ଣ କରି ପାରିବି ? ଆପଣ ନହେଲେ ନିଜେ ପଳାଉ ନାହାନ୍ତି ।" କଥାତକ ଗୋଟାଏ ଲୟରେ କହି କହି ସେ ତା' ବିଛଣାରେ ଲମ୍ବିଗଲା ।

କୁକୁରମାନଙ୍କର ଭୁକିବାର ଶବ୍ଦ ପୁନଃ ତାହାର କର୍ଣ୍ଣକୁହରରେ କମ୍ପନ ସୃଷ୍ଟି କଲା ।

ଗୃହର ପିଲାଟା ଅପେକ୍ଷା ଘୋଷ ଉପରେ ଭୀଷଣ ରାଗ ହେଲା ତାହାର । ପୁଣି କ୍ରୋଧ ସହିତ ତର୍କ ସାମିଲ ହୋଇଗଲା । ସେ ଭାବିଲା, ଶ୍ରୀମତୀ ଅଗ୍ରୱାଲ ଘୋଷ ଘରକୁ ଯାଇଥିଲେ । ସେତେବେଳେ ସେ ଘରେ ନଥିଲା । ଗୃହର ପିଲାଟା ଥିଲା । ଯେତେବେଳେ ସେ ଘରକୁ ଫେରିଥିବ ସେତେବେଳେ ଅଗ୍ରୱାଲର ଦେହ ଖରାପ ବିଷୟରେ ଗୃହର ପିଲା ନିଶ୍ଚୟ ଜଣେଇଥିବ । ଅଥଚ ରୋଗଶଯ୍ୟାରେ ପଡ଼ିଥିବା ପଡ଼ୋଶୀକୁ ସାହାଯ୍ୟ କରିବ କ'ଣ ଶଳା ଚୁପଚାପ୍ ପାଇଁ ଶୋଇଗଲା । ହୁଏତ ସେ ଏବେ ବି ଘର ଭିତରେ ବେଇଁଛି । ମୁଁ ଅଉ ଗୃହର ଟୋକା ଯାହା ଯାହା କଥା ହେଲୁ ସବୁ ଭିତରେ ଥାଇ ଶୁଣିଛି । ଏତେ ଜଲଦି କ'ଣ କାହାକୁ ନିଦ ହୁଏ ? ତଥାପି ମଧ୍ୟ ଶଳାର ହୃଦୟ ଟିକିଏ ତରଳିଲା ନାହିଁ ? ଗ୍ରେଟଲୋକ ହୋଇଥିବ । ଶଳା କଥା କହିଲା ବେଳେ ବଡ ବଡ଼ ବୌଦ୍ଧିକ କଥା କହିବ, ଅଥଚ ଗୋଟାଏ ସାଙ୍ଗ ମୃତ୍ୟୁ ଯନ୍ତ୍ରଣାରେ

ଛଟପଟ ହେଉଛୁ; ଆଉ ଏଇଟା ଶୋଇବାର ଛଳନା କରୁଛୁ । ହଜାଲୁ ଉଠିଲେ କହିବ କ'ଣ ନା ମୁଁ ଜାଣି ପାରିଲି ନାହିଁ । ଶଳା ଆପଣା ସ୍ୱାର୍ଥି ଲୋଭୀ ଲୋକ କେଉଁଠିକାର ।

ଶେଷକୁ ସକାଳ ହେଲେ ଘୋଡ଼ଟାକୁ ଆଗ ଏକ୍ସରସାଇଜ୍ କରିବ ବୋଲି ସ୍ଥିର କରି ଓ ସମସ୍ତଙ୍କ ଆଗରେ ତାର ଫମ୍ପା ପଣିଆର ମୁଖା ଖୋଲି ଦେବ ବୋଲି ଠିକ୍ କରି ନିଜେ ଡାକ୍ତର ଡାକିବାକୁ ଯିବ ବୋଲି ବାହାରିଲା । କିନ୍ତୁ ଯିବା ପୂର୍ବରୁ ଶ୍ରୀମତୀ ଅଗ୍ରୱାଲଙ୍କୁ ଯାଇ ଚିନ୍ତା ନ କରିବାକୁ କହି ଦେବା ଉଚିତ ବୋଲି ଭାବିଲା ।

" ମୁଁ ନିଜେ ଯାଉଛି, ଡାକ୍ତର ଡାକି ଆଣିବି ।" ସେ କହିଲା, " ଆପଣ ମୋଟେ ଚିନ୍ତା କରିବେ ନାହିଁ, କିଛି ହେବ ନାହିଁ ।"

ଆଗ ସେ ତା' ନିଜ ଘରକୁ ଗଲା । ତା'ର ପଡ଼ା ହୋଇଥିବା ବିଛଣାକୁ ଦେଖିଲା ବେଳକୁ ମୁଣ୍ଡର କେଉଁ କୋଣରେ ଗୋଟାଏ ପ୍ରଶ୍ନ ଉଠିଲା,— " ତୁ କ'ଣ ଭାବୁଛୁ ଯେ ଏବେ ବି ଡାକ୍ତର ଡାକିବାକୁ ଯିବାରୁ ରକ୍ଷା ପାଇ ପାରିବୁ ? " ଆଉ କୋଣରୁ ଜବାବ ମିଳିଲା, " ନା ; ତୁ ରକ୍ଷା ପାଇ ପାରିବୁ ନାହିଁ । ତୋତେ ଅଳବତ ଯିବାକୁ ପଡ଼ିବ । ଏଥିରୁ ତୋର ନିସ୍ତାର ନାହିଁ ।" ଘର କଣରେ ଛତାଟା ଥୁଆ ହୋଇଥିଲା । ଛତାଟାକୁ ହାତରେ ଧରି ପରଖି ନେଲା । ଲୁହାବେଣ୍ଟର ଛତା । କିନ୍ତୁ ପାଗଳାକୁକୁରଗୁଡ଼ାକ ଭୁକାଭୁକି ନକରି ବା କୌଣସି ପ୍ରକାର ସୂଚନା ନଦେଇ ଅତର୍କିତ ଭାବରେ କାମୁଡ଼ନ୍ତି । ଛତାକୁ ପରଖୁ ପରଖୁ ବେଶ କିଛି ସମୟ କଟିଗଲା । ଛତା ସୁରକ୍ଷା ଦେଇ ପାରିବ ବୋଲି ତା'ର ଦୃଢ଼ବୋଧ ହେଲା ନାହିଁ । ସହସା କଳ୍ପନାରେ ଗୋଟାଏ କୁକୁର ତା' ଆଡ଼କୁ ଝପଟି ଆସିଲା ପରି ମନେ ହେଲା ଓ ସେ ଛତାରେ ପାହାରେ କଷିଦେଲା । କୁକୁରଟା କେଁ କେଁ ହୋଇ ପଳେଇଗଲା ଓ ତା'ମନରେ ନିଜକୁ ରକ୍ଷା କରିବାର ଆତ୍ମବିଶ୍ୱାସ ସୃଷ୍ଟି ହେଲା ।

ପ୍ରାୟ ଫର୍ଲଙ୍ଗେ ଖଣ୍ଡ ଯାଇଛି କି ନାହିଁ ପଛରୁ ଗୋଟାଏ ଶବ୍ଦ ଶୁଣି ପାରିଲା । ବିକଳ ପରି ପଛକୁ ବୁଲି ପଡ଼ି ସେ ଦେଖିନେଲା । କେହି କୁଆଡ଼େ ନାହାନ୍ତି । ଗୁଣ୍ଡି ତା'ର ଧଡ଼ ଧଡ଼ ହୋଇ କମ୍ପିବାକୁ ଲାଗିଲା । ଡର ସାଙ୍ଗକୁ ନିଜର ଅସହାୟତା ଲାଗି ମନେ ମନେ ରାଗି ପାଚି ନାଲି ପଡ଼ିଗଲା । ଅଗ୍ରୱାଲର ଅସୁସ୍ଥତା ପାଇଁ ସେ ତାକୁ ହିଁ ଦୋଷୀ କଲା । "ଶଳା, ଦେଖିଲା ବେଳକୁ ମୋଟା ସୋଟା । ମାତ୍ର ଭିତରଟା ଭୁଚ୍ଛା ଫମ୍ପା । ଆଉ ଯୋଉ ଲୋକ ନିତି ପିଇବ, ସେ ସୁସ୍ଥ କୁଆଡ଼ୁ ରହିବ ? ହୁଏତ ତା ଭାର୍ଯ୍ୟା ମଧ୍ୟ ପିଉଥିବ । ଆଉ ତାର ମନେ ପଡ଼ିଗଲା ସେଇ ପୁରୁଣା ସ୍କାଣ୍ଡାଲ କଥା । ହଠାତ

ଏକା ବେଳକେ ଯୋଡ଼ାଏ କୁକୁର ଭୁକୁଥିବାର ଶୁଣି ତା' ଗୋଡ଼ ଦୁଇଟା ସ୍ଥିର ହୋଇଗଲେ । ଛତାକୁ ଖୁବ ଜୋରରେ ଧରି ବୁଲେଇ କରି ପିଟିବା ପାଇଁ ପ୍ରସ୍ତୁତ ହୋଇଗଲା । କେଇ ସେକେଣ୍ଡ ଭିତରେ ଝାଳ ଜମିଗଲା । କିନ୍ତୁ କୁକୁର ଦୁଇଟା କେଉଁଠି ବୋଲି ସେ ଠଉରେଇ ପାରିଲା ନାହିଁ । ସାହସ ବାନ୍ଧି ସେ ପୁଣି ଆଗକୁ ପାଦ ପକେଇଲା ।

ଆଜିକାଲି ଲୋକଗୁଡ଼ାକ କେଡ଼େ ଆପଣାସ୍ୱାର୍ଥୀ ହୋଇଗଲେଣି ଭାବି ସେ ବିରକ୍ତ ହୋଇ ଉଠିଲା । ଦେଖିଲା ବେଳକୁ ଦୁନିଆଁ ସାରା ସମସ୍ୟା ଉପରେ ଗରମାଗରମ ଆଲୋଚନା, ତର୍କ ବିତର୍କ, କିନ୍ତୁ କେହି କାହାର ଭଲ ମନ୍ଦରେ ସାହା ଭରସା ହୋଇ ଠିଆ ହେବାକୁ ପ୍ରସ୍ତୁତ ନୁହନ୍ତି । ଯିଏ ଯାହା ବାଟରେ ଅଛନ୍ତି । ସଭିଙ୍କ ପାଖରେ କିଛି ନା କିଛି ଆଳ । ଘୋଷ ଏକା ନୁହେଁ । ତା' ଭଳିଆ ସମସ୍ତେ, ଯେଉଁମାନେ ବଡ ବଡ କଥା କହନ୍ତି, ବୌଦ୍ଧିକ ଆଲୋଚନାରେ ଅନ୍ୟମାନଙ୍କୁ ବୋକା ବନାନ୍ତି ।

ସମାଜର ଦୟନୀୟ ପରିସ୍ଥିତି କଥା ଭାବୁ ଭାବୁ ସେ ହଠାତ ଠିଆ ହୋଇଗଲା । ସାମ୍ନାରୁ କୁକୁରଟାଏ ମୁଣ୍ଡଟେକି ତା' ଆଡ଼କୁ ମାଡ଼ି ଆସୁଥିଲା । ମାତ୍ର ଅଳ୍ପ ସମୟ ଭିତରେ କୁକୁର ଆଉ ତା' ଭିତରେ ଦୂରତ୍ୱ ବହୁତ କମି ଆସିଲା । ପ୍ରଥମେ କୁକୁରଟାକୁ ଡରେଇବା ପାଇଁ ଛତାଟାକୁ ବୁଲେଇବ ବୋଲି ଭାବିଲା । ଏମିତି କଲେ ଯେ କୌଣସି ଭଲ କୁକୁର ମଧ୍ୟ ଉତ୍ତେଜିତ ହୋଇ କାମୁଡ଼ି ପାରେ ବୋଲି ଭାବି ସେଥିରୁ ନିବୃତ୍ତ ହେଲା । ସବୁଠାରୁ ଭଲ ହେବ କୁକୁରଟାକୁ ତା' ବାଟରେ ଚାଲି ଯିବାକୁ ଦେଲେ । ସେ ରାସ୍ତାର ସବା କଡ଼କୁ ଘୁଞ୍ଚିଯାଇ ଠିଆ ହୋଇଗଲା ଓ ଛତାଟାକୁ ଏମିତି ଭଙ୍ଗୀରେ ମାରିବ ବୋଲି ଧରିଲା ଯେମିତି ସେ କୁକୁରଟାର ସାମାନ୍ୟତମ ସନ୍ଦେହ ହେବ ନାହିଁ । କୁକୁରଟା ବି ହଠାତ ଅଟକି ଗଲା । ପାଖ ବିଜୁଳି ଖୁଣ୍ଟିରେ ଗୋଡ଼ ଗୋଟାଏ ଟେକି ପରିସ୍ରା କଲା ଏବଂ ସତେ ଯେମିତି ଭାବିବାକୁ ଲାଗିଲା । ହୁଏତ ଲୋକଟା ଉପରେ ତାହାର ସନ୍ଦେହ ହେଉଥିଲା । ଅନ୍ୟ ସବୁ ଲୋକ ତ ନିଜ ନିଜ ବାଟରେ ଚାଲି ଯାଆନ୍ତି । କାହାର ମନରେଦକ ନାହିଁ କି ଚିନ୍ତା ନାହିଁ । ନହେଲେ ରାସ୍ତା କଡରେ ଅନ୍ଧାର ହେଇଥିଲେ ରାସ୍ତା ମଝିରେ ପରିସ୍ରା କରନ୍ତି । ଅଥଚ ଏଇ ଲୋକଟା ରାସ୍ତା କଡରେ ଠିଆ ହୋଇଛି ମାତ୍ର ପରିସ୍ରା କରୁ ନାହିଁ, ତା'ଛଡ଼ା ଛତାଟାକୁ ଏମିତିକା ବିଚିତ୍ର ଢଙ୍ଗରେ କିଆଁ ଧରିଛି ଯେ ?

କିଛି ସମୟ ପାଇଁ କୁକୁରଟା ଦ୍ୱନ୍ଦ୍ୱରେ ପଡ଼ିଗଲା । କିଛି ଦୂର ପଡ଼ିଆଟାରେ ଗୋଟାଏ କୁକୁରୀକୁ ଭେଟିବାକୁ ସେ ଯାଉଥିଲା । ଅଥଚ ଅନ୍ୟ ପକ୍ଷରେ ଏଇଟା

ତାହାର ନଜ ଏଶ୍ରା । ଆଉ ତା ନଜ ଏଶସ୍ଥାରେ ଯଦ କେହ ସନ୍ଦେହଧ ଲୋକ ପଶି ଆସେ ତେବେ ତାକୁ ମୁକାବିଲା କର ଲଅ ଆଣ୍ଡ ଅଡରି ରକ୍ଷାକରିବା ହେଉଛ ତାହାର ପ୍ରଥମ କର୍ତ୍ତବ୍ୟ । (ଏପରକି ତ ପୋଲିସବାଲାଙ୍କର ପାଦ କେବେ ବ ପଡେ ନାହିଁ । ଆଜି ଯାଏଁ ସେ ଏବଂ ତାହାର ସହଯୋଗୀମାନେ କେତେ ଚେଷ୍ଟା କରିକରି ଉଦ୍ୟମକୁ ବ୍ୟର୍ଥ କର ଯାଇଛନ୍ତି ।) ପ୍ରେମ ଏବଂ କର୍ତ୍ତବ୍ୟ ମଧ୍ୟରୁ ସେ ଶେଷକୁ କର୍ତ୍ତବ୍ୟକୁ ବାଛି ନେଲା ଏବଂ ନଜର ଆଗ ଗୋଡ଼ର ପଂଝାରେ କେତେଥର ଭୂଇଁକୁ ଘର୍ଷି ପକେଇଲା ପରେ ସେ ଏଇ ଲୋକଟି ଆଡ଼କୁ ଆଗେଇ ଆସିଲା, ସତେ ଯେମିତ ପୁଲିସବାଲା ଆସାମୀ ଆଡ଼କୁ ମାଡ଼ି ଯାଆନ୍ତି । ତା' ଆଡ଼କୁ କୁକୁରଟା ପାଖେଇ ଆସିଲାରୁ ତା' ହାତରେ ଛଡ଼ାଟାକୁ ମୁଠେଇ ମାରିବାକୁ ଉଞ୍ଚେଇଲା ଓ ତରତରେ କୁକୁରଟା ପଳେଇଯିବାକୁ ଅପେକ୍ଷା କରିବାକୁ ଲାଗିଲା । କୁକୁରଟି ମଧ୍ୟ ତାହାର ଦୁର୍ବଳତା ବୁଝିପାରିଲା ଏବଂ ଗୋଟାଏ ଜାଗାରେ ଠିଆ ହୋଇ ଖୁବ ଜୋରରେ ଭୁକିବାକୁ ଲାଗିଲା । ଆଉ ଏହି ଲୋକଟା ଯେ ଗୋଟାଏ ଅପରାଧୀ ସେ ବିଷୟରେ କୁକୁରଟିର ସାମାନ୍ୟତମ ସନ୍ଦେହ ରହିଲା ନାହିଁ ।

ଏହି ସ୍ଥିତ ବେଶ କେତେ ମିନିଟ ପର୍ଯ୍ୟନ୍ତ ଅପରିବର୍ତ୍ତିତ ରହିଲା । ମଝିରେ ମଝିରେ ଯେତେବେଳେ କୁଣ୍ଡୀଟିର କଥା ମନେ ପଡ଼ିଯାଉଥାଏ ସେତେବେଳେ ସେ ଜୋରରେ ଗୁଁ ଗୁଁ ହେବାକୁ ଲାଗୁଥାଏ । ଡରରେ ଲୋକଟି ପ ଦେ ପଛକୁ ହଟିଲେ ସେ ମଧ୍ୟ ପାଦେ ଆଗକୁ ମାଡ଼ି ଆସୁଥାଏ । ସ୍ୱା ଭିତରେ ଅନ୍ୟ କୁକୁରଗୁଡ଼ାକ ଯିଏ ଯେଉଁଠି ଥିଲେ ଭୁକିବାକୁ ଲାଗିଲେ ।

ସେତିକିବେଳକୁ ତା' ପାଖଦେଇ କାରଟାଏ ଖୁବ୍ ଜୋରରେ ଗଲିଗଲା । ସେ ଗାଡ଼ିଟାକୁ ରଖିବାକୁ ହାତ ଦେଖେଇଲା ମାତ୍ର ତାହା ରହିଲା ନାହିଁ । ଏତିକିରେ କୁକୁରଟାର ତନ୍ମୟତା ଭଙ୍ଗ ହେଲା ଓ କୁଣ୍ଡୀର ସ୍ମୃତିରେ ତା'ର ଚିତ୍ତ ଆନ୍ଦୋଳିତ ହେବାକୁ ଲାଗିଲା । ସେ ଧୀରେ ଧୀରେ ଭୁକିବାକୁ ଲାଗିଲା । ଏତେବେଳକୁ ସେ ନିଃସନ୍ଦେହ ହୋଇ ସାରିଥିଲା ଯେ ଲୋକଟା ଭୀଷଣ ଡ଼ର ଯାଇଛି ଓ ଆଉ କୌଣସି ପ୍ରକାର ଗଣ୍ଡଗୋଳ କରିବାର ସମ୍ଭାବନା ନାହିଁ । କେଇ ସେକେଣ୍ଡ ପରେ ସେ ଆଉ ଖଣ୍ଡେ ବାଟ ଆଗେଇ ଯାଇ ତା ପଂଝାକୁ ଘଷିବାକୁ ଲାଗିଲା ଓ ପରେ ନିଜ ବାଟରେ ଗଲିଗଲା ।

କେଇପାଦ ଯାଇଛି କି ନାହିଁ ତା' ମନରେ ରାଗ ପୁଣି ଫେରି ଆସିଲା । ସେ ଭାବିବାକୁ ଲାଗିଲା ଯେ ଏତେରାତିରେ ଏତେ ବିପଦ ବରଣ କରି ଅଗ୍ରଓ୍ୱାଲ ପାଇଁ ଡ଼ାକ୍ତର

ଡାକିବାକୁ । ଯେ ସେ ଯାଉଛି ତାହା ତା'ର କର୍ତ୍ତବ୍ୟ, ପଡ଼ୋଶୀ ହିସାବରେ ନୁହେଁ, ଜଣେ ମଣିଷ ହିସାବରେ ମନୁଷ୍ୟତାର ଦାୟିତ୍ୱରେ । ହେଲେ ଅଗ୍ରୱାଲ ନାମ ଧାରୀ ଲୋକଟାର କିଛି ମୂଲ୍ୟ ଅଛି କି ?

ସହସା ଅଉ ଦଶଟା କୁକୁର ତା'ପାଖ ଦେଇ ରେସ କରି ଚାଲିଗଲେ । ପ୍ରଥମେ ସେ ଡରରେ କମ୍ପି ଉଠିଲା ସତ ମାତ୍ର ବିପଦ ଦୂର ହୋଇ ଯିବାର ଦେଖି ସେ ସ୍ଥିର ହୋଇ ପୁଣି ଭାବିବାକୁ ଆରମ୍ଭ କଲା । ଅଗ୍ରୱାଲ ଜଣେ ଶିକ୍ଷକ । ହେଲେ ଜଣେ ଶିକ୍ଷକର ଉତ୍ତରଦାୟିତ୍ୱ ସେ ନିର୍ବାହ କରୁଛନ୍ତି କି ? କେବେ ନୁହେଁ । ବରଂ ସେ ପିଏ ଏବଂ ଲୋକଙ୍କୁ ପିଆଏ । ପିଇ କରି ଜୁଆ ଖେଳେ । ପଇସା ନେଇ ପିଲାଙ୍କୁ ପାସ କରେଇ ଦିଏ, କରାଏ ମଧ୍ୟ । ପ୍ରତିଦିନ କେଜାଣି କେତେ ରକମର ଖରାପ କାମ ଯେ ସେ କରେ ତା'ର ହିସାବ ନାହିଁ । ଗୋଟାଏ ଜେନରେସନକୁ ସମ୍ପୂର୍ଣ୍ଣ ଖରାପ କରି-ଦେବା ହେଉଛି ତା'ର ସ୍ୱାର୍ଥ ଧାରାର ଉଦ୍ଦେଶ୍ୟ, ଉଦ୍ଦେଶ୍ୟ କ'ଣ ? ବିଗାଡ଼ି ଚାଲିଛି । ତାହା ଛଡା ଏଇଲୋକଟା ତାହାର ଜୀବନକାଳ ଭିତରେ କାହାପାଇଁ କ'ଣ ଅବା କରିଅଛି ? ବହୁତ ଭାବିଲା ପରେ ଯେତେବେଳେ ଗୋଟାଏ ହେଲେ ଏମିତିକା ପରୋପକାର କରିଥିବା ଘଟଣାକୁ ମନେ ପକେଇ ପାରିଲା ନାହିଁ, ଅଗ୍ରୱାଲର ଚାରିତ୍ରିକ ମହତ୍ତ୍ୱକୁ ପ୍ରମାଣିତ କରି ପାରିଲା ପରି ତାଙ୍କର ଚାରିତ୍ରିକ ବୈଶିଷ୍ଟ୍ୟକୁ ସାମାନ୍ୟ ସ୍ୱୀକୃତି ଦେଇ ପାରିଲା ଭଳି ଏପରି କୌଣସି ଘଟଣା ଯେତେବେଳେ ସେ ମନେ ପକାଇଲା ନାହିଁ, ସେତେବେଳେ ସେ ଏଇ ଠକ ଶିକ୍ଷକଟି ଉପରେ ରାଗି ପାଚି 'ଫାୟାର' ହୋଇଗଲା ।

ହେଲେ ଏଇ ଲୋକଟା ଏକା କାହିଁକି ? ତାହା ଭଳିଆ ହଜାର ହଜାର ଲୋକ ସମାଜକୁ ଖରାପ କରି ସାରିଲେଣି, ପ୍ରତି ମୁହୂର୍ତ୍ତରେ ସମାଜକୁ ନଷ୍ଟ କରି ଚାଲିଛନ୍ତି, ସେ ସହାନୁଭୂତିଶୀଳ ହୋଇ ଭାବିବାକୁ ଲାଗିଲା । ରାସ୍ତାର ଗୋଟାଏ ପଟରୁ ଆର ପଟକୁ କୁକୁରଟାଏ ଅତିକ୍ରମ କଲା । ତା' ପଛେ ପଛେ ଆଉ ଗୋଟାଏ । ଅଗ୍ରୱାଲ ଭଳିଆ ଗୋଟାଏ ଲୋକର ଜୀବନ ରକ୍ଷା କରିବା ନିମିତ୍ତ ନିଜ ଜୀବନକୁ ବିପଦାପନ୍ନ କରିବା ପଛରେ ସେ କୌଣସି ଯୌକ୍ତିକତା ଖୋଜି ପାଇଲା ନାହିଁ । ଏ ଯାଏଁ କୁକୁରମାନଙ୍କର ଖରାପ ଦୃଷ୍ଟି ତାହା ଉପରେ ପଡ଼ିନାହିଁ, ତେବେ ପଡିବାକୁ କେତେ ସମୟ ଲାଗିବ ? ଯେ କୌଣସି ମୁହୂର୍ତ୍ତରେ ଏକ ଭୟଙ୍କର ଅଘଟଣ ଘଟି ଯାଇପାରେ । କଥାଟା ଭାବିଲା ବେଳକୁ ତାହାର ପାଦ ଦୁଇଟା ଆଉ ଠିକ ରୂପେ ପଡ଼ି ପାରିଲେ ନାହିଁ । ସେ ଏବେ ଫେରିଯିବା କଥା ଚିନ୍ତା କଲା ।

ଏହି ସାହିଟା ପାର ହୋଇଗଲେ ଆରମ୍ଭ ହେବ ଫ୍ରେଣ୍ଡସ କଲୋନି, ତା'ର ସବା ଆର ମୁଣ୍ଡରେ ଡାକ୍ତରଙ୍କ ଘର । କଲୋନିରେ ଅଫିସର, ବ୍ୟବସାୟୀ ଓ କଣ୍ଟ୍ରାକ୍ଟର

ଶ୍ରେଣୀର ଧନୀ ଲୋକ ବେଶୀ ସଂଖ୍ୟାରେ ରହନ୍ତି । ଏହି ଲୋକଗୁଡ଼ାକଙ୍କର କାର୍ଯ୍ୟ-କଳାପ ବିଷୟରେ ସେ ବେଶ କିଛି ଜାଣିଥିଲା ଓ ସେମାନଙ୍କ ସମ୍ପର୍କରେ ଅନେକ ସ୍କାଣ୍ଡାଲ ମଧ୍ୟ ଶୁଣିଥିଲା ।

କଲୋନୀରେ ପଶିଲା ବେଳକୁ ତାକୁ ପୁଣି ଡର ମାଡ଼ିଲା । କାରଣ ଏଠି ଅଧିକାଂଶ ବଙ୍ଗଳୋରେ ଆଲସେସିଆନ କୁକୁର ପୋଷା ହୁଅନ୍ତି । କେତେକ ସ୍ଥଳରେ କୁକୁରଙ୍କ ବେକରୁ ଶିକୁଳି ଖୋଲି ଛାଡ଼ି ଦିଅନ୍ତି । ଏହି ମୁକ୍ତ ଜୀବଗୁଡ଼ିକ ମଝିସଡକରେ ବସି ରହନ୍ତି ବା ବୁଲୁ ଥାଆନ୍ତି ଓ ତାକୁ ମନେ ହେଲା ଯେମିତି ସେ କୁକୁରଗୁଡ଼ାକ ପିକେଟିଙ୍ଗ କରୁଥାଆନ୍ତି । ଚାଲି ଚାଲି ଯାଉଥିବା ଲୋକଙ୍କୁ ଆତଙ୍କିତ କରନ୍ତି । ଥରେ ଦୁଇ ଥର ସେ ଏମାନଙ୍କ ହାବୁଡ଼ରେ ପଡ଼ି ଯାଇଥିଲା । ସେତେବେଳେ କୌଣସି କୁକୁର କାମୁଡ଼ି ନଥିଲେ । ମାତ୍ର ଗୋଟାଏ ଏମିତି ଭାବରେ ଶୁଙ୍ଘିଲା ଯେ ତାହା ଦେହର ପ୍ରତିଟି ରୋମ ଟାଙ୍କୁରି ଉଠିଥିଲା ଓ ସମଗ୍ର ଶରୀର ଭିତରେ ଗୋଟାଏ କରେଣ୍ଟ ଖେଳିଗଲା ପରି ବୋଧ ହେଲା । କଲୋନୀ ଛଡ଼ା ଦେଇ ଯିବା ମଧ୍ୟ କମ ବିପର୍ଜନକ ନୁହେଁ । ସେମାନେ ମଧ୍ୟ କୁକୁର ପୋଷିଥାଆନ୍ତି । ଆଉ ତାଙ୍କ କୁକୁରଗୁଡ଼ାକ ଆଲସେସିଆନଙ୍କଠାରୁ କୌଣସି ଗୁଣରେ କମ ମାରାତ୍ମକ ନୁହେଁ । ବରଂ ସେଗୁଡ଼ାକ ଜାତକୂଳ ସଂକୀର୍ଣ୍ଣ ହେତୁରୁ ଅଧିକ ବିଶ୍ୱାସଘାତକ । ସେଗୁଡ଼ାକ ଲୋକ ଦେଖିଲେ ଭୁକି ଭୁକି ପିଛରେ ଡରେଇବାକୁ ଚେଷ୍ଟା କରନ୍ତି, ସନ୍ଦେହ ଆଉ ନଥାଏ । ଜଣେ କେହି ନୂଆ ଲୋକ ଦେଖିଲା ମାତ୍ରେ ସେଗୁଡ଼ାକ ନ ଭୁକି କରି ରହି ପାରନ୍ତି ନାହିଁ । ଅଧିକନ୍ତୁ ନୂଆ ଲୋକଟି ପଛରେ କିଛି ବାଟ ଗୋଡ଼େଇ ଗୋଡ଼େଇ ଯିବା ସେମାନଙ୍କର ଅଭ୍ୟାସ । ଆଉ ଏଇ କୁକୁରଗୁଡ଼ାକ ବେଶୀ ସଂଖ୍ୟାରେ ପାଗଳା ହୁଅନ୍ତି । ଆଲସେସିଆନ କୁକୁରମାନଙ୍କୁ ପାଗଳା ନହେବା ପାଇଁ ଇଂଜେକସନ ଦିଆ ଯାଇଥାଏ ।

ଶେଷକୁ ଆଲସେସିଆନଙ୍କ ମେଳରେ ଯିବା ପାଇଁ ସ୍ଥିର କଲା । ପ୍ରଥମ ଘର ସାମ୍ନାରେ ପହଞ୍ଚିଛି କି ନାହିଁ ଗୋଟାଏ କୁକୁର ଭଳିଆ ଜିନିଷ ଦେଖି ତା ରୋମମୂଳ ଟାଙ୍କୁରି ଉଠିଲା । କିଛି ପାଦ ଆଗେଇ ଗଲା ପରେ ଦେଖିଲା ଯେ ଗୋଟାଏ ଘରର ସ୍ତମ୍ଭ ଉପରେ ଗୋଟାଏ ପ୍ରସ୍ତୁତ ଜାତୀୟ କୁକୁର ବସିଛି । ତାହା ଉପରେ କୁକୁରଟିର ଆଖି ପଡ଼ିଲା କ୍ଷଣି ସେ ଉଠି ଠିଆ ହୋଇଗଲା ଏବଂ ଗମ୍ଭୀର ଆତ୍ମପ୍ରତ୍ୟୟର ସହିତ ଗ୍ରୀବା ଟେକି ସ୍ତମ୍ଭ ଉପରକୁ ଚାଲିଆସିଲା । ସେଠୁ ଗୋଟାଏ ଲମ୍ଫାସିଡ଼ିରେ ଅଭ୍ୟସ୍ତ ପାଦରେ ଓହ୍ଲେଇ ଆସିଲା ତଳକୁ ଏବଂ ବେଶ ଅଳ୍ପ ସମୟ ଭିତରେ ଗେଟ ପାର ହୋଇ ରାସ୍ତା ଉପରେ ଆସି ହାଜର ହୋଇଗଲା । ଆଗ ଭାବିଲା ସେ ବାଁ ହାତ ମାଟି ରାସ୍ତାରେ ସେ ବାଟ

ଭାଙ୍ଗି ପଡ଼ିଲେଇବ । କିନ୍ତୁ ସେ ସେବାଟେ ଗଲା ନାହିଁ । କାରଣ ସେ ରାସ୍ତା ମୋଟେ ଦଶ ବାର ହାତ ଗଲା ପରେ ବନ୍ଦ ହୋଇ ଯାଇଥିଲା । କୁକୁର ଆସି ସାମ୍ନାରେ ଠିଆ ହୋଇଛି । ସେ ଛତାଟାକୁ ଖୋଲି ଦେଲା । ଆଉ ତାଣ ଆଡ଼ୁଆଳରେ ପାଖ ଦେଇ ପାର ହେଇଗଲା ବେଳେ ନିଜର ଡିଫେନ୍ସ ପାଇଁ କେଉଁ କେଉଁ କୌଶଳ ଅବଲମ୍ବନ କରିବ । ସେ କଥା ଭାବି ଚାଲିଲା । ସେ କୁକୁରଟାର ମନରେ ସାମାନ୍ୟତମ ସନ୍ଦେହ ସୃଷ୍ଟି କରିବା ପାଇଁ ଚାହୁଁ ନଥିଲା । ପାଖେଇ ଗଲା କ୍ଷଣି କୁକୁରଟା ଧୃଷ୍ଟତା ପୂର୍ବକ ଦାନ୍ତ ଓଗାଳି ଠିଆ ହୋଇ ରହିଲା ଓ ପରମୁହୂର୍ତ୍ତରେ କଡ଼େଇ ଗଲା । କିନ୍ତୁ ବାଟ ତାକୁ ଫର୍ଲେ କଲା ପରେ ଶେଷ ହେଲା ।

ଭଦ୍ର ବ୍ୟକ୍ତି ଏକ ଅପମାନ ଓ କ୍ରୋଧ ସେ ଅନୁଭବ କଲା । ଯଦି ଏହି ଲୋକମାନଙ୍କର କୁକୁର ତାକୁ କାମୁଡ଼େ ତେବେ ସେ ସେମାନଙ୍କର କ'ଣ କରିପାରିବ ? ତାକୁ କୁକୁର ଯଦି ଝୁଣ୍ଟି ପକାଏ ବା ଚିରି ଦିଏ ତେବେ ବି ତାଙ୍କର କ'ଣ ହୋଇ ଯାଉଛି ? ଯେତେବେଳେ ଯାବତ ଦୁର୍ନୀତି, ଭ୍ରଷ୍ଟାଚାର ଓ ଶୋଷଣ କଲେ ମଧ୍ୟ ସେମାନଙ୍କର କେହି କିଛି କ୍ଷତି କରିପାରୁ ନାହାନ୍ତି ସେତେବେଳେ ସାମାନ୍ୟ କୁକୁର କାମୁଡ଼ା ଲାଗି ତାଙ୍କର କିଏ କ'ଣ କରିପାରିବ ? ଏଇ କୁକୁରଟୁଡ଼ାକଙ୍କର ନିରଙ୍କୁଶତା ଓ ଧୃଷ୍ଟତା ସେମାନଙ୍କର ପାଳନକର୍ତ୍ତାମାନଙ୍କର ଉଚ୍ଛୃଙ୍ଖଳତା ଓ ବିବେକହୀନତାର ପ୍ରତୀକ ମାତ୍ର । ସେମାନଙ୍କ ନିକଟରେ ଆଇନ ମଧ୍ୟ ମୂଲ୍ୟହୀନ ।

ହଠାତ ଝୁମ୍ପୁଡ଼ି ଘରେ ରହୁଥିବା ମୂଲିଆ ମାନଙ୍କ ସମ୍ପର୍କରେ ସେ ଚିନ୍ତା କରି-ବାକୁ ଲାଗିଲା । ସେମାନଙ୍କୁ ଓ ସେମାନଙ୍କର ପିଲାଛୁଆମାନଙ୍କୁ ଦୁଇ ବକତ ଶୁଖିଲା ରୁଟି ମଧ୍ୟ ମିଳୁ ନାହିଁ ଅଥଚ ଏହି କୁକୁରଗୁଡ଼ା ବେଶ ଆରାମରେ ଅଛନ୍ତି । ଦୁଧ ରୁଟି, ମାଂସ ଭାତ, କେଜାଣି କେତେ କ'ଣ ଖାଉଛନ୍ତି, ତାଙ୍କ ଆଗରେ ବେଲା ଦେଖି କେତେ ଭଲ ମନ୍ଦ ବଡ଼ା ହୋଇ ଯାଉଛି । ତାକୁ ଥରେ କୌଣସି ଗୋଟାଏ କାର୍ଯ୍ୟାଳୟର ଚପରାଶି କହିଥିବା କଥା ମନେ ପଡ଼ିଗଲା । ତା' ଅଫିସରଙ୍କର ବିଲାତି କୁକୁର ପାଇଁ ପ୍ରତିଦିନ ଡାଏରୀ ଫାର୍ମରୁ ଗୋଟାଏ ଲେଖା । ବୋତଲ କ୍ଷୀର ସେ ଆଣୁଥିଲା । ଅଥଚ ନିଜ ପିଲାମାନଙ୍କୁ ଟୋପାଏ କ୍ଷୀର ଦେବା ଥିଲା ତାହାର ସାମର୍ଥ୍ୟର ବାହାରେ । ଗରିବ ଲୋକମାନଙ୍କର ପିଲାଏ ରୋଗ ବଇରାଗରେ ବିନା ଔଷଧ ପଥ୍ୟରେ ବିନା ଚିକିତ୍ସାରେ ମରୁଥିଲେ ଅଥଚ ଏଇ କୁକୁର ପାଇଁ ଡାକ୍ତର ବୈଦ୍ୟ ପର୍ଯ୍ୟାପ୍ତ ମାତ୍ରାରେ ଖଞ୍ଜା ହୋଇଥିଲେ । ଏହି କୁକୁରମାନଙ୍କୁ ଅତି ଆଦର ଯତ୍ନରେ ପୋଷା ଯାଉଥିଲା; ଅଥଚ ଗରିବ ଲୋକମାନଙ୍କ ପାଇଁ ସାମାନ୍ୟତମ ଚିନ୍ତା ମଧ୍ୟ ନଥିଲା । ସେମାନେ କେବଳ ଭୋକ ଉପାସରେ ମରନ୍ତି ନାହିଁ, ଅପମାନ ଓ ଗ୍ଲାନିରେ ମଧ୍ୟ ମରନ୍ତି । ପ୍ରଥମେ ସେମାନଙ୍କର ସ୍ୱାଭିମାନକୁ ମାରି ଦିଆଯାଏ, ସେମାନେ ଯେ ଜଣେ ଜଣେ

ମଣିଷ, ଉପଲବ୍‌ଧିକୁ ମାଣ୍ଡ ହୁଅ ଯାଏ । ତତ୍‌ପଶ୍ଚାତ ସେମାନଙ୍କର ଜାନ୍ତବ ଶରୀରର ମୃତ୍ୟୁ ଘଟେ । ମଣିଷ କୁକୁରଠାରୁ ମଧ୍ୟ ହୀନ ଅବସ୍ଥାରେ ରହିଛି । ଗ୍ରୀବଲାବେଳକୁ ଏହା ସତରେ କେତେ ଭୟଙ୍କର ସତ୍ୟ !

ଏ ସମସ୍ତ କଥା ଭାବିଲା ବେଳକୁ ତା' ମନରେ ସୃଷ୍ଟି ହୋଇଥିବା କ୍ରୋଧ ଏବଂ ଅପମାନ ଇଂପର୍ସନାଲ ହୋଇଗଲା ଏବଂ ମୁଣ୍ଡରେ ଭରିଗଲା ଘୃଣା ଏବଂ ହିଂସା । ସେ ହଠାତ ତା' ମନରେ ବସା ବାନ୍ଧିଥିବା ଡରକଥା ଭୁଲିଗଲା । ହଠାତ କୁକୁରଟାଏ ପାଖ ବଙ୍ଗଳାରୁ ବାହାରି ଆସି ତା' ଆଡ଼କୁ ଆଗେଇ ଆସିଲା । ପ୍ରଥମେ ସେ ମୁହୂର୍ତ୍ତିକ ପାଇଁ ଠିଆ ହୋଇଗଲା । ମାତ୍ର ପର ମୁହୂର୍ତ୍ତରେ ଶୋଷଣ ଭ୍ରଷ୍ଟାଚାର ଓ ବୁର୍ଜୁଆର ପ୍ରତୀକ ସ୍ୱରୂପ ଏହି ହିଂସ୍ର ପଶୁଟାକୁ ସମସ୍ତ ଶକ୍ତି ପ୍ରୟୋଗ କରି ଛଡ଼ାରେ ବାଡ଼େଇଲା ଓ ଗାଳିଦେବାକୁ ଆରମ୍ଭ କଲା । ଅପ୍ରତ୍ୟାଶିତ ଆକ୍ରମଣରେ ପଶୁଟା ମଧ୍ୟ କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲା । ସେ କଦାପି ଏପରି ଆକ୍ରମଣର ସମ୍ମୁଖୀନ ହୋଇ ନଥିଲା । ଆଜି ପର୍ଯ୍ୟନ୍ତ ସେ ଅନ୍ୟ ଲୋକଙ୍କୁ ଭୟ ଦେଖେଇ ଆସିଥିଲା । ଅବଶ୍ୟ ଲୋକମାନେ କୁକୁର ପ୍ରତି ଭୟ ନୁହେଁ କୁକୁରର ପାଳକ କର୍ତ୍ତାଙ୍କର ସ୍ଥିତିକୁ ଭୟ କରି ଚୁପ୍‌ଥିଲେ । ଏହି ଆଭିଜାତ୍ୟ ଓ ସ୍ଥିତି ସମ୍ପନ୍ନତାର ପ୍ରତୀକ ଏହି ପଶୁଟି ପଳେଇଗଲା । ବର୍ତ୍ତମାନ ସେ ଘନ ଘନ ନିଃଶ୍ୱାସ ଖୁବ୍ ଜୋରରେ ନେଉଥିଲା ଓ ଭିତରର ଉତ୍ତେଜନା କ୍ରମଶଃ ଅସହ୍ୟ ହୋଇଉଠୁଥିଲା ।

କଲୋନୀର ଶେଷରେ ଥିବା ଡାକ୍ତରଙ୍କର ବିରାଟ ବଙ୍ଗଳା ଏବେ ଦେଖାଗଲା । ଏଇ ଡାକ୍ତରଟାର ମଧ୍ୟ କୁକୁର ଥିବେ ଓ ସେବାରେ ମଧ୍ୟ ମୁକାବିଲା କରିବାକୁ ପଡ଼ିପାରେ ବୋଲି ସେ ଭାବିଲା । ମଣିଷଙ୍କଠାରୁ ପଇସା ଶୋଷି ଶଳା କୁକୁରଙ୍କୁ ପୋଷୁଛି ? ଷୋହଳ ଟଙ୍କା ଫିସ୍ ନେଉଥିଲା ତ ଧନୀ ଲୋକମାନଙ୍କର ଚିକିତ୍ସା କରୁଥିଲା । ପଇସା ନଥିବା ଲୋକ ତ ତାଙ୍କୁ ଡାକିପାରୁ ନଥିଲା ଓ କଷି କରି ପଇସା ଟାଣୁଥିଲା । ରୋଗୀ କେମିତି ଭଲ ହେବ, ସେ କଥା ଜମାରୁ ସେ ଭାବୁ ନଥିଲା, ତାହାର ଏକମାତ୍ର ଚିନ୍ତା କେମିତି ଟଙ୍କା ଆଦାୟ କରିବ ।

ଡାକ୍ତରଙ୍କ ବଙ୍ଗଳାର ଗେଟ୍ ଖୋଲି ମନକୁ ମନ ବକର ବକର ହୋଇ ପଶିଗଲା ଓ ଅଳ୍ପ ସମୟ ପରେ ସେ ବାରଣ୍ଡାରେ ପହଞ୍ଚି ଯାଇଥିଲା । ସେଇଠୁ ଦୁଇଟା ଆଲସେସିଆନ୍ କୁକୁର ଭୟଙ୍କର ସ୍ୱରରେ ଭୁକିବାକୁ ଆରମ୍ଭ କଲେ । ରକ୍ଷା ହୋଇଛି ସେ ଦୁଇଟା ଶିକୁଳିରେ ବନ୍ଧା ହୋଇଥିଲେ । କୁକୁର ଭୁକାରେ ତା' ମନରେ ଡାକ୍ତର ପ୍ରତି ଅଧିକ ଘୃଣା ଓ ଖରାପ ମନୋଭାବ ସୃଷ୍ଟି ହେଲା । ଦୁଇତିନି ମିନିଟ ଯାଏଁ କେହି ଘର ଭିତରୁ ବାହାରିଲେ ନାହିଁ । ଅର୍ଥାତ କୌଣସି ମରଣାପନ୍ନ ବ୍ୟକ୍ତିର ଚିକିତ୍ସା ପାଇଁ ଯଦି କେହି

ଆସି ଡ଼ାକ୍ତରଙ୍କ ଘରେ ପହଞ୍ଚେ ତେବେ ଡାକ୍ତରବାବୁଙ୍କ ଜାଗାରେ ତାଙ୍କର କୁକୁର ଆସି ସ୍ୱାଗତ ଜଣାଇବ ।

ଆଉ ଦୁଇ ଚାରି ଡାକ ମାରିଲା ପରେ, କେତେଥର କଲିଙ୍ଗ୍ ବେଲ ବଜାଇଲା ପରେ ମଧ୍ୟ ସେତେବେଳେ କେହି କବାଟ ଖୋଲିଲେ ନାହିଁ ବା ଉତ୍ତର ଦେଲେ ନାହିଁ ବା କୁକୁରଟାର ଭୁକିବା ମଧ୍ୟ ବନ୍ଦ ହେଲା ନାହିଁ, ସେତେବେଳେ ସେ ବେଶ୍ ଉତ୍ତ୍ୟକ୍ତ ହୋଇ ପଡ଼ିଲା ଓ କବାଟରେ ଜୋର୍ ଧକ୍କା ଦେବାକୁ ଲାଗିଲା । କିନ୍ତୁ ଏହି ଉତ୍ତେଜିତ ଅବସ୍ଥାରେ ମଧ୍ୟ ସେ ଭାବୁଥିଲା ଯେ ଯଦି କେହି କବାଟ ଖୋଲନ୍ତି ତେବେ ଯେ ପ୍ରଥମେ ତାକୁ କବାଟରେ ଧକ୍କା ମାରିବା ପାଇଁ ନିଶ୍ଚୟ ଆପତ୍ତି କରିବ । ହୁଏତ କଜିଆ ମଧ୍ୟ କରିପାରେ ତଥା ତାକୁ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକଟିଏ ବୋଲି ଭାବି ଅପମାନିତ କରିବାକୁ ଚେଷ୍ଟା କରିପାରେ । ଏହି ଅପମାନ ଜଣେ ଶୋଷକ ଦ୍ୱାରା ଗରିବର ଅପମାନ ହିସାବରେ ଏକାନ୍ତ ଦୁଃସହ । ମନେ ମନେ ସେ କବାଟ ଖୋଲିଲା ଲୋକଟି ସାଙ୍ଗରେ କଜିଆ କରିବାକୁ ପ୍ରସ୍ତୁତ ହୋଇଗଲା । ତା'ପରେ ପୂରା ମିନିଟିଏ କାଳ କଲିଙ୍ଗ ବେଲର ବୋତାମ ଚିପି ଧରି ଘର ଭିତରେ ଗୋଟାଏ ପ୍ରଳୟକାଳୀନ ଅବସ୍ଥା ସୃଷ୍ଟି କଲା । "ଶଳା ! ଅନ୍ୟାୟ ଭାବରେ ଠୁଳ କରିଥିବା ପଇସାରେ ପୂରା ଗୋଟାଏ ବୋତଲ ପିଇଦେଇ ପଡ଼ିଯାଇଛି," ସେ ଭାବିଲା ଏବଂ ଡାକ୍ତରକୁ ମନେ ମନେ ଗାଳି ଦେବାକୁ ଲାଗିଲା ।

ପ୍ରାୟ ପାଞ୍ଚ ମିନିଟକାଳ ଏମିତି ସଂଘର୍ଷରେ କଟିଗଲାପରେ ଦୁଆର ଖୋଲିଲା । "କୁହନ୍ତୁ ! ଆପଣଙ୍କର କ'ଣ ହେଉଛି ?" ପତଳା ହେଇ ବୁଢା ଡ଼ାକ୍ତର ଜଣକ ଏତେ କୋଳାହଳ ପାଇଁ ବିସ୍ମିତ ହୋଇଥିଲେ ମଧ୍ୟ ଅତ୍ୟନ୍ତ ଧୀର ଶାନ୍ତ ସ୍ୱରରେ ପ୍ରଶ୍ନ କଲେ ।

ଲୋକଟାର ମାନସିକ ସ୍ଥିତି ଡ଼ାକ୍ତରଙ୍କର ଆଶାତୀତ ସୌଜନ୍ୟ ଓ କଳ୍ପନାତୀତ ବିନମ୍ରତାର ଅନୁକୂଳ ନଥିଲା । ସେ ଏକ ପ୍ରଚଣ୍ଡ ଆଘାତ ପାଇଲା । ମାତ୍ର ନିଜକୁ ଯଥାସମ୍ଭବ ସହଜ ଏବଂ ସ୍ୱାଭାବିକ କରିନେଇ ବଡ ପାଟିରେ କହିଲା, "ମୋର ଜଣେ ପଡ଼ୋଶୀଙ୍କର ଭୀଷଣ ଦେହ ଖରାପ । ଆପଣ ଏଇକ୍ଷଣି ଚାଲନ୍ତୁ, ତାଙ୍କୁ ଦେଖି ଆସିବେ । ଡ଼େରି କରନ୍ତୁ ନାହିଁ ; ଆପଣଙ୍କ ଜିନିଷପତ୍ର ଆଣନ୍ତୁ ।"

"ଆପଣ କେଉଁଠି ରହନ୍ତି ? ଦେହ କ'ଣ ହୋଇଛି ?" ଡାକ୍ତର ଯଥାପୂର୍ବ କୋମଳ ସ୍ୱରରେ ପ୍ରଶ୍ନ କଲେ ।

ସେ ତ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରୁଥିଲା । ଏହି ଯୁଦ୍ଧରେ ନମ୍ରତା ଓ ଭଦ୍ରତାର ସ୍ଥାନ କାହିଁ ? ତଥାପି ଏଇ ଅନୁଭୂତି ସତ୍ତ୍ୱେ ସେ ଜାଣି ଶୁଣି କଡ଼ା ସ୍ୱରରେ କହିଲା, ମୁଁ କୋଉଠି ରହୁଛି ସେଥିରୁ ଆପଣ କଅଣ ପାଇବେ ? ଆପଣ ଜଲଦି ମୋ

ସାଙ୍ଗରେ ଯାଉନ୍ତୁ । ଆଉ ତା'ଛଡ଼ା ମୁଁ କ'ଣ ଡାକ୍ତର ଯେ ତାଙ୍କର ରୋଗକଥା ବୁଝିପାରିବି ? ଯଦି ବୁଝିପାରୁଥାଆନ୍ତି ତେବେ ଅପଣଙ୍କ ଦୁଆରକୁ ଆସନ୍ତି କାହିଁକି ଓ ଏଇ ବେହିସ୍ତା କୁକୁରର ଭୁକା ଶୁଣନ୍ତି କାହିଁକି ? ଜଲଦି ଯାଉନ୍ତୁ । ରୋଗୀର ଚେତା ନାହିଁ ଓ ଆମକୁ ଏଠୁ ବୁଲିମାଇଲ ଯିବାକୁ ହେବ ।

କ୍ଷଣକ ପାଇଁ ଉତ୍ତ୍ୟକ୍ତ ଲୋକଟାକୁ ନିରୀକ୍ଷଣ କରି ଡ଼ାକ୍ତର ପଚାରିଲେ, କେତେ-ବେଳୁ ଅଚେତା ହୋଇ ପଡ଼ିଛି ? ତାକୁ ଜର ହେଉଛି ? କୌଣସି ଆଘାତ କମ୍ବା ଶକ୍ ଲାଗିନାହିଁ ତ ? ରୋଗୀର ଅବସ୍ଥା ସମ୍ପର୍କରେ ଆପଣ ଯାହା ଯାହା ଜାଣିଛନ୍ତି କୁହନ୍ତୁ ଏବଂ ବିବ୍ରତ ହୁଅନ୍ତୁ ନାହିଁ ।

ଡାକ୍ତରଙ୍କର ସୌଜନ୍ୟ ଏବଂ ଭଦ୍ରତାକୁ ଆମ୍ଭସ୍ଥ କରି ସେ, ତଥାପି ଅଭଦ୍ର ଭାବରେ କହିବାକୁ ଲାଗିଲା, ଆପଣ ନିଜେ ଯାଇ ଦେଖିବେ ଯାଉନ୍ତୁ, ଏଠି କାହିଁକି ମିଛରେ ସମୟ ନଷ୍ଟ କରୁଛନ୍ତି ? ଯଦି ସ୍ତ୍ରୀ ଭିତରେ ଲୋକଟା ମରିଯାଏ ! ଯାଉନ୍ତୁ, ଆଣନ୍ତୁ ଆପଣଙ୍କ ଜିନିଷପତ୍ର । ମୁଁ ମୋଟେ ଡେରି ସହି ପାରୁନାହିଁ ।

ନିଜର ମନୋଭାବକୁ ଲୁଚାଇ ଡ଼ାକ୍ତର କହିଲେ, ମୁଁ ଯାଇ ପାରିବି ନାହିଁ । ମୋ କାର୍ ଖରାପ ହୋଇ ପଡ଼ିଛି । ସେ ହୁଏତ ମରଣାସନ୍ନ ରୋଗୀକୁ ଦେଖିବା ପାଇଁ ଯାଇ ପାରିଥାଆନ୍ତେ କିନ୍ତୁ ଲୋକଟାର ଆଶାତୀତ ଅଭଦ୍ର ବ୍ୟବହାରରେ ବ୍ୟକ୍ତିବ୍ୟକ୍ତି ଭୟଭୀତ ହୋଇ ପଡ଼ିଲେ ଓ ନଯିବା ପାଇଁ ଉଚିତ ମଣିଲେ ।

ସେ ଚିତ୍କାର କରି କହିଲା ଆପଣ ଯିବେ ନାହିଁ ? ଆପଣଙ୍କର ଉଦ୍ଦେଶ୍ୟ କ'ଣ ଆପଣ ଗୋଟାଏ ଲୋକକୁ ଏମିତି ଛଟପଟ ହୋଇ ମରିବା ଚାହାନ୍ତି ? ଆପଣଙ୍କ ଦୃଷ୍ଟିରେ ଗୋଟାଏ ମଣିଷଜୀବନର କୌଣସି ମୂଲ୍ୟନାହିଁ ? ଆପଣ ନିଶ୍ଚୟ ଯିବେ । ମୁଁ ଆପଣଙ୍କୁ ନନେଇ ଯିବିନାହିଁ । ଘୃଣାରେ ବିସ୍ଫାରିତ ଆଖି ଦୁଇଟାକୁ ସେ ଡାକ୍ତରଙ୍କ ଚେହେରା ଉପରେ ନିବଦ୍ଧ କଲା ଏବଂ ନିଜର ଯାଉଣି ବର୍ଷର ଅପମାନିଷ୍ଟ ବ୍ଧ ଭୟଗ୍ରସ୍ତ ଜୀବନ, ବିଶେଷ କରି କୁକୁରମାନଙ୍କ ପ୍ରତି ଭୟରେ ଗ୍ରସ୍ତ ଜୀବନ ଯାହା ତାହାର ଅନ୍ତରଙ୍ଗ ଭୟର ଏକ ପ୍ରତୀକାତ୍ମକ ପ୍ରକାଶ ମାତ୍ର; ତା'ର ପ୍ରତିଶୋଧ ନେବାକୁ ଚାହିଁଲା ।

ଉତ୍ତ୍ୟକ୍ତ ହେଲେ କିଛି ଲାଭ ହେବ ନାହିଁ, ଡାକ୍ତର ଅତ୍ୟନ୍ତ ଶାନ୍ତ ଭାବରେ କହିଲେ । ମୁଁ ଡାକ୍ତରଖାନାକୁ ଫୋନ୍ କରି ଦେଉଛି । ସେଠୁ ଆମ୍ବୁଲାନ୍ସ ଆସିବ ଆଉ ତା'ସାଙ୍ଗରେ ମଧ୍ୟ ଜଣେ ଡାକ୍ତର । ରୋଗୀର ଠିକଣା ମୋତେ କୁହନ୍ତୁ ।

ତୀବ୍ର ଅସନ୍ତୋଷରେ ସେ ଡାକ୍ତରଙ୍କୁ ଘାରଡେଇ ଘାରଡେଇ ଦେଖିବାକୁ ଲାଗିଲା ଓ କହିଲା, ଅପଣ ଫୋନ୍ କରି କଥାଟାକୁ ଆଡେଇ ଦେବାକୁ ଚାହୁଁଛନ୍ତି ।

ଗୋଟାଏ ମରଣାସନ୍ନ ଲୋକ ପାଇଁ ଆପଣଙ୍କ ହୃଦୟରେ ଏତେଟିକେ ଦରଦ ନାହିଁ । ଆପଣଙ୍କୁ ଡାକ୍ତର କଲା କିଏ ? ପଇସା ନାଁ ?

ଚୁପ୍ ଚାପ ଡାକ୍ତର ତା' କଥାତକ ଶୁଣି ଯାଉଥିଲେ ।

ଯଦି ଆମ୍ବୁଲାନ୍ସ ନ ଆସେ ? ରୋଗୀ ଯଦି ମରିଯାଏ ? ହଁଅ, ସେ ମରିଗଲେ ଆପଣଙ୍କର କଅଣ କ୍ଷତି ହେଉଛି ? ଆପଣତ ଆଜିଯାଏ ଏମିତି ଲକ୍ଷ ଲକ୍ଷ ମାରି ସାରଣିବେଣି ।

ଡାକ୍ତର ନିଜର ସମସ୍ତ ଇଚ୍ଛାଶକ୍ତି ପ୍ରୟୋଗ କରି ନିଜକୁ ଶାନ୍ତ ରଖିବାକୁ ଚେଷ୍ଟା କଲେ ଏବଂ କହିଲେ, ବାଜେ କଥା ଗପିଲେ କିଛି ଲାଭ ହେବନାହିଁ । ମୁଁ ନିଜେ ଯାଇଥାଆନ୍ତି କିନ୍ତୁ ମୋ ଗାଡ଼ି ଖରାପ । ଏତେ ବୁଢ଼ା ଲୋକ ମୁଁ, ଏତେ ବାଟ ଚାଲିକରି ଯାଇପାରିବି ନାହିଁ । ଦ୍ୱିତୀୟରେ ଯଦିବା ଯିବି ତେବେ ପହଞ୍ଚିଲା ବେଳକୁ ଡେରି ହୋଇଯିବ । ଆମ୍ବୁଲାନ୍ସ ଜଲଦି ପହଞ୍ଚି ଯିବ । ଏଇ ବେଳାରେ ମଧ୍ୟ ଏଠି କାହାରି କାର ମିଳିବ ନାହିଁ । ଆପଣ ରୋଗୀର ଠିକଣା ଦିଅନ୍ତୁ ।

ଡାକ୍ତରଙ୍କର ଅକାଟ୍ୟଯୁକ୍ତି ଆଗରେ ହାରିଯାଇ ସେ ଶେଷକୁ ରୋଗୀର ଠିକଣା ବତେଇଲା ପରେ ଘୃଣା ଏବଂ ବିଦ୍ରୋହର ସ୍ୱରରେ କହିଲା, ଆପଣଙ୍କ ପକେଟ ଯିଏ ଗରମ କରି ପାରିବ ସେହି ରୋଗୀକୁ ଦେଖିବାକୁ ଯିବେ । ଆପଣ ବୋଧହୁଏ ଭାବୁଛନ୍ତି ଯେ ଏ ରୋଗୀ ଆପଣଙ୍କୁ ଆପଣଙ୍କ ଆଶାନୁରୂପ ପଇସା ଦେବନାହିଁ । ଆପଣ ସମ୍ଭବତଃ ଜାଣି ନାହାନ୍ତି ସେ ଅପଣଙ୍କ ଭଳିଆ ଶୋଷକ ଡାକ୍ତରମାନଙ୍କ ପାଖକୁ ଆସିବାକୁ ସମର୍ଥ ନହୋଇ ଲକ୍ଷ ଲକ୍ଷ ରୋଗୀ ମୃତ୍ୟୁବରଣ କରୁଛନ୍ତି । ଆପଣ ମାନବିକତାଠାରୁ ଅନେକ ମାଇଲ ଦୂରରେ ।

ଭୟଙ୍କର ଅପମାନରେ ବିକ୍ଷୁବ୍ଧ ଡାକ୍ତର ନିଃଶବ୍ଦରେ ଘର ଭିତରକୁ ଚାଲିଗଲେ ଓ କବାଟ ବନ୍ଦ କରିଦେଲେ ।

ପ୍ରାୟ ଘଣ୍ଟାଏ ପରେ ଯେତେବେଳେ ସେ ଘରକୁ ଫେରି ଆସିଲା ସେତେବେଳକୁ ତାର ଅନ୍ତରାତ୍ମାରେ ଭୟଙ୍କର ଉଦ୍‌ବେଳନ ଓ ଦେହ ହାଡ଼ ପୀଡ଼ା ଅନୁଭବ କରୁଥିଲା । ଅଗରୱାଲଙ୍କ ଘର ଅନ୍ଧାର ହୋଇଥିବାର ଦେଖିଲା । ଶଳାକୁ ଆମ୍ବୁଲାନ୍ସ ଆସି ନେଇ ଯାଇଥିବ, ସେ ଭାବି ଚାଲିଲା ।

ତା'ପରେ ଲୁଗାପଟା ନବଦଳେଇ ସେଇମିତି ବିଛଣାରେ ଲମ୍ବିଗଲା । ଏବେ ତା'ପାଇଁ କୁକୁର ଓ ମଣିଷ ଭିତରେ ସାମାନ୍ୟତମ ପ୍ରଭେଦ ଥିବାର ପ୍ରତୀତ ହେଲା ନାହିଁ ।



# ପ୍ରତିବନ୍ଧକୁ ଆଶ୍ରୟ କର

□ ଅରୁଣା ଶାସ୍ତ୍ରୀ

ବାନ୍ଟୁ ବୋଲି ଟିକି ପିଲାଟା ହାତରୁ ସେଦିନ ଯଦି ଦର୍ପଣଟା ଖସିପଡ଼ି ଚୂନ୍‌ଚୂନା ହୋଇଯାଇ ନଥାନ୍ତା ତେବେ ହୁଏତ କସ୍ତୁରୀ ଖୁଡ଼ୀଙ୍କ ଜୀବନର ସେଇ ପୃଷ୍ଠାତକ ଖୋଲା ନହୋଇ ରହିଯାଇଥାଆନ୍ତା । ଅନେକ ବର୍ଷକାଳ ପଡ଼ୋଶୀ ହୋଇ ମଧ୍ୟ କିଏ ନିଜ ନିଜ ଭିତରେ ଏତେ ଅଜଣା, ଏତେଅପରିଚିତ ହୋଇ ରହି ପାରନ୍ତି ତାହା ମୁଁ କଳ୍ପନାରେ ସୁଦ୍ଧା ଭାବି ପାରୁନଥିଲି । କିନ୍ତୁ ଯେତେବେଳେ ନିଜେ କସ୍ତୁରୀ ଖୁଡ଼ୀ କହିଲେ, "ଆଲୋ ବୋହୂ ! ତାଙ୍କ ନାଁରେ ସିନ୍ଦୁର ଆଣି ସୂନ୍ଥାରେ ନାଉଛୁ ବୋଲି କ'ଣ ମୁଁ ତାଙ୍କର ଅହ୍ୟସୁଲକ୍ଷଣୀ ସ୍ତ୍ରୀ ହୋଇଗଲି ? ଦିନେ ଦେଲେ ତ ତାଙ୍କଠାରୁ ମୁଁ ଘଇତାଧିଆଗ ବୋଲି କ'ଣ ପାଇଲି ନାହିଁ ।"

"ଖୁଡ଼ୀ ! ତାହାହେଲେ ଏ ପିଲାଗୁଡ଼ାକ କୁଆଡୁ ଆସିଲେ ?" ମୁଁ ତାଙ୍କୁ ଚଡ଼େଇଲା ପରି ପଚାରିଲି ।

ଗୋଟାଏ ଶୂନ୍ୟ ଉଦାସ ହସ ହସିଲେ ଖୁଡ଼ୀ । "ଆଲୋ ବୋହୂ, ତତେ କ'ଣ କହିବ ? ଗୋଟାଏ ଗ୍ରେଷେଇଘ୍ରା ପାଖରେ ଟିଣରେ ଥିବା ଅଟା ଯାହା ଏ ଦେହଟା ତାଙ୍କ ପାଖରେ ଠିକ୍ ସେଇଥିଲା । ବାସ୍, ଯେତେବେଳେ ସେ ଆସନ୍ତି, ଗ୍ରେଷେଇଘ୍ରା ଅଟାକୁ ଦଳିଚକଟି ରୁଟି ପରଟା କଲା ପରି ଯେ ଏଇ ଦେହଟାକୁ ' ତାଙ୍କ ମନଇଚ୍ଛା ବ୍ୟବହାର କରି ଗ୍ଲଲିଯାଆନ୍ତି ।"

ସେ ମୋର ଖୁଡ଼ିଶାଶୁ । କିନ୍ତୁ ତାଙ୍କ ପ୍ରତି ମୋ ମନରେ ଏତେ ଦୁଃଖ, ଏତେ ସହାନୁଭୂତି କାହିଁକି ଥିଲା ଜାଣେନା । ହୁଏତ ଗର୍ଭାଶୟର କ୍ୟାନସରରେ ଆକ୍ରାନ୍ତ ହୋଇ କସ୍ତୁରୀ ଖୁଡ଼ୀ ଭିକମହଲାର ଏକଣା ଘରଟି ଭିତରେ ଖଟିଟିଏ ଉପରେ ଏକୁଟିଆ ପଡ଼ି ରହିଥାନ୍ତି ବୋଲି ? ଭୟଙ୍କର ଯନ୍ତ୍ରଣାରେ ଚିତ୍କାର କଲାବେଳେ, ଗ୍ୱାହା ଧରି ଡ଼ାକ ପକେଇଲା ବେଳେ ଘରର କେହି ହେଲେ ଯାଉନଥିଲେ, ତାଙ୍କ ଭଲ ମନ୍ଦ ବୁଝୁନଥିଲେ ବୋଲି ? ଦୟା କଲାପରି ଦିନକୁ ଦୁଇବେଳା ଘରଲୋକେ, କିଛି ଖାଇବାକୁ, ସେ ଘରେ ଥୋଇଦେଇ ଆସୁଥିଲେ ସିନା, ସେ ଉଠିକରି ଖାଇଲା କି

ନଖାଇଲ, ସେକଥା ଦେଖିବାକୁ କେହି ଭୁଲରେ ସୁଦ୍ଧା ଭାବୁନଥିଲେ । ଯେତେବେଳେ ଏଇ ବିଶାଳ ଏକାନ୍ନବର୍ତ୍ତୀ ପରିବାରକୁ ବୋହୂ ହୋଇ ଆସିଲି ସେତେବେଳେ ଏଇ ଘରେ ଥିଲି ଗୃହିଣୀଟି ବଙ୍କଲି । ତଥାପି ଖରାବେଳେ ଟିକିଏ ଗଡ଼ଗଡ଼ ହେବାପାଇଁ ନିଘୁଞ୍ଚିଆ ଥାନ ଟିକିଏ ମିଳେନାହିଁ । ସବୁବେଳେ ଘରଟା ଭିତରେ ଗହଳଚହଳ, ଯିବା ଆସିବା ଲାଗିଥିବ । ଦେଖିଲେ ମନେହେଉଥିଲା ସତେ ଯେମିତି ବାହାପୁଆଣି ଚାଲିଛି । ବୋହୂ ହୋଇ ଆସିବା ମୋତେ କେଇଟା ଦିନ ହୋଇଥାଏ । କୋଉଠି ଟିକିଏ ନିରୋଳା ପାଇଲେ ଗଡ଼ିପଡ଼ିବି ବୋଲି ମୁଁ ଜାଗା ଖୋଜି ଖୋଜିକା ତେତାଲିକୁ ଗଲାରୁ କସ୍ତୁରୀ ଖୁଡ଼ି ବିଷୟରେ ସବୁକଥା ଜାଣିଲି । ଦେଖିଲି ତାଙ୍କ ବିଛଣା ଛୁଇଁ କେହି ମାଡ଼ୁନାହାନ୍ତି । ବାସ୍, ମୋତେ ଗୋଟାଏ ସୁବିଧା ମିଳିଗଲା । ସେଇଠୁ ନିଇତି ଖରାବେଳେ କାମଦାମ ସରିଲାରୁ ମନଲାଖି ଉପନ୍ୟାସଟାଏ ନହେଲେ ପତ୍ରିକାଟାଏ ହାତରେ ଧରି ମୁଁ ତାଙ୍କ ଘରକୁ ଯିବାକୁ ଲାଗିଲି ।

ତାଙ୍କ ପାଖରେ ବସିଲେ କେଜାଣି 'କାହିଁକି ମନଟା' ଖୁସିରେ ପୂରିଉଠେ । ବୟସବେଳେ ସେ ନିଶ୍ଚୟ ଅନନ୍ୟ ସୁନ୍ଦରୀ ଥିଲେ । ନହେଲେ ଆଜି ଏଇ ବୁଢ଼ୀ ବୟସରେ, ମରଣାନ୍ତକ ରୋଗରେ ପାଣ୍ଡୁ ହୋଇ ମଧ୍ୟ ସେହି ଅସାମାନ୍ୟ ସୌନ୍ଦର୍ଯ୍ୟର ଅବଶେଷ ସ୍ପଷ୍ଟ ବାରି ହୋଇ ଯାଉଥାଆନ୍ତା ନାଁ ? ଖୁଡ଼ିଙ୍କି ଘଷାଆଉଁସା କରିବାରେ ଗପସପ କରିବାରେ ଖରାବେଳଟା କେତେହୁଁଣ୍ଟୁ ସରିଯାଏ ଜାଣି ପାରେନାହିଁ । ଆଉ ଓଳାକୁ ଚହାବଢ଼ା କରିବା ପାଇଁ ଯେତେବେଳେ ମୁଁ ତାଙ୍କଠାରୁ ମେଲାଣି ନେଇ ଆସେ ସେତେବେଳେ ମନଟା ଭାରି ଖରାପ ଲାଗେ । ଆସିଲାବେଳକୁ ଖୁଡ଼ି ବୁହାଟେ ଆଶୀର୍ବାଦ କରନ୍ତି । ସେଇ ଆଶୀର୍ବାଦର ବର୍ଷାରେ ମୁଁ ଜୁଡ଼ୁବୁଡ଼ୁ ହୋଇଯାଏ, ସଙ୍କୁଚିତ ହୋଇଯାଏ ।

କସ୍ତୁରୀ ଖୁଡ଼ିଙ୍କ ପାଖକୁ ନିତି ଖରାବେଳାକୁ ମୁଁ ଯାଉଥିଲି । ଘଣ୍ଟାଘଣ୍ଟା ତାଙ୍କ ପାଖରେ ବସୁଥିଲି । କିନ୍ତୁ ମୋତେ ଭାରି ଆଶ୍ଚର୍ଯ୍ୟ ଲାଗୁଥିଲା ଯେ ସେ ଯାହାର ହାତ ଧରିଥିଲେ, ସେଇ ଦାମ କକେଇ କେବେ ବି ହେଲେ ଭୁଲରେ ତାଙ୍କୁ ଆଡ଼ ଆଖିରେ ଅନାଉନଥିଲେ । ମଲାଣି କି ଗଲାଣି, ସେ ଖୋଜଖବର ନେବା ବୋଧହୁଏ ସେ ଚିନ୍ତା କରୁନଥିଲେ । ଏମିତିକଆ ସ୍ୱାମୀସ୍ତ୍ରୀଙ୍କ ସମ୍ପର୍କ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଥିଲି । ଇଏ କିଭଳିଆ ସମ୍ପର୍କ ବା ? ମାରାତ୍ମକ ରୋଗରେ ଛଟପଟ ହେଉଥିବା ଓ ଏକୁଟିଆଟାରେ ମୃତ୍ୟୁକୁ ଅପେକ୍ଷା କରି ପଡ଼ିରହିଥିବା ନିଜ ସ୍ତ୍ରୀକୁ ଟିକିଏ ଦେଖିବା ପାଇଁ ଦାମକକେଇଙ୍କର ମନ କେମିତି ହେଉନଥିଲା ଭାବି ପାରୁନଥିଲି । କି କଠୋର ତାଙ୍କ ହୃଦୟ ! ଖୁଡ଼ିଙ୍କୁ ଦେଖିବାକୁ ତ ସେ ଯାଉନଥିଲେ ଓଳିଟି ତଳ ମହଲରେ ପିଣ୍ଡାକଡ଼କୁ ଖଟିଆଟାଏ ପକେଇ ଖାଆସେ ପଡ଼ିରହୁଥିଲେ ।

ଘର୍ଘଦନ ଧରି ଯୋଉ ପ୍ରଶ୍ନ ମୋ ମନକୁ ମନ୍ଥି ଚାଲିଛି, ତାହାକୁ ସମ୍ଭବତଃ ଝୁଣ୍ଟି ଠଉରାଇ ନେଇଥିଲେ । ସେଥିପାଇଁ ପଦେ ମୁଁ କିଛି ନକହୁଣୁ ସେ ଗ୍ରୁଆଁକୁ ଗ୍ରୁଆଁ ତାଙ୍କ ଅଡ଼ୁ ଆରମ୍ଭ କଲେ, 'ତୋ ଝୁଡ଼ୁ ଡାଶୁର ମୂଲସ୍ତ ଏମିତଆ ନଥିଲା ଲୋ । ଜାଣିଛୁ, କୋଉ ବଅସରେ ଆମର ବାହାଘର ହୋଇଥିଲା ?'' ମୁଁ ନାହିଁ କରନ୍ତେ ସେ କହିଚାଲିଲେ, 'ଆଲୋ, ଆମର ବାହାଘର ହେଲାବେଳକୁ ମତେ ମୋଟରୁ ସାତୁଟା ବର୍ଷ ବଅସ ହୋଇଥିଲା । ସାତ ବରଷର ଅବୋଧ ବାଳିକା ହିସାବରେ ବାହାଘର କହିଲେ ମୁଁ କଣ୍ଢେଇ ଖେଳ ବୋଲି ଭାବିଥିଲି । ବାହାଘର ଦିନ ମୋ ଖୁସି କହିଲେ ନସରେ । ଗୋଡ଼ ମୋର ପାଞ୍ଚ ହାତରେ ପଡ଼ୁଥାଏ । କାହିଁକି ନା ମୋତେ ଗୋଟେ ନୂଆ ଓଢଣୀ ମିଳିଥାଏ ଅଉ ତା' ସାଙ୍ଗକୁ ମନଭରି ଖାଇବାକୁ ଲଡ଼ୁ । ହାତଗଣ୍ଠି ପଡ଼ିବା କି ସାତଥର ବେଦୀ ବୁଲିବା କଥା ହେଉକା ମୋର ଜମାରୁ ହେଉ ନାହିଁ । ହାତଗଣ୍ଠି ପଡ଼ିଲାବେଳକୁ ରାତ ଅଧି ବାରଟା ସରିକି ହେଲାଣି । ମନଭରି ପେଟେ ଲଡ଼ୁ ଖାଇ ବୋଉ କୋଳରେ ମୁଁ ଶୋଇଯାଉଥାଏ । ଅଧରାତି ସରିକି ବୋଉ ମତେ କାଖେଇ କରି ବେଦିବୁଲିଣରେ ବୁଲେଇଥିଲା ।''

ଏତକ କହିଲାବେଳେ ଖୁଡ଼ି ମୁହଁରେ ସଜଦୁହୁଁ । ଦୁଧପରି ନେଞ୍ଚାଏ ଫେଣଫେଣିଆ ହସ ଓ ନବୋଢ଼ା ତରୁଣୀ ସୁଲଭ ଲଜ୍ଜିତ ଭାବ, ଗ୍ରଇ ଅଳୁଅରି ଲୁଚକାଳି ଖେଳପରି, ଯୁଗପତ୍ ଫୁଟିଉଠୁଥିଲା ଓ ଲିଭିଯାଉଥିଲା । ଅନେକ ସମୟ ଧରି ଏକାଳହସରେ କଥାତକ କହିବା ଫଳରେ ଖୁଡ଼ି ଧଇଁସଇଁ ହୋଇପଡ଼ିଲେ । ତଥାପି ସେଇମିତି ସେ ଶୁଣେଇଚାଲିଲେ, ''ବୋହୂ ଲୋ ! ସେତେବେଳକୁ ତୋ' ଖୁଡ଼ୁ ଡାଶୁରଙ୍କର ବୟସ ଦଶ ଏଗାର ବର୍ଷ । ମୋ ଜେଜେଶାଶୁ ମଲାଗଲା ହେଉ କତରାନାରି ହେବ ପଡ଼ିଥିଲେ । ମଲା ଆଗରୁ ନାତଟୋକାର ବାହାଘର ଦେଖିବେ ବୋଲି ତରବର ହେଇ ମୋତେ ବୋହୂ କରିନେଇ ଆସିଥିଲେ । ମୁଁ ଆଉ କକେଇ ଦିନସାରା ତଳମହଲା ଅଗଣାଟାରେ ଖେଳାଖେଳି କରୁ । ବେଳେବେଳେ ଖେଳୁ ଖେଳୁ ଆମ ଭିତରେ ଘମାଘୋଟ କଜିଆ ଲାଗିଯାଏ ।''

''ଫୁସକିନା କର୍ପୂର ଉଡ଼ିଗଲା ପରି ଗୁହୁଁ ଗୁହୁଁ ପିଲାବେଳର ସେଇ ଦିନଗୁଡ଼ାକ କେଜାଣି କୁଆଡ଼େ ଚାଲିଗଲା । ତେର ବର୍ଷ ପଶୁ ନପଶୁଣୁ ମୋ ଦେହ ଡାଳଗଛ ଭଳିଆ ବଢିଚାଲିଲା, ହେଲେ ତୋ' ଝୁଡ଼ୁ ଡାଶୁରଙ୍କ ଦେହ ଅଳ୍ପ ସାମାନ୍ୟ ବଢି ଆଉ ବଢିଲା ନାହିଁ ଯେ ବଢିଲା ନାହିଁ । ମୋର ବର୍ଦ୍ଧିଷ୍ଣୁ ଶରୀରକୁ ନେଇ ତାଙ୍କର ଅହଂ ଏପରି ଆହତ ହେଲା ଯେ ସେ ଅନ୍ୟ ବାଟରେ ମୋତେ ଦବେଇବାରେ ଲାଗିଲେ । କୌଣସି ନା କୌଣସି ଉପାୟରେ ମୋତେ ଦମନ କରିବା ତାଙ୍କର ଏକମାତ୍ର ଧ୍ୟେୟ ହେଲା । ବାସ୍, ତାଙ୍କଠାରୁ ଉଚ୍ଚତାରେ ବଢିଯିବା ମୋ ପାଇଁ ଚରମ ଅଭିଶାପ ହୋଇଗଲା ।''

"ମୋ ଶ୍ବଶୁର ପଣ୍ଡିତଲକ୍ଷଣି ସେ ଏମିତିକା ସେଠୁ ଖସି ପଳାଉଥିଲେ, କାଳେ କିଏ ପାଖଆଖରେ ଠିଆ ହୋଇ ନଦେଖୁ ଓ ନହସୁ । ତୋତେମିଛ ମୋତେ ସତ ଲେ ବୋହୂ, ମୁଁ ସିନା ଉମ୍ବରେ ବଢ଼ି ବଢ଼ି ଯାଉଥିଲି ହେଲେ ମନ ଭିତରେ ଏମିତି ଦବକୁବ ରହିଲି ଯେ ଜୀବନସାରା ତାଙ୍କ ଆଗରେ ମୁଣ୍ଡଟେକି ପାରିଲି ନାହିଁ ।"

"ତାହାହେଲେ ଝୁଡ଼ି ଏ ପିଲେ କେମିତି ହେଲେ ?"

"ଆଲେ ବୋହୂ ! ମୋର ଏଇ ଦେଖଣିଆ ନେଟହେଡଆ ମଲଛକିଆ ପୁଅମାନେ କ'ଣ ଉଚିତ ଆମ ପ୍ରେମର ଚିହ୍ନ ଭଳିଆ ମନେହେଉଛନ୍ତି ? ବାପର ସବୁତିକି ଅବଗୁଣ ପିଲିମାନଙ୍କ ଭିତରକୁ ପଶିଆସିଛି । ସେମାନେ କ'ଣ କେବେହେଲେ ମୋତେ ବୋଉ ବୋଲି ମାନିଛନ୍ତି ? ଘରର ସକଳ କାମ ପାଇଁଟିରେ ସାରାଜୀବନ କଟିଗଲା । ଘରର ଅନ୍ୟ ପିଲିମାନଙ୍କର ଅଇଁଠା ଖାଇ ଖାଇ ସେମାନେ ବଡ଼ ହୋଇଗଲେ ଜାଣେନା । ବାସ୍, ଏବେ ନିଜ ନିଜ ମାଇପମାନଙ୍କର କାନି ଭିତରେ ବନ୍ଧାହୋଇ ପଡ଼ିଛନ୍ତି ।"

କଷ୍ଟୁରୀ ଝୁଡ଼ିଙ୍କର ମ୍ଳାନିମାନି ଜୀବନର ବ୍ୟଥା ତାଙ୍କ ଆଖିରେ ଫୁଟି ଉଠୁଥିଲା । ନିଜ ଜୀବନ କାହାଣୀ ଶୁଣାଇଲାବେଳେ ମଝିରେ ମଝିରେ ସେ ଭୟଙ୍କର ଯନ୍ତ୍ରଣାରେ ଛଟପଟ ହେଉଥିଲେ । ମୋ ଆଖିକୁ ଲୁହ ଆସିଯାଉଥାଏ ଓ ମନରେ କୋହ ଉଠୁଥାଏ । ତାଙ୍କୁ ଟିକିଏ ସୁଖୀ କରିବା ପାଇଁ ମୁଁ ହେଲେ କ'ଣ ଟିକେ କରନ୍ତିନ ? ହେଲେ ଘରଟା ଓଲାଓଲି କରି ଜିନିଷପତ୍ର ସଜଡ଼ାସଜଡ଼ି କରିଦେବା, ଶେଯପଟା ଝାଡ଼ାଝଡ଼ି କରି ବିଛଣା ପାରିଦେବା, ଚଦର ଆଉ ଲୁଗାପଟା ବଦଳାଇଦେବା, ତେଲ ଟିକେ ଲଗେଇ ମୁଣ୍ଡ କୁଣ୍ଡେଇ ଦେବା ଛଡ଼ା ମୁଁ ଅଧିକା କଣ କରିପାରନ୍ତି ? ଝିଅବେଳର ଲମ୍ବା ଦ'ପହରସାରା ମୁଁ ତାଙ୍କ ବଖରାରେ ତଳେ ଝଣ୍ଟେ ମଶିଣା ପାରି ଶୋଇରହେ । ତାଙ୍କ ଜୀବନର କରୁଣ କାହାଣୀ ଶୁଣୁ ଶୁଣୁ ବେଳେବେଳେ ନିଦରେ ଶୋଇଯାଏ । ମୋ ଆଖି ନିଦରେ ମାଡ଼ି ମାଡ଼ି ହୋଇଆସିଲେ ସେ କଥା ବନ୍ଦ କରିଦିଅନ୍ତି । "ବୋହୂ ! ମୋ କଥା ତ ଅନନ୍ତ କଥା, କହି ବସିଲେ କୋଉ ସରୁଚି ? ତୁ' ଟିକେ ଅଣ୍ଟା ସଳଖେଇ ନେ । ଦିନସାରା ଝଟି ଝଟି ମଲୁଣି । ମୁଁ ଯଦି ବେମାର ନହୋଇଥାଆନ୍ତି, ଦେଖିଥାନ୍ତୁ ତୋତେ କେମିତି ଟେଲିବହରି କରିଥାଆନ୍ତି । ତୋତେ ଜମାରୁ କାମ କରେଇ ଦେଇ ନଥାନ୍ତି । ହେଲେ ଏବେ କ'ଣ କରିବି, ମୁଁ ତ ମଲାଗଲା ସରିକି ପଡ଼ିଛି ।"

ଆଉଦିନେ ଝୁଡ଼ି ମୋ ହାତ ଦୁଇଟାକୁ ଭିଡ଼ିଧରି ନେହୁରା ହେଲାପରି କହିଲେ, ଆଲେ ବୋହୂ, ମୋ ପାଇଁ ଗୋଟାଏ କାମ କରିଦେବୁ କି ଲେ ? କହିବି ଯଦି ତ ତୋତେ କହିବି । ଆଉ ବା କିଏ ଅଛି ? ତା'ଛଡ଼ା ସେମାନଙ୍କୁ କହିଲେ କାଳେ ସେମାନେ ଓଲଟା ବୁଝିବେ, ସେଥିକି ଡର ନାହିଁ କଲେ ?

ଝୁଣ୍ଟୁଙ୍କର ଏଇ କଥାଭଙ୍ଗୀରେ କ'ଣ ଥିଲା କେଜାଣି ଶୁଣିଦେଲାକ୍ଷଣି ମୁଁ ଚମକି ପଡ଼ିଲି । ଅନୁନୟ ବିନୟର ସାକ୍ଷାତ ପ୍ରତିମାଟିଏ ହୋଇ ସେ ମୋ ଆଗରେ ନଇଁ ଯାଇଥିଲେ । କହୁନା ଝୁଣ୍ଟୁ, କ'ଣ ତୁମେ ଚାହୁଁଛ ?

"ବୋହୂ ! ଝରକା ଭାବିବୁ ନାହିଁ ତ ? ତଳେ ବଅଁଙ୍କ ଘରେ ବଅଁଙ୍କ ସିଂହାସନ ପଛରେ ଗୋଟାଏ ଦର୍ପଣ ଟଙ୍ଗା ହୋଇଛି । ତୁ ସେଇଟାକୁ ଆଣିଦେଇ ପାରିବୁ ?"

ମୁଁ ହଠାତ କାଠ ପାଲଟିଗଲି । ଜୀବନର ସନ୍ଧ୍ୟାରେ ଝୁଣ୍ଟୁ କ'ଣ ପାଇଁ ନିଜ ମୁହଁ ଦେଖିବାକୁ ଏତେ ବ୍ୟଗ୍ର ହୋଇ ଉଠୁଛି ? ଜୀବନ ଓ ମୃତ୍ୟୁର ଏହି ସନ୍ଧିକ୍ଷଣରେ ସେ ବା ଅଧିକା ଗୋଟାଏ କ'ଣ ମାଗୁଛନ୍ତି, ଦର୍ପଣଟାଏ ତ !

ବଅଁଙ୍କ ଘରେ ସେ ଦର୍ପଣଟା ଅନେକ ବର୍ଷ ହେଲା ସେଇ ଜାଗାରେ ଏକାନ୍ତ ଉପେକ୍ଷିତ ଭାବରେ ଟଙ୍ଗା ହୋଇଥିଲା । ଖାଲି ସେତିକି ନୁହେଁ, ତାହା ଫଳରେ ଦର୍ପଣଟା କାନ୍ଥର ସେହି ଅଂଶର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଯାଇଥିଲା ଓ ଏବେ ତାହାକୁ ସ୍ଥାନାନ୍ତର କରିବା ପାଇଁ ଏକ ବିଶେଷ ସାହସ ଥିବା ଦରକାର । ହେଲେ ଦି'ପହରକୁ ଯେତେବେଳେ ଆଉ କାହାରି ବଅଁଙ୍କ ଘରକୁ ଯିବାର ନଥିଲା, ସେତିକିବେଳେ ମୁଁ ଚୁପଚାପ ଯାଇ କଣ୍ଟାରୁ ଦର୍ପଣଟି କାଢ଼ି ମୋ ଲୁଗା କାନିରେ ଘୋଡ଼େଇ କରି ନେଇ ବସ୍ତୁଟି ଝୁଣ୍ଟୁଙ୍କୁ ଦେଇଦେଲି ।

ମୋ ହାତରେ ଦର୍ପଣଟାକୁ ଝୁଣ୍ଟୁ ଦେଖିଦେଲା ମାତ୍ରେ ଦେହରେ କାହୁଁ କେଜାଣି ବଳ ମାଡ଼ିଆସିଲା ନେଖେ ଧଡ଼ପଡ଼ ହୋଇ ଉଠିବସିଲେ । ଅନେକ ଦିନପରେ ଆଜି ମୁଁ ପ୍ରଥମ କରି ଦେଖିଲି ଯେ ସେ କାହାରି ଆଶ୍ରା ନନେଇ ଖଟ ଉପରେ ଉଠି କରି ବସି ପାରିଲେ । ତାଙ୍କ ଆଖି ଦୁଇଟାରେ ଆଜି ଗୋଟାଏ ବିଚିତ୍ର ଉଜ୍ଜଳ୍ୟ ଖେଳିଗଲା ଏବଂ ବିବର୍ଣ୍ଣ କପାଳରେ ଅସ୍ତୋନ୍ମୁଖ ସୂର୍ଯ୍ୟଙ୍କ ପରି ବିଚିତ୍ର ଲୋହିତ ଦୀପ୍ତି ଖେଳିଗଲା । ଅଶେଷ ଯତ୍ନ ଓ ମମତାବୋଳା ଭଙ୍ଗୀରେ ସେ ଦର୍ପଣ ଉପରେ ଅନେକ ଦିନ ହେଲା ବସିଯାଇଥିବା ଧୂଳିକୁ ଆପଣା ଲୁଗାକାନିରେ ପୋଛି ପକେଇଲେ ଏବଂ ସେଥିରେ ନିଜ ଚେହେରାକୁ ଦେଖି ନେଇ ଏଇ ଶ୍ଳୋକ ଗୁଣୁ ଗୁଣୁ ହୋଇ ଗାଇବାକୁ ଲାଗିଲେ କସ୍ତୁରୀ ତିଲକଂ ଲଲାଟ ପଟଲେ, ବକ୍ଷସ୍ଥଳେ କୌସ୍ତୁଭଂ । ଘଟଣାଟାରେ ମୋ ମନକୁ ବଡ଼ ଶାନ୍ତି ମିଳିଲା ଯେ ଯାହାହେଉ ଝୁଣ୍ଟୁ ପାଇଁ ମୁଁ ଗୋଟାଏ ଭଲ କାମ କରିପାରିଛି । କିଛି ସମୟ ମୁଁ ତାଙ୍କ କଡ଼ରେ ଠିଆ ହୋଇ ରହିଲି । ଭାବିଲି ବୋଧେ ମୋତେ ଆଉ କ'ଣ କହିବେ । ହେଲେ ତାଙ୍କୁ ଏକ ଭାବତନ୍ମୟରେ ନିମଗ୍ନ ଥିବାର ଦେଖି ମୁଁ ହେଠି ପଳେଇ ଆସିଲି । ବସ୍ତୁଟି ଝୁଣ୍ଟୁ ଦର୍ପଣଟାକୁ ତାଙ୍କ ଖଟ ପାଖ କାନ୍ଥରେ ଟାଙ୍ଗି ଦେଇଥିଲେ ।

ଏଣିକି ଯେବେ ମୁଁ ତାଙ୍କ ପାଖକୁ ଯାଉଛି, ଦେଖିଛି, ସବୁବେଳେ ସେ ଖଟ ଉପରେ କାନ୍ଥଆଡ଼କୁ ମୁହଁ କରି ଦର୍ପଣଟାକୁ ଦେଖୁଥିବେ, ମନକୁ ମନ କଥା ହେଇ ଏକ ବିଚିତ୍ର ଭାବଜଗତରେ ବୁଡ଼ି ରହିଥିବେ। ଦର୍ପଣରେ ମୋ ପ୍ରତିବିମ୍ବ ଦେଖିଲେ ବଡ କଷ୍ଟରେ ସେ କଡ଼ ଲେଉଟେଇ କହିବେ, ବୋହୂ, ଆସିଗଲୁ, ଆ ବସ, ମୁଁ ତ ତୋରି କଥା ଏଇଲେ ଭାବୁଥିଲି। ଏଣେ ମୁଁ ସେଇ ଦର୍ପଣଟାକୁ ଅଶେଷ ଧନ୍ୟବାଦ ଦେଉଥିବି ଯେ ଯାହାହେଉ ତାଆରି ଲାଗି ଖୁଡ଼ିଙ୍କ ଜୀବନରେ ନୂତନ ଉତ୍ସାହ ଭରିଯାଇଛି। ଲିଭିଯାଉଥିବା ଦୀପର ଜୋରରେ ଜଳିବା କଥା ନୁହେଁ ତ ?

ହଁ, ତାହା ହିଁ ଥିଲା ଲିଭିଯାଉଥିବା ଦୀପର ଜୋରରେ ଜଳି ଉଠିଥିବା ଶିଖା। ସେଦିନର କଥା। ଦେଢ଼ ବର୍ଷର ବିଚ୍ଛୁ ନିଦରୁ ଉଠିଥାଏ। ତାକୁ ବୁଝେଇ ବୁଝେଇ ବଡ଼ ଯାଆ ନାକେଦମ୍ ହେଇ ସାରିଥାଆନ୍ତି। ହେଲେ ପିଲାଟା ବୁଝିବା ନାଁ ଧରୁ ନଥାଏ। ତାଙ୍କ କୋଳରୁ ପିଲାଟାକୁ ନେଇ ମୁଁ କାଖେଇ କରି ଛାତ ଉପରକୁ ନେଇଗଲି। ବାଡ଼କୁ ଆଉଜି ତାକୁ ଦାଣ୍ଡର ଦୃଶ୍ୟ ଦେଖାଉଥାଏ। ରାସ୍ତାକଡରେ ଦୋକାନ ଗୁଡାକରେ ଗରାଖ ମାନଙ୍କର ଭିଡ। କାନ୍ଦ କାନ୍ଦ ପିଲାଟା ଅଳିଆ ହେଇ ପଡ଼ୁଥାଏ। ସୁଁ ସୁଁ ହେଉଥାଏ ଖାଲି। ସେଇଠୁ ତାକୁ ନେଇ ଖୁଡ଼ିଙ୍କ ପାଖକୁ ଗଲି।

ଅନେକ ଦିନ ହେଲା ଘରର କୌଣସି ପିଲା ଖୁଡ଼ିଙ୍କ ବଖରାରେ ପାଦ ଦେଇ ନଥିଲେ। ବିଚ୍ଛୁକୁ ଦେଖି ଖୁଡ଼ିର ତା ପ୍ରତି ଯୋଉ ସ୍ନେହ ପ୍ରକାଶ ପାଇଥିଲା, ଭାଷାରେ କହିହେବନାହିଁ। କିନ୍ତୁ ପିଲାଟା ଖାଲି ଅଚିହ୍ନା ବାରି ବଲବଲ ହେଇ ଅନେଇ ରହିଥାଏ। ବିଚ୍ଛୁକୁ କାନ୍ଧରେ ପକେଇ ତା ପିଠିକୁ ଥାପୁଡେଇ ବୁଲୁଥାଏ ଓ ତେଣେ ଖୁଡ଼ି ସାଙ୍ଗରେ ଗପସପ କରୁଥାଏ। ସେଇଠୁ ଖୁଡ଼ି କହିଲେ, ବୋହୂ, ତୋ ହାତ କ'ଣ ହୋଇଯାଉଥିବ ଲୋ। ତାକୁ ଆଣ, ମୋ ଖଟରେ ଶୁଏଇ ଦେ। ମୁଁ ବିଚ୍ଛୁକୁ ଖୁଡ଼ିଙ୍କ କଡରେ କାନ୍ଥ ପଟକୁ ମୁହଁ କରେଇ ଶୁଆଇ ଦେଲି। ଖୁଡ଼ି ତ. ପିଠିକୁ ଥାପୁଡେଇ ଶୁଆଇବାକୁ ଚେଷ୍ଟାକଲେ। ଅଉ ମୁଁ ତଳ୍‌ଟାରେ 'ମଣିଣା ଖଣ୍ଡିକ ପାରିଦେଇ ଅଧାପଢ଼ା ଉପନ୍ୟାସର ପୃଷ୍ଠା ଭିତରେ ବୁଡିଗଲି।

ପ୍ରାୟ ଅଧଘଣ୍ଟାଏ ଖଣ୍ଡ ହେଇଛି କି ନାହିଁ, ବିଚ୍ଛୁ ନିଦରୁ ଉଠି ଖଟ ଉପରେ ବସି ପଡିଲା। ଏବଂ ପାଖରେ ଟଙ୍ଗା ହୋଇଥିବା ଦର୍ପଣରେ ନିଜର ପ୍ରତିବିମ୍ବ ଦେଖି ଖୁସିରେ ଗୋଡ ହାତ ହଲେଇ କୁରୁଳି ଉଠିଲା। ଶୋଇ ପଡିଲାରୁ ତାର ଚିଡ଼ିଚଡ଼ା ଗୁଣ ଦୂର ହୋଇଯାଇଥିଲା। ଏବେ ସେ ଅଣ୍ଟୁରେ ଭାରିଦେଇ ବସିପଡ଼ି ଦର୍ପଣଟାକୁ ଆଣିବାକୁ ହାତ ବଢ଼େଇଲା। ଯେମିତି ବିଚ୍ଛୁର ଏ କାଣ୍ଡ ଖୁଡ଼ିଙ୍କର ଆଖିରେ ପଡିଛି, ସେ ମୋତେ ଡାକି କହିଲେ, ବୋହୂ, ପିଲାକୁ ଏଠୁ ନେଇ ଯା। ତାକୁ ସମ୍ଭାଳ।

ଝୁଡ଼ିଙ୍କର ବଚଳିତ କଥାର ମର୍ମ ବୁଝିପାରିଲି ପୂର୍ବରୁ ବାଚ୍ଛୁ ତା'ର କୁନି କୁନି ହାତରେ ଏମିତି ଗୋଟାଏ ଧକ୍‌କା ମାରିଲି ଯେ ଦର୍ପଣଟା ତଳେ ପଡ଼ି ଚୂନଚୂନା ହୋଇଗଲା ।

କିନ୍ତୁ ଝୁଡ଼ି ହଠାତ୍ ବଦଳିଗଲେ । ବାଚ୍ଛୁକୁ ଧଡ଼ଧାଡ଼କରି ପିଟିବାକୁ ଲାଗିଲେ ଏବଂ ତା'ପରେ ଅତି ଉତ୍ତ୍ୟକ୍ତ ଭାବରେ ଚିତ୍କାର କରିବାକୁ ଲାଗିଲେ, "ଇଏ୍ ପିଲାକୁ କାହିଁକି ଏଠିକି ଆଣିଲୁ ? ଏଇ ଦର୍ପଣ ତୁମର କ'ଣ ଖରାପ କରୁଥିଲା ଯେ ତାକୁ ଭାଙ୍ଗି ନଦେଲା ଯାଏଁ କଥା ଗଲାନି । ତୁମେ ସମସ୍ତେ ମିଶି ଗୋଟାଏ ଖାସା ଷଡ଼ଯନ୍ତ୍ର କରିଛ । ମୁଁ ମରିଗଲେ ତୁମେ ସମସ୍ତେ ଶାନ୍ତିରେ ନିଃଶ୍ୱାସ ମାରିବ, ଏଇଆ ଚାହୁଁଛ ତ !

ତା'ପରେ ଝୁଡ଼ି ବିଛଣାରେ ପଡ଼ିରହି କାନ୍ଦିବାକୁ ଲାଗିଲା । ନିଜକୁ ଗୋଟାଏ ବଡ଼ ଅପରାଧୀ ମନେକରି ମୁଁ ତଳକୁ ମୁହଁ ପୋତି ଠିଆହୋଇ ରହିଲି । ବାଚ୍ଛୁ ମଧ୍ୟ ଅତ୍ୟନ୍ତ ଆତଙ୍କିତ ହୋଇ ମୋତେ ଜୋରରେ ଜାକିକରି ଧରିଥାଏ । ଅନେକ ସମୟ ଯାଏଁ ଝୁଡ଼ି ସେଇମିତି ପଡ଼ିରହିଲେ । ତାଙ୍କର ଏପରି ଉତ୍ତ୍ୟକ୍ତ ରୂପ ମୁଁ ଆଜିଯାକେ କେବେହେଲେ ଦେଖିନଥିଲି । ତାଙ୍କର ଏମିତି କ'ଣ ହେଲା ? କିଂକର୍ତ୍ତବ୍ୟବିମୂଢ଼ ହେଇ ମୁଁ ଚୁପ୍‌ଚାପ୍ ଦୁଆର ଆଉଜେଇ ଆଣି ତଳକୁ ଚାଲି ଆସିଲି ।

ବାହାହୋଇ ଆସିଲାଠୁ ଦିନେହେଲେ ଝୁଡ଼ି ମୋତେ ଏମିତି କଠୋର ଭାବରେ କଥାପଦେ ହେଲେ ବି କହିନଥିଲେ । ଆଜି ତାଙ୍କର ଏପରି ଅପ୍ରତ୍ୟାଶିତ ବ୍ୟବହାରରେ ମୁଁ ଭୀଷଣ ଅପମାନିତ ମନେକଲି । ଆଉ ଏଇଥି ପାଇଁ ଦି'ଦିନ କାଳ ମୁଁ ତାଙ୍କ ଦୁଆର ଛୁଇଁ ମଧ୍ୟ ମାଡ଼ିଲି ନାହିଁ ।

ତା' ପରଦିନ ଖରାବେଳେ ମୁଁ ମୋ ଶୋଇଲା ଘରେ ବସି କ'ଣ ଗୋଟାଏ ସିଲେଇ କରୁଥାଏ । ରାମିଆ ଦୌଡ଼ି ଆସି କହିଲା, "ବୋହୂ ସାଆନ୍ତାଣୀ ! ତେମେ ଆପଣ ଏଇଠି ବସିଛ । ସିଆଡ଼େ ଝୁଡ଼ି ସାଆନ୍ତାଣୀ କାନ୍ଦି କାନ୍ଦି ନୟାନ୍ତ ହେଲେଣି । ତମଙ୍କୁ ଡାକ ପକେଇଚନ୍ତି । ଟିକେ ଯାଇ ଶୁଣି ଆସ ।"

ଏଇ ଡାକରାକୁ ମୁଁ ମନେମନେ ଅପେକ୍ଷା କରି ବସି ରହିଥିଲି । ଚଟକିନା ଉଠିପଡ଼ି ଦଉଡ଼ିଗଲି ଉପରଡାଲାକୁ । ଝୁଡ଼ିଙ୍କ ଘରର ଏଣ୍ଟି ଏପଟେ ଠିଆ ହୋଇ ରହିଲି ସିନା, ହେଲେ ପାଦ ଦଇଟା କେଜାଣି କାହିଁକି ଭିତରକୁ ଯିବାକୁ ସାହସ କଲେନାହିଁ । ହେଇଠୁ ସହମିକରି ପଚାରିଲି, ଝୁଡ଼ି ! ମତେ ଡାକୁଥିଲେ ?

ବୋହୂ ! ଆସିଲୁ ? ଆଲୋ ତୁଁଅ ମୋ ଉପରେ ଏତେ ରାଗିଗଲୁ ? ହଁଅ, ମୋ ପେଟରୁ ଜନମ ହୋଇଥିଲେ ଆଉ ମୁଁ ପଦେ ଦି'ପଦ ଆକଟ କରିଥିଲେ କ'ଣ ସେ କଥାକୁ ଏମିତି ଧରି ଥାଆନ୍ତା ?"

"ନାଇଁ ଝୁଣ୍ଡ, ସେକଥା ନୁହଁ ।" ମୋ ଭୁଣ୍ଡ୍ରକୁ ଆଉ କଥା ପଶିଟିଲା ନାହିଁ । କାନ୍ଦ କାନ୍ଦ ହେଇଗଲି ମୁଁ । "ମୋତେ କ୍ଷମା କରିଦିଅ ଝୁଣ୍ଡୁ, ବଡ଼ ଭୁଲ କରି ପକେଇଲି ।"

"ବୋହୁ ! ଆଉ ମୁଁ ବଞ୍ଚିବି ନାଇଁ ଲୋ । ଏ ପିଣ୍ଡ ବହୁତ କଷ୍ଟ ସହିଲାଣି । ସେଇ ଦର୍ପଣଟାକୁ ପାଇ ମୋ ଆତ୍ମାକୁ ଟିକିଏ ଶାନ୍ତି ମିଳିଥିଲା, ତା'ବି ରହିଲାନି । ଯୋଉଦିନ ଦର୍ପଣଟା ଭାଙ୍ଗିଗଲା ସେଇଦିନଠୁ ଧରିନେଲି ଯେ ମୋର ବେଳ ସରି ଆସିଲାଣି । ଆଉ ବୋଧେ ଦିନ କେଇଟା କି କଅଣ । ମୋ କଥାକୁ ବୋହୁ ଛଳ କରିବୁନି । ଦେଖିଲୁ, ଭଙ୍ଗା ଦର୍ପଣର କାଚ ଗୋଟେଇ ମୋ ଆଙ୍ଗୁଠିରେ କେମିତିକଥା ଝଣ୍ଡିଆ ହେଇଯାଇଛି ।

ମୁଣ୍ଡ ତଳକୁ ପୋତି ମୁଁ ଝୁଣ୍ଡଙ୍କ ମୁଣ୍ଡ ଉପରେ ବସି ତାଙ୍କ ହାତକୁ ଆଉଁସୁଥିଲି ଓ ଆଖିରୁ ଅନବରତ ବୋହି ଚାଲିଥିଲା ଲୁହର ଧାର ।

"ସେଇ ଦର୍ପଣଟା ପାଇଁ କାହିଁକି ଏତେ ମୋହ, ଏତେ ମମତା ତୁ' କ'ଣ ଜାଣିଛୁ ?" ଜୀବନର ଅନ୍ତିମ ସମୟରେ କମ୍ପିତ ଝୁଣ୍ଡ ମୋ ଆଗରେ ତାଙ୍କର ଅଲୋଡ଼ା ନାଲଠା ଜୀବନର କୋଉ ଅଜ୍ଞାତ ଅଧ୍ୟାୟ ଉନ୍ମୋଚନ କରିବାକୁ ଯାଉଛନ୍ତି ତାହା ଜାଣିବାକୁ ତଟପଟ ଆଖିରୁ ଲୁହ ପୋଛି ଉତ୍ସୁକତାର ସହ ଝୁଣ୍ଡଙ୍କ ଅନେଇ ରହିଲି । କୋଉ ଗୋଟାଏ ଅଜଣା ସ୍ୱପ୍ନର ଯାଦୁକରୀ ମୋହରେ ଆଚ୍ଛନ୍ନ ଥିଲା ତାଙ୍କର ଆଖି । ହେଲେ ମୁହଁରେ ନବୋଢ଼ା ତରୁଣୀର ସଲଜ୍ଜ ଭାବ ଫୁଟିଉଠୁଥିଲା ।

କେତେବେଳେ ତୋ ଶାଶୁକୁ ପଚାରିବୁ ? ତୋ ବଅସର ଥିଲାବେଳେ ତୋର ଏ ଝୁଣ୍ଡର ରୂପ କେମିତି ଦାଉଦାଉ ଝଟକୁଥିଲା । ଦିହରେ ଟିପ ବାଜିଲେ ରକତ ଜମିଯାଉଥିଲା । ବିଧାତା ସତେ ଯେମିତି ବନା କାର୍ପଣ୍ୟରେ ବ୍ରହ୍ମାଣ୍ଡଯାକର ସୌନ୍ଦର୍ଯ୍ୟ ଆଣି ଏଇ ଝୁଣ୍ଡଟି ଖୁନ୍ଦି ଦେଇଥିଲେ ହେଲେ ତୋ ଢୁଣ୍ଡୁଶାଶୁର ଦିନେ ହେଲେ ବି ଆତ ଆଖିରେ ଗୁହିଁଆଆନ୍ତେ ଭଲା । ନାଇଠି ସଞ୍ଜବେଳକୁ ପେଟେ ଭାଙ୍ଗ ପିଇଦେଇ ଆସିବେ ଆଉ ପେଟେ ଖାଇଦେଇ ଘୁଙ୍ଗୁଡ଼ି ମାରି ଶୋଇଯିବେ । ଯଦି କେବେ ଦରକାର ପଡ଼ିବ ଅଧରାତି ସରକି ମୋ ଶୋଇଲା ଘରକୁ ଆସିବେ ଓ ମୋର ଦେହଟାକୁ ଚକଟା ଅଟାପରି ଦଳଚକଟି ଚାଲିଯିବେ । ହୁଏତ ସାରାଜୀବନ ଏଇମିତି କଟିଯାଇ-ଥାଆନ୍ତା । ହେଲେ ଏଡକାବେଳକୁ ଶଶୁର ଆଖିବୁଜିଲେ । ତାଙ୍କ ଅନ୍ତେ ଦିଅଁ ପୂଜା ଗୋଟାଏ ବଡ଼ ସମସ୍ୟା ହେଲା । କଥା ଉଠିଲା ଦିଅଁଙ୍କ ପୂଜା କେମିତି ହେବ । ସେଇଠୁ ଗଜାଧର ପଣ୍ଡିତଙ୍କ ପୁଅ କଶୋରୀ ରମଣକୁ ଡକାଗଲା । ସେହି ଦିନଠୁ

ଦଅଁଙ୍କ ପୂଜାନାତ ସବୁ ତାଙ୍କୁ ଦଅହେଲ । ସେତେବେଳେ କଣୋଙ୍କୁ ବୟସ ପଚାଶି କ ଛବିଶି । ଗୋଟାଏ ଗୋଲପି ରଙ୍ଗର ମଟା ପାଲଟି ପକେଇ, ଖୋଲ ଦେହରେ ସେ ବସି ପୂଜା କରେ ।

ମୋର କାମ ହେଲ ରନ୍ଧାରନ୍ଧ ସାର ହୋଷେଇ ଘରୁ ଦଅଁଙ୍କ ପାଇଁ ନୈବେଦ୍ୟ ଥାଳରେ ଯୋଡ଼ ଦଅଁଙ୍କ ଘରେ ଦେଇ ଆସିବା । ବଡ଼ ଯାଆ ତ ଗୃହୁଁ ଥାଆନ୍ତି କେମିତ ହୋଷେଇ ଘର ଖାଲ ହେଲେ ବଡ ଦେଡଶୁରଙ୍କୁ ମେଞ୍ଚେ ଦେଶୀ ଘିଅରେ ଲୁଥୁ ପୁଥୁ ରୁଟି ଏବଂ ବାଟିଏ ଡାଲରେ ତଙ୍କେ ଘିଅ ଛୁଙ୍କ ଦେଇ ବାଢିବେ । ସେଇଥିପାଇଁ ସେ ଆଗରୁ ଭୋଗ ସଜାଡ଼ ମୋତେ କହିବେ, କସ୍ତୁରୀ ! ଦଅଁଙ୍କ ପାଇଁ ଭୋଗ ସଜାଡି ଦେଲିଣି, ନିଅ, ପୁରୋହିତଙ୍କୁ ଦେଇଆସିବ । ଯୋଉ ଘରେ ନାରୀକୁ ତା' ନିଜ ସ୍ୱାମୀ ସମ୍ମାନ ଦଏନାହିଁ ସେ ଘରେ ଅନ୍ୟମାନେ ସୁଯୋଗ ନେଇ ତାକୁ ଅପମାନିତ କରିବାକୁ ସର୍ବଦା ଟାକକରି ରହିଥାଆନ୍ତି, ଏଇଥିପାଇଁ ଘରଟା ସାରା ଲୋକଙ୍କର ଆଦେଶ ପାଳନ କରିବା ପାଇଁ ମୁଁ ହିଁ ଗୋଟାଏ ମାତ୍ର ଲୋକଥିଲ । ବଡ଼ ସକାଳୁ ପ୍ରତି କାମ ପାଇଁ କସ୍ତୁରୀ ବୋହୂକୁ ଡାକ ପଡ଼ୁଥିଲ । ହଁ, ନଇତ ଓଢ଼ଣାଟାଣି ମୁଁ ଠାକୁର ଘରକୁ ଯାଏ ଓ ନୈବେଦ୍ୟ ରଖିଦେଇ ଲେଉଟି ଆସେ । ହେଲେ ଏମିତ ହେବ ବୋଲି ମୁଁ ମନରେ ମଧ୍ୟ ଭାବିନଥିଲ । ଖୁଣ୍ଡ ଧକେଇବାକୁ ଆରମ୍ଭ କରିଥିଲେ । କିଛି ସମୟପରେ ପୁଣି ୪ ହିଗୁଲଲେ ।

ଆଉ ସେଷକୁ ନହେବା କଥା ହେଲ । ପ୍ରତିଦିନ ଠାକୁର ଘର ପାହାଚ ଚଢି ଗଲବେଳକୁ କଣୋଙ୍କ ରମଣ, ସେଇ ଗୋଟିଏ ମାତ୍ର ଶ୍ଳୋକ, "କସ୍ତୁରୀ ତିଲକଂ ଲଲାଟ ପଟଲେ ବକ୍ଷସ୍ଥଲେ କୌସ୍ତୁଭଂ" ଗୁଣୁ ଗୁଣୁ ହୋଇ ଏଇ ଦର୍ପଣରେ ନିଜର ଚନ୍ଦନଚର୍ଚ୍ଚିତ କପାଳରେ ମିଛଟାରେ ଚନ୍ଦନଟିପା ଦେଉଥିବା ବାହାନା କରି ମୋର ପ୍ରତିବିମ୍ବକୁ ନିରେଖି କରି ଗୃହୁଁ ଥିଲେ । ଆଉ ଏଇ ଶ୍ଳୋକଟାକୁ ଗୁଣୁ ଗୁଣୁ ହେଇ ଗାଇବା ମଧ୍ୟ ଉଦ୍ଦେଶ୍ୟ ମୂଳକ ଥିଲ । ଶ୍ଳୋକଟି ଦେବତାଙ୍କ ଉଦ୍ଦେଶ୍ୟରେ ନୁହେଁ ବରଂ ମୋତେ ଇ ଲକ୍ଷ୍ୟକରି ବୋଲୁଥିଲେ । ଏଇ ରହସ୍ୟ ଦିନେ ଅତି ଆକସ୍ମିକ ଭାବରେ ମୁଁ ଜାଣିପାରିଲ ଯୋଉଦିନ ଓଢ଼ଣା ଫାଙ୍କରୁ ମୋ ଦୃଷ୍ଟି ଦର୍ପଣ ଉପରେ ପଡିଲ ଏବଂ ସେ ଦର୍ପଣରେ ମୋ ପ୍ରତିବିମ୍ବକୁ ଏକଲୟରେ ଦେଖିଥିବାର ଦେଖିଲି । ମୁଁ ମଧ୍ୟ ଓଢ଼ଣା ତଳୁ ତାଙ୍କୁ ଦେଖିବାର ଲୋଭ ସମ୍ବରଣ କରିପାରିଲି ନାହିଁ । କେଜାଣି କେଉଁ ଏକ ଅଦୃଶ୍ୟ ମନ୍ତ୍ରଶକ୍ତି ସତେ ଯେମିତ ଦୁହିଁଙ୍କର ଆଖିକୁ ବାନ୍ଧି ରଖିଥିଲ ଯେ ମୁଁ ଆଖି ଫେରାଇ ପାରିଲି ନାହିଁ । ଜୀବନରେ ପ୍ରଥମଥର ପାଇଁ ଏପରି ଗୋଟାଏ ବଚିତ୍ର ଅନୁଭୂତି ହେଲ ଯାହା ମୁଁ କେବେହେଲେ ପାଇନଥିଲି, ଜାଣିନଥିଲି, କଳ୍ପନା ମଧ୍ୟ କରିନଥିଲି । ସେଦିନ ମୁଁ ନଚାହିଁଲେ ମଧ୍ୟ ଆଖିରେ କେତେ ନା କେତେ କଥା କହିଯାଇଥିଲି, ଏବଂ

କେତେ କଥା ପଢ଼ିଯାଇଥିଲି ତାଙ୍କ ଆଖିରେ । ବାହାର ଏତେ ବସ ବଢ଼ିଯାଇଥିଲେ ମଧ୍ୟ ପ୍ରେମର ଏପରି ଏକ ରୋମାଞ୍ଚକର ଅନ୍ତଃସଲିଳା ସ୍ରୋତ କଠିନ ପ୍ରସ୍ତର ତଳେ ଲୁଚି ହୋଇରହିଥିଲା ଯାହା କିଶୋରୀ ରମଣଙ୍କୁ ଦେଖି ହଠାତ ଭୁଇଁଫଳ ଫୁଟି ବାହାରି ଆସିଲା, ଏକଥା ଭାବିଲାବେଳକୁ ମୁଁ ନିଜେ ବି ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

ଆଗରୁ ଘରେ ଯୋଉସବୁ କାମ କରୁଥିଲି, କୋଉଥିରେ ମୋ ମନଲାଗୁନଥିଲା, ଛେଳିକି ପାଣିକି ଭିଡ଼ିଲାପରି ଖାଲି ବାଧ୍ୟବାଧକତାରେ ଗୋଟାଏ ଯନ୍ତ୍ରପରି କରିଯାଉଥିଲି । ଏବେ ମୋ ଭିତରେ ଗୋଟାଏ ପରିବର୍ତ୍ତନ ଦେଖାଦେଲା । ସବୁ କାମ କରିବାରେ ମନ ଲାଗିଗଲା । ସକାଳ ହେଲାକ୍ଷଣି ଉତ୍ସାହ ବଢ଼ିଯାଉଥିଲା । ମୁହଁ ଅନ୍ଧାରରୁ ଗାଧୁଆପାଧୁଆ ସାରି ରନ୍ଧାବଢ଼ାରେ ଲାଗିଥାଏ । ଆଉ ସେଇ ସମୟକୁ ଅତି ଆତୁର ଭାବରେ ଅପେକ୍ଷା କରି ରହେ ଯେତେବେଳେ କିଶୋରୀ ରମଣ ପୂଜା କରିବା ପାଇଁ ଆସନ୍ତି । ହାଣ୍ଡିଶାଳଠାରୁ ଠାକୁରଘର ଅଳ୍ପ ଦୂର । ମୋ କାନ ଠାକୁର ଘରଆଡ଼କୁ ଡେରିକରି ରହିଥାଏ । ଯେମିତି ଠାକୁରଘରୁ ଶ୍ଳୋକଗୁଡ଼ିକ କାନରେ ପଡ଼େ ମନ ଉଚ୍ଚାଟ ହୋଇଉଠେ, ହୁଏତ ସେଠି ମୁଁ ଅତି ଅଳ୍ପ ସମୟ ପାଇଁ ରୁହେ ପଛେ, କିନ୍ତୁ ମନ ଅତ୍ୟନ୍ତ ବ୍ୟାକୁଳ ହୁଏ ସିବାପାଇଁ । ଠାକୁର ଘର ପାହାଚ ଚଢ଼ିଲାବେଳେ ମନ ଅଭିସାରିକା ପରି ରୋମାଞ୍ଚ ଓ ଉତ୍ସାହରେ ଭରିଯାଉଥାଏ । ପାଦ ଛନ୍ଦହୋଇ ଯାଉଥାଏ । ଛାତି ଭିତରେ ଗୋଟାଏ ବିଚିତ୍ର ସ୍ପନ୍ଦନ ଖେଳିଯାଏ । ପାହାଚ ଉପରୁ ମୋ ପାଦର ନୂପୁରର ଝୁଣ୍ଟୁଝୁଣ୍ଟୁ ନିକ୍ୱଣ ଶୁଣିକରି କିଶୋରୀରମଣ ହାତରେ ଏଇ ଦର୍ପଣଟାକୁ ଧରି କପାଳରେ ଚନ୍ଦନ ଘେନିବାର ଉପକ୍ରମ କରନ୍ତି ଏବଂ ଠିକ ସେହି ସମୟରେ ଏହି ଶ୍ଳୋକ ବୋଲନ୍ତି, କସ୍ତୁରୀ ତିଲକଂ ଲଲାଟ ପଟଲେ...... ।

ସେଅଁଙ୍କ ଘରେ ଖେଳି ଯାଇଥିବା ସୁଗନ୍ଧ, କର୍ପୂର, ଅଗୁରୁ ଏବଂ ଅଗରବତୀର ମନଲୋଭା ସୁଗନ୍ଧିତ ଧୂଆଁ ଏଇ ଧୂଆଁ ଲାଗି ପାତଳ କୁହୁଡ଼ିଆ ମନମୋହକ ପରିବେଶ, ଦୀପର ସୁନେଲି ଆଲୋକ, ଆଉ ତା'ରି ଭିତରେ ଗୋଲାପୀ ରଙ୍ଗର ରେଶମୀ ପାଟ ଅଣ୍ଟାରେ ଗୁଡ଼େଇଥିବା କିଶୋରୀ ରମଣ, ତାଙ୍କର ଗୌରବର୍ଣ୍ଣ ସୁଠାମ ପିଠି, ପିଠି ଉପରେ ଲମ୍ବିଥିବା ଧଳା ଚକମକ ପଇତା, ଗୁଞ୍ଜିତ ମନ୍ତ୍ରୋଚ୍ଚାରଣର ସୁଲଳିତ ଧ୍ୱନି ! ଏସବୁ ମୋତେ ସେଅଁଙ୍କ ପରି ଅତି ପ୍ରିୟ, ଅତି ଶୁଚିମନ୍ତ ମନେହେଉଥିଲା । ନିତି ଓଢ଼ଣା ଫାଙ୍କରୁ ତାଙ୍କୁ ନିରେଖି କରି ଦେଖିବା ଏବଂ ଦର୍ପଣରେ ତାଙ୍କର ଆଖି ସାଙ୍ଗରେ ଆଖି ମିଳେଇବା, ମୁଁ ସେଇମିତି ଅପଲକ ନୟନରେ ମନଭରି ଏ ଦୃଶ୍ୟକୁ ଦେଖୁନଥିଲି ତ, ସତେ ଯେମିତି ଆକଣ୍ଠ ପିଇଯାଉଥିଲି । ବୋହୂ ! ତୁ କମାରୁ ବିଶ୍ୱାସ କରିପାରିବୁ ନାହିଁ ଯେ କିଶୋରୀ ରମଣ କେବେହେଲେ ମୁହଁ ବୁଲେଇ ମୋତେ ଦେଖିବାକୁ ଚେଷ୍ଟା କରିନଥିଲେ । ମୋତେ କେବେ ମଧ୍ୟ ସ୍ପର୍ଶ କରିନଥିଲେ । ବାସ

ଏଇ ଦର୍ପଣ ଖଣ୍ଡିକ ଥିଲା ଏକମାତ୍ର ମାଧ୍ୟମ ଯାହାକୁ ଆଶ୍ରୟ କରି ଆଖିରେ ଆଖିରେ ସେ ତାଙ୍କ ମନର ସମସ୍ତ କଥା ମୋତେ ଜଣାଇ ଦେଉଥିଲେ, ମୁଁ ଶୁଣିନେଉଥିଲି । ମୁଁ କହିଦେଉଥିଲି ଓ ସେ ଶୁଣିନେଉଥିଲେ । କେବେମଧ୍ୟ ଆମ ଭିତରେ ପଦୁଟିଏ କଥାବାର୍ତ୍ତା ହୋଇନଥିଲା, କେବଳ ଏଇ ଶ୍ଳୋକ, କସ୍ତୁରୀ ତିଲକଂ ଲଲାଟ ପଟଲେ... ଛଡ଼ା ଆଉ କୌଣସି ଶବ୍ଦ କୁହାଯାଉନଥିଲା । ଏଇମିତି ମାସ ପରେ ମାସ, ବର୍ଷପରେ ବର୍ଷ ବିତିଯାଇଥିଲା । ଆହୁ ହୁଏତ ଏମିତି ସାରା ଜୀବନ ମଧ୍ୟ ବିତିଯାଇଥାଆନ୍ତା । ହେଲେ ପୂଜାପର ଏଇ ପବିତ୍ର ପ୍ରେମ ଦିନେ ଏପରି କଳଙ୍କିତ ହେବ, ମୁଁ ସ୍ୱପ୍ନରେ ମଧ୍ୟ ଭାବିନଥିଲି । ତେବେ ଯାହା ହେବାକୁ ଥିବ ତାକୁ ଆଜଯାଏ କେହି ଅଟକେଇ ପାରିଲାଣି କି ?

ଯେତେବେଳକୁ ଏ ମାରାତ୍ମକ ରୋଗର ଲକ୍ଷଣ ଦେଖାଦେଇଥାଏ । ଦିନେ ମୋତେ ଭୀଷଣ ଜର ହେଲା । ଏମିତି ଜର ଯେ ମୁଁ ବିଛଣାରୁ ଉଠି ପାରିଲି ନାହିଁ । ସେଦିନ ବଡ଼ଯାଆ ଠାକୁର ଘରକୁ ନୈବେଦ୍ୟ ପୂଜା ସାମଗ୍ରୀ ନେଇକରି ଗଲେ । ମୁଁ ତ ସବୁବେଳେ ଗୋଡ଼ରେ ପାଉଁଜି ପିନ୍ଧେ ଯାହାର ରୁଣୁଝୁଣୁ ଶବ୍ଦ ପ୍ରତି ପଦପାତରେ ଗୁଞ୍ଜରି ଉଠେ । କିନ୍ତୁ ବଡ଼ଯାଆ ପାଉଁଜି ପିନ୍ଧନ୍ତି ନାହିଁ । ସେଦିନ ଯେମିତି ସେ ଦିଅଁଙ୍କ ଘରକୁ ନୈବେଦ୍ୟ ଥାଳି ନେଇ ପ୍ରବେଶ କଲେ, କିଶୋରୀରମଣ ସବୁଦିନ ଭଳିଆ ଦର୍ପଣରେ ଆଖି ରଖି ଅତି ସହଜ ଭାବରେ ପଚାରିଲେ—କସ୍ତୁରୀ ? ଆଜି ତୁମ ପାଉଁଜି କାହିଁକି ନୀରବ ? କାଢ଼ି ଦେଇଛ କି ? କଅଣ ? ତା'ର ରୁଣୁଝୁଣୁ ଶବ୍ଦତ ମୋ ପାଖକୁ ତୁମ ଆସିବାର ସନ୍ଦେଶ ନେଇ ଆସିଥାଏ ।

"ବୋହୂ ? ଏତିକି କଥାରୁ କେହି କେବେ ମଧ୍ୟ ବିଶ୍ୱାସ କରିବ ନାହିଁ ଯେ ଜୀବନରେ ପ୍ରଥମଥର ପାଇଁ କିଶୋରୀ ରମଣ ମୋତେ କିଛି କହିବା ପାଇଁ ଚାହିଁଥିଲେ । କିନ୍ତୁ ବଡ଼ଯାଆଙ୍କୁ ଘରେ ନିଆଁ ଜାଳିଦେବାପାଇଁ ଏତିକି ଯଥେଷ୍ଟ ଥିଲା । ସେ ତୀବ୍ରବେଗରେ ଧାଇଁଗଲେ ଦାଣ୍ଡଘରକୁ । ଆଉ ସବୁ ଲାଜଶରମ ଭୁଲିଯାଇ ବାହାର ଲୋକଙ୍କ ଆଗରେ ଦିଅରଙ୍କ ଉପରେ ଗର୍ଜି ଉଠିଲେ, ଆହେ ଦାମୋଦର ! ତୁମେ କିଛି ଜାଣିଛ କି ନାହିଁ, ତେଣେ ତୁମ ଭାରିଜା ପଣ୍ଡିତ କିଶୋରୀ ରମଣ ସାଙ୍ଗରେ ପ୍ରେମଲୀଳା କରିଚାଲିଛି । ଆଜି ମଧ୍ୟ ସେଦିନର କଥା ମନେପଡ଼ିଲେ ଦେହ ଶିହରି ଉଠୁଛି । ବୋହୂ ! ସେଦିନ ତୋ ଝୁଡ଼ୁ ଶାଶୁରଙ୍କ ଠେଙ୍ଗା ଆଉ ମୋ ପିଠି, ଦୁହିଁଙ୍କୁ ଟିକିଏ ବିଶ୍ରାମ ମଧ୍ୟ ମିଳିଲା ନାହିଁ । କଲେଇ ବାଡ଼େଇଲା ପରେ ସେ ମୋତେ ବାଡ଼େଇ ଚାଲିଲେ ଏକେତ ଭୀଷଣ ଜରରେ ମୋ ଦେହରେ ତାତି ଉଠି ହେଉଥିଲା । ତା' ଉପରେ ଅବିଶ୍ରାନ୍ତ ମାଡ଼ । ମୁଁ ଅଚେତା ହେଇ ପଡ଼ିରହିଲି । ତଥାପି ମଧ୍ୟ ସେଥିପାଇଁ କିଛି ଦୁଃଖ ହେଲନାହିଁ, ଦୁଃଖ ଲାଗିଲା ଏଇଥିପାଇଁ ଯେ ହୁଏତ ଯଦି କିଶୋରୀ ରମଣଙ୍କ ତୁଣ୍ଡରୁ ବାହାରିଥିବା ସେଇ ଦେଇପଦ କଥା ମୁଁ ଭଲ ମୋ କାନରେ ହେଲେ ଶୁଣିଥାଆନ୍ତି, "ତାହାହେଲେ ମୋ ଜୀବନ ଧନ୍ୟ ହୋଇଯାଇଥାନ୍ତା ।

ମୂଳରୁ ତ ମୁଁ ଘରଟା ଭିତରେ ସ୍ଥାନମାନଙ୍କୁ ହେଉ ଅଲୋଡ଼ା ଭାବରେ ବନ୍ଧି ରଖିଥିଲି । ଏବେ ଘଣ୍ଟାଏପରେ ଅବସ୍ଥା ଅଧିକ ଶୋଚନୀୟ ହୋଇପଡ଼ିଲା । ସେଇଦିନଠାରୁ କଣ୍ଠୋଶ୍ରୀ ରମଣଙ୍କର ଆସିବା ମନା ହୋଇଗଲା । ଗୋଟାଏ ପଟରେ ଦେହର ଏ ରୋଗ ଉତ୍କଟ ହୋଇଯାଇଥିଲା । ବାପ୍ ! ଦିନ କେଇଟାର କୁଣିଆ ପରି ମୋର ଦଶା ହୋଇଗଲା ।

କସ୍ତୁରୀ ଖୁଡ଼ି ସେ ଦର୍ପଣର ଭଙ୍ଗାଟୁକୁରା କାଚକୁ ତାଙ୍କର ଗୋଟାଏ ପୁରୁଣା ଶାଢ଼ୀରେ ବାନ୍ଧିକରି ମୁଣ୍ଡ ଉପରକୁ ଥୋଇଥିଲେ । ଝଣ୍ଟି ଖଣ୍ଟି କରି ତାଙ୍କର ଏଇ ଅପୂର୍ବ ପ୍ରେମ କାହାଣୀକୁ କହୁ କହୁ ସେ ଭଙ୍ଗା କାଚର ପୁଟୁଳିଟାକୁ ପରମ ସ୍ନେହରେ ଆଉଁସିବାକୁ ଲାଗିଲେ । ଭଙ୍ଗାକାଚର ଧାରରେ କେତେଥର ତାଙ୍କ ହାତର କ୍ଷତ ଜାଗା ଅଧିକ କ୍ଷତାକ୍ତ ହୋଇଉଠିଥିଲା ଓ ରକ୍ତ ବାହାରିବାକୁ ଲାଗିଲା । ମାତ୍ର ଖୁଡ଼ିଙ୍କର ସେଥିପ୍ରତି ଜମାରୁ ନଜର ନଥାଏ । ବୋଧହୁଏ ଏଇ କଷ୍ଟ ତାଙ୍କୁ ଅମୃତପରି ପରମ ସୁଖଦ ମନେହେଉଥିଲା । "ବୋହୂ ! ଏବେ ମୋର କାହାରି ପ୍ରତି ଜମାରୁ କିଛି ଅଭିଯୋଗ ନାହିଁ । ଇଏ ତ ସବୁ ପୂର୍ବଜନ୍ମର ପ୍ରାରବ୍ଧ କର୍ମଫଳ ।" ତା' ପରଠୁ ସବୁଦିନ ପାଇଁ ଆଖିବୁଜିଲା ଯାଏଁ, ତୁଣ୍ଡ ପଡ଼ିଗଲା ଯାଏଁ କେବଳ ସେଇ ଶ୍ଲୋକଟିକୁ ସେ ଅନବରତ ଜପିଚାଲିଥିଲେ, "କସ୍ତୁରୀ ତିଲକଂ ଲଲାଟ ପଟଲେ··· ।"

ଦିନେ ସକାଳୁ ଉଠିଲାବେଳକୁ ବଡ଼ଯାଆ ସତ୍ଯୁଠୁ ବଡ଼ ପାଟିରେ ରାହାଧରି କାନ୍ଦି ଚାଲିଥିଲେ, "କସ୍ତୁରୀ ! ଆମକୁ ସବୁ ଛାଡ଼ି କୁଆଡ଼େ ଚାଲିଗଲୁ ଲୋ ? ତୋ' ସେବା ଟିକିଏ କରିବାକୁ ଏ ମନ କେତେ ଭାବିଥିଲା । ତୁ ସେକଥା କରେଇ ଦେଲୁନି ଲୋ ।"

ରାତିରେ କସ୍ତୁରୀ ଖୁଡ଼ି ଶୋଇଲେ ଯେ ଶୋଇଲେ । ଆଉ ଉଠିନାହାନ୍ତି । ତାଙ୍କ ମରଶରୀରକୁ ଅନ୍ତିମ ଯାତ୍ରାରେ ନେବା ପୂର୍ବରୁ ତାଙ୍କର ପାଦଧୂଳି ନେବାକୁ ମୁଁ ତାଙ୍କ ଘରକୁ ଗଲାବେଳକୁ ଗାଧେଇ ପାଧୋଇ ଅହ୍ୟସ୍ତ୍ରୀଲକ୍ଷଣୀ ବେଶରେ ସଜେଇ ସୁଜେଇ ଖୁଡ଼ିର ଦେହକୁ ଖଟରୁ ଓହ୍ଲେଇ ତଳେ ଶୁଆଇ ଦେଇଥିଲେ । ଖୁଡ଼ି ସେତେବେଳେ ଏତେ ସୁନ୍ଦର ଦିଶୁଥିଲେ ଯେ ତାଙ୍କୁ ଏପରି ଉତ୍କଟ ରୋଗ ହୋଇଥିବାର ସାମାନ୍ୟ ଲକ୍ଷଣ ମଧ୍ୟ ଦିଶୁ ନଥିଲା । ଚେହେରାରେ ସାମାନ୍ୟ ଯନ୍ତ୍ରଣାର ଚିହ୍ନବର୍ଣ୍ଣ ମଧ୍ୟ ନଥିଲା । ବରଂ ଗୋଟାଏ ଦିବ୍ୟ ଅଲୌକିକ ଶାନ୍ତ ଭାବ ଦେହରେ ଝଲସି ଉଠିଥିଲା । ସେଇ ସମୟରେ ମୁଁ ତାଙ୍କ ତକିଆ ତଳୁ ମଇଳା ଚିରାଶାଢ଼ୀରେ ବନ୍ଧା ହୋଇଥିବା ସେହି ଅମୂଲ୍ୟ ପ୍ରେମର ସନ୍ତକ ସ୍ୱରୂପ ଭଙ୍ଗା ଦର୍ପଣର କାଚ ପୁଟୁଳିଟାକୁ ନେଇ ଆସିଲି ଯେ ଆଜିଯାଏଁ ତାକୁ ମୋ ପାଖରେ ଗଚ୍ଛିତ ଧନ କରି ଯତ୍ନରେ ସାଇତି ରଖିଛି ।



# ଘରର ଡାକରା

□ ସୁଦର୍ଶନ ବଶିଷ୍ଠ

"କାଶ୍ରେ… କାଶ୍ରେ !" କିଏ ଜଣେ ମୋତେ ଡ଼ାକିଲା । ଅତୀବ ଆତ୍ମୀୟ ସମ୍ବୋଧନ । ସ୍ନେହମୟ ଡ଼ାକ ଯାହା ସିଧା ମୋର ଅନ୍ତର୍ମନକୁ ସ୍ପର୍ଶ କଲା । ବହୁ ବର୍ଷ ପରେ ମୋତେ କିଏ ଜଣେ ଏଇ ନାଁରେ ଡ଼ାକିଲା ।

"କାଶ୍ରେ… ଓଁ କାଶ୍ରେ… " ମୋ ପିଲାଦିନର ସମ୍ବୋଧନ । ପଇଁତିରିଶି ବର୍ଷ ବୟସରେ ଯଦି କେହି ପାଞ୍ଚବର୍ଷ ବେଳର ନାଁରେ ଡ଼ାକେ, କେତେ ରୋମାଞ୍ଚକ ନ ଲାଗିବ ! ମୋ ତଳିପାଠାରୁ କପାଳଯାଏଁ ଗୋଟାଏ ଅପୂର୍ବ ଶିହରଣ ଖେଳିଗଲା । ଆଜି ଏତେ ବର୍ଷ ପରେ କିଏ ମୋତେ ଏ ନାଁରେ ଡ଼ାକୁଛି ? ଗୋଡ ଦୁଇଟା ହଠାତ ଥିର ହୋଇଗଲେ ଓ ମୁଁ ବୁଲିପଡି ପଛକୁ ଅନେଇଲି । ପଛରେ ଆଖି ପାଇଲାଯାଏଁ ଡାକିଲାବାଲାକୁ ଦେଖିପାରିଲିନାହିଁ । ଦୋକାନ ଗୁଡିକରେ ଜଣେ ଦି'ଜଣ ଲେଖା ବସି ନିଜନିଜ ଭିତରେ ଗପସପରେ ମାତିଥିଲେ । ନିଜ ବଜାରରେ ଆଜି ସମସ୍ତେ ଅଜଣା, ଅପରିଚିତ ମନେହେଉଥିଲେ । ସେମାନଙ୍କୁ ଦେଖି ଯେତେବେଳେ ମୁଁ ଡାକିଲାବାଲାକୁ ଠଉରେଇ ପାରିଲି ନାହିଁ ସେତେବେଳେ ଅଗକୁ ପାଦ ବଢ଼େଇଲି । ମନ ଭିତରେ ଯୋଉ ଚମକ ହଠାତ ସୃଷ୍ଟି ହୋଇଥିଲା ତାହା ପୁନରାୟ ଲିଭିଗଲା ।

ସିଠେଇ ଦୋକାନ କଡରେ ଗୋଟିଏ ଅତି ସଂକୀର୍ଣ୍ଣଗଳି । ଗଳି କ'ଣ, ଦୁଇଟା ଦୋକାନ ଘରର ଦୁଇକାନ୍ଥ ମଝିରେ କେଜାଣି କାହିଁକି ଏଇ ଟିକିଏ ଜାଗା ଛଡ଼ା-ହୋଇଯାଇଥିଲା । ପିଲାଦିନେ ଏଇ ଗଳି ଭିତର ଦେଇ ମୁଁ ବଜାରକୁ ଯିବା ଆସିବା କରୁଥିଲି । କେତେଥର ଗଳି ଭିତରେ ଠିଆହୋଇ ପକେଟରୁ ଖୁଚୁରାପଇସା କାଢ଼ି ହାତରେ ମୁଠେଇ ଧରେ, କୋଉଠି ଆଉ ପଡ଼ିଯିବ୍-ନାହିଁ ତ ? ଘରକୁ ଫେରିଲାବେଳକୁ ଲୁଣି ହେମିଆ ମୁଠାଏ ମୁହଁରେ ଠେସି ନେଉଥିଲି । ଗଳିରୁ ବାହାରିଲେ ସାମ୍ନାରେ ପଡ଼ିବ ତେଲ ଘଣା ; ଖାଣ୍ଟି ଘଣି ତେଲ୍ ସେଠି ମିଳେ ଯାହାକୁ ମୁହଁରେ ଲଗାଇଲେ ଆଖିରୁ ପାଣି ଗଡ଼ି ପଡ଼େ । ଗଳିର ଗୋଟାଏ ମୁଣ୍ଡରେ ଖଲିପତ୍ର ଓ ତେଲର ବାସ୍ନା, ଆରମୁଣ୍ଡରେ ସିଠେଇ ତିଆରି ହେବାର ବାସ୍ନାରେ ନାକ ରୁନ୍ଧି ହୋଇଯାଏ ।

ଆଜ ପୁଣି ସେଇ ସରୁଗଳିଟା ଭିତରେ ଗଲାବେଳେ ମୋର ପାଦ ଦୁଇଟା କ୍ଷୀଣକ୍ଷୀଣ ପାଦ ହୋଇଗଲେ । ମୋର ଶରୀର ମଧ୍ୟ କ୍ଷୁଦ୍ର ହୋଇଗଲା । ପାଦ ଦୁଇଟା ପବନରେ ଉଡ଼ିଗଲା ପରି ମନେହେଲା ଯତେ ଯେମିତ ସଉଦା କିଣିସାରି କାନ୍ଧରେ ଝୁଲା ବ୍ୟାଗ ଓହଳାଇ ମୁଁ ବଜାରରୁ ଫେରୁଛି । ଘରେ ବୋଉ ମୋ ଫେରିବା ବାଟକୁ ଅପେକ୍ଷା କରି ବସିଛି, ଦୋକାନରୁ ଗୁଡ଼ ନେଇକି ଗଲେ ଗୁ' ହେବ । ଜାଣେନା, କେଉଁ ବେଇଗି କାହାଘର ପଛପଟ, କାହା ଘରର ଆଗପଟ ପଦାଉ ଦେଇ ନାଳ ଉପରେ ବାଉଁଶର ପୋଲ ପଡ଼ିଛି ତାକୁ ଟପିଗଲି । ପୋଲତଳେ ନାଳର ପାଣି ଖୁବ ଜୋରରେ ଗଡ଼ିଥିଲା ଓ ଥଣ୍ଡାପାଣିର ଶୀତଳସ୍ପର୍ଶ ମୁଁ ପାଣିଛିଟାରେ ଅନୁଭବ କଲି । ନାଳର ଆରପଟରେ ଗୋଟେ ପଟାପଥର ଉପରେ କେତେଜଣ ସ୍ତ୍ରୀଲୋକ ବାସନ ମାଜୁଥିଲେ । ତା ଆଗକୁ କକେଇଙ୍କ ଘର ପର୍ଯ୍ୟନ୍ତ ଅତି ପରିଚିତ ଚକ୍ କଣ୍ଟିପଥରର ରାସ୍ତା । ଏସବୁର ସ୍ମୃତି ଏବେ ମଧ୍ୟ ମୋ ମନରେ ସଜୀବ ଅଛି ।

କକେଇ ଦାଣ୍ଡରେ ବସିଥିଲେ, ଗଛ ଛାଇରେ । ମୁଁ ଗୋଡ଼ତଳେ ମୁଣ୍ଡିଆ ମାରିଲି । "ଆ··· ଅ··· କେତେବେଳେ ଆସିଲୁ ? ଇଏ୍ନେ ହଉଛନ୍ତି ଓ: ପି. ଭରଦ୍ଵାଜ ।" ସେ ନିଜର ପ୍ରସନ୍ନତା ପ୍ରକାଶ କରିବା ସହିତ ପାଖରେ ବସିଥିବା ଭଦ୍ରଲୋକଙ୍କୁ ପରିଚିତ କରାଇ କହିଲେ ।

"କେଉଁ ଭରଦ୍ଵାଜ ? ମୁଁ ତ ଚିହ୍ନି ପାରୁନାହିଁ ।" ଭଦ୍ରଲୋକଙ୍କର ଷାଠିଏ ବର୍ଷର ପୁରାତନ ଚକ୍ଷୁଯୁଗଳରେ ଅପରିଚୟର ଭାବ ଅଧିକ ଗଭୀର ହୋଇଗଲା ।

"ସେ ଏଇଠି ରହୁଥିଲେ ।" ଖଣ୍ଡେ ଦୂରରେ ଥିବା ଘରକୁ ଦେଖେଇ କକେଇ ଚିହ୍ନେଇ ଦେବାକୁ ଚେଷ୍ଟାକଲେ । "ଏଇ ସବୁ ତ ତାଙ୍କରି ଥିଲା ।" କକେଇ ଦେଖେଇଥିବା ଅସ୍ତଗାମୀ ସୂର୍ଯ୍ୟଙ୍କ କିରଣର ଛାଇଁ ପଡୁଥିବା ଘରଟା ଅତ୍ୟନ୍ତ ଉଦାସ ଭାବରେ ଠିଆ ହୋଇଥିଲା । ଏକାବେଳେକେ ଚୁପ୍ ଚାପ୍ ।

"କଥାଟା ତ ଏବେ ପୁରୁଣା ନୁହେଁ । ଆପଣ ଯେମିତି କହୁଛନ୍ତି ସତେ ଯେମିତି ଏହା ଗୋଟାଏ ଅତି ପୁରୁଣା କଥା । ଇଏ୍ ତ ସେତେବେଳେ 'ସାନ ପିଲା··· । କ'ଣ ନାଁ । ?"

"କାଗ୍ରେ" କକେଇ କହିଲେ ।

"ହଁ, ହଁ, କାଗ୍ରେ, କାଗ୍ରେ," ଭଦ୍ରଲୋକ ନାଁକୁ ନେଇ ଏମିତି ଭାବରେ ହସିଲେ ଯେ ଅତି ପାଖର ଅତି ଆପଣାର ମନେ ହେଲେ । ହସି ହସି ସେ ଅତୀତର ସ୍ମୃତି ଭିତରେ ହଜିଗଲେ । "ସିଏ ଗୋଟାଏ ସମସ୍ତ ଥିଲା, ସବୁ ଏଇ ମଣିଷ କରୁଛି, ଘର ଦ୍ଵାର । ଆପଣ ତ ଏବେ ବାହାରେ ରହୁଛନ୍ତି । ପିଲାଟିଏ ହୋଇଥିଲେ ଯାହା ଦେଖିଥିଲି । ତା'ପରଠୁ ଆଉ ଦେଖିନାହିଁ ।" ସେ ମୋ ଆଡ଼କୁ ପ୍ରଶ୍ନିଳ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ତାଙ୍କ କଥାକୁ ସ୍ଵୀକାର କଲାପରି ମୁଁ ମୁଣ୍ଡ ହଲାଇଲି ।

ମୁଁ ପଇଁଣ୍ଟଳଣି ବର୍ଷର ହେଇ ସାରିଲିଣି । ପାଦର ସ୍ଫୂର୍ତ୍ତି କାଗାରେ ଶିଥିଳତା ଆସିଗଲଣି ।

ଗୃ' ଗିଇ ସାରିଲା ପରେ ମୁଁ ଆମ ଘର ଆଡ଼କୁ ଗଲି । ବଣ ଜଙ୍ଗଲ ହେଇ, ଝାଳ ଝମାହେଇ ଘରର ଅଗଣାଟା ପଡ଼ିଥିଲା । ଗୋଟାଏ କଡ଼କୁ ଶିଳଟା ପଡ଼ିଥିଲା ଦୀର୍ଘ ଦିନଧରି ଅବ୍ୟବହୃତ ହେଇ । ଆଗରୁ ଯେତେବେଳେ ଏଇ ଶିଳରେ ବାଟ ବଟା ହେଉଥିଲା ସେତେବେଳେ ବୁଝାଯାଉଥିଲା ଯେ ଆଜ ହୁଏତ କୌଣସି ପର୍ବପର୍ବାଣି ବା କାଣ୍ଡୁର ଜନ୍ମ ଦିନ । ମଝିରେ ତୁଳସୀ ଚଉରା । ଏବେ ସେଥିରେ ଘାସ ଉଠି ଶୁଖିଗଲାଣି । ଶ୍ରାବଣ ମାସର ଅନ୍ଧାର ରାତିରେ ଏଇ ଚଉରାର ଖୋପରେ ଜଳୁଥିବା ଦୀପର ଚଳଚଞ୍ଚଳ ଆଲୋକ ବୋଉ ମନର ଅସରନ୍ତି ସ୍ୱପ୍ନପରି ମନେହେଉଥିଲା । ଉପର ଆଡ଼କୁ ଘର ଛାଇ କାଥ ପଡ଼ିକେଇଥିଲେ । ମୂଳଦୁଆର ପଥରକାନ୍ଥି ମାଟି ଭିତରେ ପୋତି-ହୋଇ ଉପରକୁ ଅଳ୍ପ ଅଳ୍ପ ଦିଶୁଛି, ଠିକ୍ ଯେମିତି ଅତୀତର ସ୍ମୃତି ଅଧା ଭୁଲି ହୋଇଗଲାଣି ଓ ଆଉ ଅଧେ ଏବେ ବି ସଂପୂର୍ଣ୍ଣ ସଜୀବ ଅଛି ।

ଅଗଣା ହେଉଛି ରଙ୍ଗମଞ୍ଚରଅନ୍ୟନାମ । ଘର ଯଦି ନେପଥ୍ୟ ହୁଏ ତେବେ ଅଗଣା ହେଉଛି ଖୋଲାମଞ୍ଚ ଯେଉଁଠି ନାଟକର ଦୃଶ୍ୟଗୁଡ଼ିକ ଦର୍ଶକଙ୍କ ଆଗରେ ଖୋଲଖୋଲ ଅଭିନୀତ ହୋଇଥାଏ । ଅଗଣାକୁ ସମସ୍ତ ଅଭିନେତା ଅଭିନେତ୍ରୀମାନେ ଏକଦମ ପ୍ରସ୍ତୁତ ହୋଇଆସିଥାଆନ୍ତି, ଉଭୟ ଖୁସି ଓ ଦୁଃଖ ନେଇ ।

ଘର ମୋତେ ଦେଖିଲା ଏବଂ ଖୁବ୍ ବଡ଼ ପାଟିରେ ଡାକିଲା ।

ଆମ ଘର ଗୋଟିଏ ଗୃହପାଳିତ ଗାଈପରି, ଯାହାର ମା ଏବଂ ଆଈମାନେ ମଧ୍ୟ ଏଇ ଘରେ ପୋଷା ହେଇଥିଲେ । ମୋତେ ଦୂରରୁ ଦେଖି ହମ୍ବାଳି ଉଠିଲା । ପାଖକୁ ଗଲାରୁ ତା' ବେକ କୁଣ୍ଡେଇବା ପାଇଁ ମୋ ଦେହରେ ଘଷିହେଲା । ଠିକ ଗୋଟିଏ ପାଳିତ ଗାଈ ପରି ଏଇ ଘରର ଆର୍ତ୍ତନାଦରେ ମୋ ପାଦ ଦୁଇଟା ସ୍ତମ୍ଭୀଭୂତ ହୋଇଗଲେ ।

"ପୁରୁଣା ଗଛରେ ଜୀବନ ରହିଯାଏ" ବାପା କହନ୍ତି । ସେଇଥିପାଇଁ କେହି ପୁରୁଣା ଗଛକୁ କାଟନ୍ତି ନାହିଁ । ବୟସ୍କ ଲୋକମାନେ କହୁଥିଲେ ଯେ ଗାଁରେ ଏମିତି ଅନେକ ଗଛ ଦେଖିବାକୁ ମିଳେ ଯେଉଁ ଗୁଡ଼ିକର ବୟସ ଅତି କମ୍ରେ ଶହେ ବର୍ଷ । ସେଗୁଡ଼ିକୁ କାଟିବା ପାଇଁ କେହି କେବେହେଲେ ସାହସ କରିନାହାନ୍ତି । ନାଁ କେହି କାଟିବାକୁ ଚାହିଁଛନ୍ତି । ଯଦିବା କେହି କେବେ ଏମିତି ଗଛକୁ କାଟିଛି, ବା ଝଡ଼ ବାତ୍ୟାରେ ସେ ଗଛ ଉଜାଡ଼ିଛି, ସେତେବେଳେ ଅତି କରୁଣ ଭୟଙ୍କର ଶବ୍ଦରେ ଗାଁର ହୃତ୍ପିଣ୍ଡ ଥରିଉଠିଛି । ବାପା ଏମିତି କେତେ କାହାଣୀ କହୁଥିଲେ, ଗାଁ ମଝିରେ ସେଇ

ଯୋଉ ଅମୁକ ଗଛଟା ଥରେ ଝଡ଼ରେ ଗଳିପଡ଼ିଲା । ସେତେବେଳେ ଗୋଟାଏ, ଭସ୍ମଙ୍କର କରୁଣ ଚିତ୍କାର କରିଥିଲା ଏବଂ ଅନେକ ଦିନ ପର୍ଯ୍ୟନ୍ତ ପାଖ ପାହାଡ଼ ଗୁଡ଼ିକରେ ସେ ଧ୍ୱନି ଗୁଞ୍ଜିତ ହୋଇଥିଲା । ସେଇ ଗଛରେ ରହୁଥିବା ଦେବତା, ରାକ୍ଷସ, ଭୂତପ୍ରେତ ନିରାଶ୍ରୟ ହୋଇ ଦୀର୍ଘଦିନ ପର୍ଯ୍ୟନ୍ତ ସେ ବାଟଦେଇ ଯାଉଥିବା ଲୋକଙ୍କୁ ହଇରାଣ କରୁଥିଲେ ।

ପୁରୁଣା ଗଛପରି ପୁରୁଣା ଘରେ ମଧ୍ୟ ଜୀବ ପଡ଼ିଯାଆନ୍ତି । ଅଗଣାରେ ଉଠିଥିବା ବଡ଼ ବଡ଼ ଘାସ ବୁଦାରେ ଗୋଟାଏ ଚଢ଼େଇ ଡେଣା ଫଡ଼ ଫଡ଼ କରି ଖେଳୁଥିଲା । କୁହାଯାଏ ଏ ଚଢ଼େଇ ଆସିଲେ ଘରକୁ ନୂଆ ପ୍ରାଣୀ ଆସନ୍ତି, ହୁଏତ ସନ୍ତାନ ବା ବାଛୁରୀ । ଚଢ଼େଇଙ୍କି ଶବ୍ଦ ଶୁଣି ଫୁର୍‌କିନା ଉଡ଼ିଗଲା । ବୋଉ ଥିଲେ କହୁଥାଆନ୍ତେ, ଚଢ଼େଇକୁ ଉଡ଼ାନା । ସେ ଉନ୍ନତିର ଲକ୍ଷଣ ।

ହଲେ ବଣୁଆ ପାରି ମଟିଘରେ ନିର୍ଭୟରେ ପୋକଯୋକ ଖାଉଥିଲେ । ଘରେ ଜଙ୍ଗଲ ଚଢ଼େଇ ପଶିବା ଭଲ ଲକ୍ଷଣ ନୁହେଁ, ବୋଉର ପାଟି ଶୁଭିଲା । ମୁଁ ଗୋଡ଼ିଟିଏ ଉଠେଇ ଫୋପାଡ଼ିଦେଲି । ଚଢ଼େଇ ଦୁଇଟା ଫଡ଼୍ ଫଡ଼୍ କରି ଉଡ଼ିପଳେଇଲେ । କକେଇ ପୁଅ ଭାଇ ଦୌଡ଼ି ଦୌଡ଼ି ଆସି ପହଞ୍ଚିଲା । ସେ ବୋଧେ ଦୂରରୁ ମୋତେ ଦେଖୁଥିଲା । ସେଇଠୁ ପଚାରିଥିଲା, "ଭାଇନା ! ସାପ ନୁହେଁ ତ । ଆଜିକାଲି ଏଇଠି ଗୋଟାଏ ରହୁଛି ।"

"ସାପ ! ନାଁ ନାଁ, ବଣୁଆ ପାରି ଦୁଇଟା ।" ମୁଁ କହିଲି ।

"ବଣୁଆ ପାରି !" ସେ ବିଚଳିତ ହେଲାପରି କହିଲା ।

"ହାଣ୍ଡିଶାଳ ଏଇଠି ଥିଲା ନା ?"

"ନାଁ । ନାଁ; ଏଠି ନଥିଲା । ସେକଡ଼ ଘରେ ଥିଲା ଯୋଉଟା ଗଳିପଡ଼ିଛି । ଏଇଟା ସେ ଘରର କାନ୍ଥ ।"

ହାଣ୍ଡିଶାଳଠୁ ଅଳ୍ପ ଦୂରରେ ମୁଁ ବସିଗଲି । ପ୍ରକୃତରେ ହାଣ୍ଡିଶାଳଟା ସଂପୂର୍ଣ୍ଣ ଭାଙ୍ଗି ଯାଇଥିଲା । ଝଣ୍ଟେ ଖାଲି କାନ୍ଥ ଯାହା ଥିଲା, ଯୋଉଥିରେ ଧୂଆଁ ଯିବାପାଇଁ ଜାଲାଟାଏ ଥିଲା ।

ଭାଙ୍ଗିରୁଜି ନିସ୍ତବ୍ଧ ନିଷ୍ପ୍ରଭ ହୋଇଯାଇଥିବା ଘରଟା ଦେହରେ ସତେ ଯେପରି ପ୍ରାଣସଞ୍ଚାର ହୋଇଗଲା । ପୁଣି ସେ ତା'ର ପୂର୍ବ ଆକାର ଲାଭକରି ଚେଇଁଉଠିଲା ଓ କୌଣସି ଦିବଂଗତ ପୁରୁଖା ବ୍ୟକ୍ତିପରି ମୋତେ କହିବାକୁ ଆରମ୍ଭ କଲା ।

ହାଣ୍ଡିଶାଳରେ ଚୁଲିରେ ବୋଉ ବସେଇଥିବା ତରକାରୀର ମିହିମିହି ବାସ୍ନା ଘ୍ରାଣଆଡ଼େ ଖେଳିଯିବାକୁ ଲାଗିଲା । କେଜାଣି କାହିଁକି, ବୋଉ ଖାଲି ସିଝେଇଦେଲେ

ମଧ୍ୟ ତା' ଭିଅଣ ଉରକାଷ୍ଟର ସ୍ୱାଦ ଗୋଟାଏ ଅଲଗା । ଚୁଲ୍ଲିରେ ଯୋଉ ନିଆଁ ଜଳୁଛି ସେ ନିଆଁ ଆଜିର ନୁହେଁ । କେତେ ପୁରୁଷ ହେଲା ଜଳି ଆସୁଥିବା ନିଆଁ ତାହାର ହିସାବ କେହି ଦେଇପାରିବେ ନାହିଁ । ହୁଏତ ସେ ନିଆଁ ହେଉଛି ଏକାନ୍ତ ଆଦିମ ଯାହାକୁ ଆମ ପୂର୍ବ ପୁରୁଷର କେହି ଜଣେ ଯେତେବେଳେ ଏଠିକୁ ସବା ପ୍ରଥମେ ଏକା ରହିବା ପାଇଁ ଆସିଲାବେଳେ ନିଜ ସାଙ୍ଗରେ ଆଣିଥିଲେ । ପାଉଁଶ ଭିତରେ ଲୁଚି ରହିଥିବା ନିଆଁ ପ୍ରତିଟି ଗ୍ରୀଷ୍ମ ପରେ ମଶାଲ ହୋଇ ମା'ଙ୍କ ସଞ୍ଜୀବ ହୋଇ ବାହାରି ଆସୁଥିଲା । ପ୍ରତି ସନ୍ଧ୍ୟାରେ ଶୋଇବାର ସାରି ବୋଉ ଚୁଲି ଲିପାପୋଛି କରି ପାଉଁଶ ଭିତରେ ନିଆଁକୁ ଯୋଡ଼ିକରି ରଖିଲାବେଳେ କହୁଥିଲା, "ନିଆଁ କାହାକୁ ମଗାଯାଏନାହିଁରେ, ପାଗଳା ! ଇଏ ହେଉଛି ଘରର ମୂଳ ଜିନିଷ । ଏଇ ନିଆଁ ଘରର ସବୁ ଶୁଭ ଅଶୁଭ କାମରେ ବ୍ୟବହାର କରାଯାଏ ।"

ବାପା ପାଖ ବଖରାରେ ବସି ହୁକ୍କା ଟାଣୁଛନ୍ତି । ଆମେ ଭାଇ ଭଉଣୀ ସବୁ କେତେବେଳେ ଭିତରେ କେତେବେଳେ ବାହାରେ ଖେଳକୁଦ, ଡିଆଁଡେଇଁ କରି ଘରଟାକୁ ତୋଳପାଡ଼ କରି ଦେଉଛୁ । ଆମ ପାଟିତୁଣ୍ଡ ବେଶି ହେଲେ ହୁକ୍କା'ଟଣା ବନ୍ଦ କରି ବାପା ଆକଟ କରୁଛନ୍ତି । ଆମେ ସମସ୍ତେ ଚୁପଚାପ ହାଣ୍ଡିଶାଳ ଭିତରେ ଛପିଯାଉଛୁ ।

"ଯାହାର ଘର ନାହିଁ ସିଏ କୋଉଠି ରହନ୍ତି ଭାଇ ?" ସାନଭାଇର ଏହି ଅବୋଧ ପ୍ରଶ୍ନ ମୋର ତନ୍ଦ୍ରା ଭାବକୁ କାଟିଦେଲା । ଗୋଟାଏ ଅଦ୍ଭୁତ ଶୂନ୍ୟତା ମୋତେ ଘେରିଗଲା । ପ୍ରକୃତରେ ଯେଉଁମାନଙ୍କର ଘର ଭାଙ୍ଗିରୁଜି ପଡ଼ି ହୋଇଯାଏ ସେମାନେ କୋଉଠି ରହିବେ ? ଘର ହେଉଛି କବଚ ଯିଏ ମର୍ମସ୍ଥଳକୁ ରକ୍ଷାକରେ । ସତରେ ଘର ହେଉଛି ନିଜ ଦେହପରି । ଅତି ନିଜର ଅତି ଆପଣାର । ଏକାନ୍ତ ଆତ୍ମୀୟ, ଅତୀବ ପ୍ରିୟ । ଅତି ପ୍ରିୟ ପରିଚିତ ସ୍ଥିର ଆଶ୍ରୟ । ଅଗଣା, ବାଡ଼ି, ବଗିଚା, ଏତେ ପରିଚିତ ଯେ ଗାଢ଼ ଅନ୍ଧାର ଭିତରେ ଛୁଞ୍ଚିଟାକୁ ମଧ୍ୟ ଅକ୍ଲେଶରେ ଖୋଜିକରି ପାଇପାରିବ ।

ଦିନେ ଏଇ ଘର ମଧ୍ୟ ଠିକ ସେମିତି ଅତି ପ୍ରିୟ ଥିଲା । ଘରଟା ପ୍ରତି ଆମର ସ୍ନେହମମତା ଏତେ ଥିଲା ଯେ କହିହେବନାହିଁ । ଦାଣ୍ଡଘରେ ବାପା ବସିଲା ଚୌକି, ସେ ବସିଲାଠି ପଛର ଦାଗ ପଡ଼ିଥିବା କାନ୍ଥ, ନିଜନିଜ ଜୀବନର ସମସ୍ତ ସଫଳତା ଓ ବିଫଳତା ପରେ ବାପା ସେଇ କାନ୍ଥକୁ ଆଉଜି ଶୋଇଯାଉଥିଲେ । କୋଉଠି ଝରକା ଦେଇ ବାହାରର କେଜାଣି କେତେ କ'ଣ ଦୃଶ୍ୟ ସବୁ ପଶିଆସନ୍ତି । ବାହାରେ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟି କରୁଥିବା ବର୍ଷା ଯିଏ କୁଣ୍ଡାଝାଡ଼ିଲା ପରି ଅଗଣାରେ

ଝିଣ୍ପଡ଼ୁଥାଏ, ବନ୍ଦଥିବା ପବନରେ ଅମ୍ଳ ବଉଳର ଉପସ୍ଥିତ, ପବନରେ ଭଉଁମୋଡ଼ି ହେଉଥିବା ବାଉଁଶ...ସବୁ ଏକାନ୍ତ ଅପଣାର, ଅତି ପରିଚିତ ।

ଘରଟିଏ ଗଢ଼ାହୁଏ ବହୁ ଆଗ୍ରହରେ, ବହୁ ଆକାଂକ୍ଷାକୁ ନେଇ, ସ୍ୱପ୍ନକୁ ନେଇ । ପୁରୁଣା ଲୋକମାନଙ୍କର ମନର ନକ୍ସା ଘରଟିରେ ହିଁ ସାକାର ହୋଇଥାଏ । ଯେଉଁମାନଙ୍କର ଘର ଭାଙ୍ଗିଯାଏ, ଭୁଷୁଡ଼ି ପଡ଼େ ସେମାନଙ୍କ ପରି ହତଭାଗ୍ୟ ଆଉ ବା କିଏ ଅଛି ?

ସେଦିନର ଏକ ବର୍ଷଣମୁଖର ସନ୍ଧ୍ୟା । ଚଡ଼ଚଡ଼ଆ ଶବ୍ଦକରି ଗୋଟାଏ କାନ୍ଥ ଖସିପଡ଼ିଲା । ବାପା ବସି ହୁକ୍କା ଟାଣୁଥିଲେ । ଶବ୍ଦ ଶୁଣି ହାତରେ ସେଇମିତି ହୁକ୍କାଟା ଧରି ବାହାରକୁ ବାହାରି ଆସିଲେ । ଭଙ୍ଗା ଇଟାର ଧୂଳିରେ ତାଙ୍କ ବଖଧୋଟା ଭରି ହୋଇଗଲା । ଖାଲି ତାଙ୍କ ଘରଟାରେ ଧୂଳି ପଡ଼ିନଥିଲା ବରଂ ପଡ଼ିଗଲା ନାହିଁ ଯେ ତାଙ୍କ ଦେହରେ ଏକ ଅଦ୍ଭୁତ ଅସହାୟତା, ଚିନ୍ତା, ବିବ୍ରତଭାବ ଏବଂ ମଳିନତା ଏକାଠି ହୋଇ ଦେଖାଗଲା । ସେ ବର୍ଷାରେ ଗୋଟାଏ ଘରର କାନ୍ଥ ଖସିପଡ଼ିଲା । ଭାଇ ବାହାରେ ଚାକିରି କରୁଥିଲେ । ମୁଁ ଥିଲି ଏହି ବିପର୍ଯ୍ୟୟର ଏକମାତ୍ର ମୂକସାକ୍ଷୀ । ଏଇ କାନ୍ଥ ପଡ଼ିବା ପରେ ମଧ୍ୟ ଅନେକ ବର୍ଷ ଧରି ଘର ମୁଣ୍ଡଟେକି ପାରିଥିଲା । ମୁରବି ମାନଙ୍କର ଗୋଟାଏ କନ୍ଦ୍ରିତ ଥାଏ । ହୁଏତ ସେଇ ନଶ୍ୱର ଲାଗି ଘରଟା ନଭାଙ୍ଗି ରହିଗଲା । କିନ୍ତୁ ଦିନକୁ ଦିନ ଦୁର୍ବଳ ହୋଇ ଚାଲିଥିଲା । ଭଉଣୀମାନେ ବାହାସାହା ହୋଇ ସେମାନଙ୍କ ଶାଶୁଘରକୁ ଚାଲିଗଲେ । ତା'ପରେ ଭାଇ ତାଙ୍କ ସ୍ତ୍ରୀ ପିଲାଙ୍କୁ ନେଇଗଲେ । ତା'ପରେ ମୋର ଚାକିରି ହୋଇଗଲାରୁ ମୁଁ ମଧ୍ୟ ଘର ଛାଡ଼ିଲି । ବାପା ଚାଲିଗଲେ । ବୋଉ କିଛିଦିନ ଏକୁଟିଆ କଷ୍ଟେମଷ୍ଟେ ଘରଟାକୁ ଦେଖାଚାହାଁକରି ସମ୍ଭାଳି ନେଲା । ହେଲେ କେତେଦିନ ଏମିତି ଚାଲିଥାନ୍ତା ? ନିରନ୍ତର ଘର ଭାଙ୍ଗି ପଡ଼ୁଥିଲା । ଘର ହୁଏ ଘର ଲୋକଙ୍କୁ ନେଇ । କାନ୍ଥ, ଇଟା, ଗାରେଡ଼ିରେ ଘର ଗଢ଼ା ହୁଏନାହିଁ ।

ଶେଷକୁ ଦିନେ ବୋଉ ଚିଠି ଲେଖିଲେ, "ଆରେ ତୁ' ତ ଏବେ ଦିଲ୍ଲୀରେ ଅଛୁ ଅର୍ଥ ସମସ୍ୟାଙ୍କ ଭିତରୁ ପାଖରେ ଅଛୁ । ସେଇଥିପାଇଁ ତୋତେ ଏ ଚିଠି ଲେଖୁଛି । ଘରଟା ପୂରାପୂରି ଭାଙ୍ଗିରୁଜି ମାଟିରେ ମିଶିଗଲାଣି ।" ଚିଠିଟା ପଢ଼ିଲାକ୍ଷଣି ମୋ ଭିତରୁ ଗୋଟାଏ ଆର୍ତ୍ତନାଦ ବାହାରି ଆସିଲା ଓ ଏମିତି ଗୋଟାଏ ଯନ୍ତ୍ରଣା ଭିତ ଭିତରେ ହେଲା ଯେ ମୋ ମନ ଏବଂ ମସ୍ତିଷ୍କକୁ ଭେଦ କରିଗଲା ।

ଘର ଭୁଷୁଡ଼ି ପଡ଼ିବା ଗୋଟାଏ ଭୟଙ୍କର ଏବଂ ହୃଦୟକମ୍ପି ସୃଷ୍ଟି କଲାପରି ଘଟଣା ଅଟେ । ଭୀଷଣ କଳକଳା ରଡ଼ିକରି ଧରେ ଭୁଷୁଡ଼ିଥାଏ । ଠିକ ଭୂମିକମ୍ପ ପରି ଘଟଣା । ବିନା ଭୂକମ୍ପରେ ଘର ଭୁଷୁଡ଼ିପଡ଼ିବା ଅଦ୍ଭୁତ ନିର୍ମମୂଦ । ତାହାର ଶବ୍ଦ ବହୁ ଦୂର ପର୍ଯ୍ୟନ୍ତ ବ୍ୟାପିଯାଏ ।

ରୋଷେଇ ଘର ଯୋଉ କାନ୍ଥଟା ଠିଆ ହୋଇ ରହିଥିଲା, ତା ଦେହରେ ଗୋଟେ ବଡ଼ କଣା ହୋଇଯାଇଥିଲା । ଗୋଟେ ତ ଧୂଆଁ ବାହାରି ଯିବା ପାଇଁ ଆଗରୁ କରାଯାଇଥିଲା । ସେଇ କଣା ଦେଇ ବେଳେବେଳେ ଅଗଣାକୁ କିଏ ଗଲା ଆଇଲା ଦେଖି ହେଉଥିଲା । ଏବେ ଦୁଇଟା କଣା ଦେଖି ମନେହେଉଛି ସତେ ଯେମିତି ଏଇ ଦୁଇଟା ବୋଉର ଆଖି ଏବେ ବି କିଏ ଆସିଲା ଗଲା ଦେଖୁଛି । ଦେଖୁଛି ମୋ ଆସିବା ବାଟକୁ । ଯେତେବେଳେ ଘର ଭୁଷୁଡ଼ିବାକୁ ଲାଗିଥିବ ସେତେବେଳେ ବୋଉ କହୁଥିବ, "ଯାଃ ! ତୁ ଏଇଠୁ ଭୁଷୁଡ଼ିବୁ ନାହିଁ । ଏତକ ସେଇମିତି ଛାଡ଼ିଯିବୁ । ଏତକ ଜାଣ ମୋ ଆଖି ପାଇଁ ରହିଲା । ସାନପୁଅ ମୋର ମୋ ପାଖକୁ ଆସିବ । ମୁଁ ତ ତାକୁ ଟିକେ ବେଶୀ ଦେଖିପାରେ । ରୋଷେଇ କଲାବେଳେ ସଞ୍ଜବେଳେ ଯଦି କେହି ଆସିବାର ଶବ୍ଦ ହେବ ତ ମୁଁ ତାକୁ ଏଇଠୁ ଦେଖିବି । ସାନପୁଅ ଆସିଲାବେଳେ କେବେ ବି ଶବ୍ଦ କରେନାହିଁ । ତଥାପି ମୁଁ ତା' ଆସିବା ଜାଣି ପାରିବି ।"

କକେଇଙ୍କ ଘରେ ରାତିରେ ଶୋଇବାକୁ ପଡ଼ିଲା । କିନ୍ତୁ ନିଦ ହେଲାନାହିଁ । ରାତି ସାରା ଝଡ଼ିରହି ବୁଢ଼ା ଲୋକଙ୍କୁ ସାହାଯ୍ୟ କରିବାକୁ ହାତ ବଢ଼ାଇ ଦେଲାପରି ଦୃଶ୍ୟ ଦେଖି ଚମକିଲି । ସତେ ଯେମିତି ଭୂଇଁ ଫାଟିଯାଉଛି ଓ ସେ ଫାଟ ଭିତରେ କିଏ ଜଣେ ଗଳି ଗଳି ପଡ଼ୁଛି । ବହୁତ ଲୋକମାନେ ଚିତ୍କାର କରୁଛନ୍ତି ସାହାଯ୍ୟ ପାଇଁ, "ମୋତେ ରକ୍ଷାକର । ମୋତେ ରକ୍ଷାକର ।' ମୋ ହାତର ବଳ ସରିସରି ଆସୁଛି । କିଏ ଯେମିତି ବଳତକ ଚପୁଡ଼ି କରି ନେଇଯାଉଛି ।

ମୁହଁ ଅନ୍ଧାରରୁ ମୁଁ ଯେତେବେଳେ ଫେରିବାକୁ ବାହାରିଲି, ସେତେବେଳେ କକେଇ କହିଲେ, "ଆଜି ପରି ରହିଥାନ୍ତୁ, ତୋ ଖୁଡ଼ି କହୁଥିଲା । ତୁ ତ, କାନ୍ଦୁଥିଲୁ । ଯୋଉ ମାଟିରେ ପିଲେ ବଢ଼ିଛନ୍ତି ତାର ଗୋଟାଏ ମୋହ ଅଛି । ଏବେ ଆଉ କ'ଣ କରିବା । ସଂସାର ତ ଏଇଆ ।" ସେ ଦୁଃଖ ପ୍ରକାଶ କଲେ ।

ଯିବା ପୂର୍ବରୁ ଯେତେବେଳେ ମୁଁ ତାଙ୍କର ପାଦ ଛୁଇଁବାକୁ ଗଲି ସେତେବେଳେ ସେ କହିଲେ, 'ହଁ ଯଦି ତୁମର ଏଠି ରହିବାର ଯୋଜନା ନଥାଏ ତେବେ ଜଣେଇବ, ଜାଗାବାଡ଼ି ବିକିବାକୁ ଥିଲେ ଆଗ ଆମକୁ କହିବ ।"

ଯାଉଁ ଯାଉଁ ଦୁଣିଥରେ ଘର ଆଡ଼କୁ ଫେରି ଚାହିଁଲି । ଘରଟା ତେବେ ବି ଅନ୍ଧାରରେ ବୁଡ଼ିରହିଥିଲା ।



# ଗୋଟିଏ ସାର୍ବଜନିକ ବିଳାପ

□ ରମେଶ ଚନ୍ଦ୍ର ଶାହ

ମୁଁ ଏବେ ମୁକ୍ତ । ଜଣେ ସ୍ୱାଧୀନ ପରିବ୍ରାଜକ । ଜୀବନର ସୀମାନ୍ତରେ ହଲଚହଲ ହେଉଥିବା ଗୋଟାଏ ଗ୍ରହ, ଯାହାର ନିଜର ବୋଲି କୌଣସି ସ୍ୱାର୍ଥ ନାହିଁ, ନିଜର ବ୍ୟକ୍ତିତ୍ୱ ବୋଲି କିଛି ନାହିଁ । ପ୍ରତ୍ୟେକ ଘର ମୋର ଘର, ଅଥଚ ମୋର ନିଜର ବୋଲି ଘର ନାହିଁ । ମା' ବାପା, ଭାଇ ଭଉଣୀ, ପୁତ୍ରକଳତ୍ର, ନାହାନ୍ତି । ମୋର କିଛି ହେବାର ଅଭୀପ୍ସା ନାହିଁ । ସବୁ ହୋଇ ସବୁକୁ ଦେଖିଶୁଣି, ଭୋଗି ମୁଁ ମୋର ନିଜ ଅତୀତ ନିଜ ଭବିଷ୍ୟତ, ନିଜର ମୋହମାୟା ସବୁକିଛିକୁ ପାଶୋରି ଯିବାକୁ ଚାହେଁ ।

ନାଁ, ଏହା ସତ୍ୟ ନୁହେଁ । ଏବେ ମଧ୍ୟ ମୋର ଜୀବନ ପ୍ରତି ଆସକ୍ତି ଅଛି, ବଞ୍ଚି ରହିବା ପାଇଁ ପ୍ରବଳ ମମତା ଅଛି, ହେଉ ପଛକେ ଉଦ୍ଦେଶ୍ୟବିହୀନ କ୍ଲାନ୍ତିକର ଜୀବନ, ତଥାପି ସେପରି ଜୀବନ ଜୀଇଁବାର ଦୁରପନେୟ ଇଚ୍ଛା ଅଛି । ତେବେ କେଉଁଥି ପାଇଁ ମୁଁ ମୋର ସମସ୍ତ ଅନିଚ୍ଛାସତ୍ତ୍ୱେ ଏହି ସବୁ ବସ୍ତୁକୁ ଟାଣିହୋଇ ଆସୁଛି ? ମୁଁ ଆଦୌ ଚାହୁଁ ନାହିଁ, ତଥାପି ପଘାଛିଣ୍ଡାଇ ଗାଈ ବଳଦ ଧାଇଁଲା ପରି, ଜେଲର ପାଚେରୀ ଡେଇଁ ଦଉଡ଼ି ପଳାଉଥିବା ଅପରାଧୀପରି, ବାରମ୍ବାର ମୁଁ ଧାଇଁ ପଳାଉଛି ମୋ ଗୁହା ଭିତରକୁ । ଭୟକୁ ମୁଁ ବର୍ତ୍ତମାନ ବଶୀଭୂତ କରିସାରିଛି । ଘନଘୋର ଏକାନ୍ତ ଏବେ ମୋର ସବୁଠାରୁ ବଡ଼ ସୁଖ, ସବୁଠାରୁ ବଳି ନିଶା ଯିଏ ମୋର ସକଳ ସଂଶୟ ଦୂର କରେ, ସମସ୍ତ ଦ୍ୱନ୍ଦ୍ୱର ପରିସମାପ୍ତି ଘଟାଏ । ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଯଦି ବି ଭାଙ୍ଗି ପଡ଼େ ତେବେ ମଧ୍ୟ ମୋର ସାମାନ୍ୟତମ କ୍ଷତି ହେବନାହିଁ, ଏପରି ଅନୁଭୂତି ମୋର ସିଦ୍ଧ ହୋଇଛି, ଏବଂ ଏଇ ଦେହରେ ଏଇ ମନରେ ହେଉଛି, ଅନୁଭବର ସେହି ଅନୁପମ ମୁହୂର୍ତ୍ତରେ ଏଇ ଦେହ ଆଉ ମନର କିଛି ଯଦି ଅର୍ଥ ବା ସଂଜ୍ଞା ବାକି ରହିଯାଉଥିବ, ରହିଯାଉଥିବ । ନହେଲେ କିଏ ଏସବୁ ଅନୁଭବ କରିବ ? କିଏ ମୋର ସହସ୍ର ବାହୁ ଦ୍ୱାରା ଏଇ ସମସ୍ତଙ୍କୁ ଆଶୀର୍ବାଦ କରିବା ପାଇଁ ମୋ ଭିତରେ ସାମର୍ଥ୍ୟ ଭରିଦେଉଛି— ଯାହାକୁ ମୁଁ ଯଦି ଛୁଇଁ ଦେଉଛି ତେବେ ସେ ମଧ୍ୟ ମୋ ଭଳିଆ ମୁକ୍ତ ହୋଇଯାଉଛି । ମୋର ଯାହାସବୁ ହେଉଛି ସେମାନଙ୍କର ମଧ୍ୟ ତାହାହିଁ ହୁଅନ୍ତା । ପ୍ରତ୍ୟେକ ମୋ ସ୍ଥାନକୁ ଆସିପାରିବେ, ମୁଁ ମଧ୍ୟ ସମସ୍ତଙ୍କ ସାଙ୍ଗରେ ସମାନ ହୋଇପାରିବ । ସେମାନେ

ସବୁ ଅଯଥାରେ ଧନ୍ଦ ହେଉଛନ୍ତି, ଅକାରଣରେ କଷ୍ଟ ଭୋଗୁଛନ୍ତି ସେଠି । ସେମାନେ କ'ଣ ଦେଖିପାରୁନାହାନ୍ତି, ବୁଝିପାରୁନାହାନ୍ତି ଯେ ସେମାନଙ୍କ ଭଳିଆ ମୁଁ ହେଇ ମଧ ସେମାନଙ୍କ ଭିତରୁ ଜଣେ ହୋଇ ଯେତେବେଳେ ମୁଁ ଏ ଫାଶରୁ, ବନ୍ଧନରୁ ମୁକୁଳି ଯାଇପାରୁଛି ସେମାନେ କ'ଣ ମୋପରି ମୁକ୍ତି ପାଇପାରିବେ ନାହିଁ ? ବନ୍ଧନରୁ ମୁକୁଳି ଯାଇପାରିବେ ନାହିଁ ?

"ଆସ..." ମୁଁ କହୁଛି । ମୋ ପାଖକୁ ଆସ । ମୋ'ର ଲୋକମାନେ ! ମୁଁ ଏଇ ମୁହୂର୍ତ୍ତରେ ତୁମମାନଙ୍କୁ ସ୍ୱାଧୀନ କରାଇ ଦେଇପାରିବି । ଏଇକ୍ଷଣି ଚାହିଁଲେ ତୁମର ସମସ୍ତ ଦୁଃଖ କଷ୍ଟ, ଯନ୍ତ୍ରଣା ଦୂରକରି ଦେଇପାରିବି । ଖାଲି ତୁମକୁ ଛୁଇଁବାକୁ ଯେତିକି ସମୟ ଲାଗିବ । ତୁମମାନଙ୍କର ସମସ୍ତ ଶିକୁଳି ଆପଣା ଛାଏଁ ଭାଙ୍ଗିଭୁଙ୍ଗି ତଳେ ଗଳିପଡ଼ିବ । ଆଉ ଏଥିରେ ମୋର କିଛି ଅବଦାନ ନାହିଁ, କେବଳ ଏହା ଗୋଟାଏ ବାକତାଳୀୟ ଅନଧିକୃତ ସଂଯୋଗ ଯେ ମୁଁ ଏଇଠି ସମାଧିସ୍ଥ ହୋଇଅଛି ଓ ତୁମେମାନେ ସେଠି ସଂସାର ଭିତରେ । ତୁମମାନଙ୍କ ଭିତରୁ ଯିଏ କେହି ମଧ ମୋ ଜାଗାରେ ହୋଇପାରି ଥାଆନ୍ତା । ଏହାହିଁ ସତ୍ୟ ତଥା ଏହାଠାରୁ ଅଧିକ ସତ୍ୟ ଆଉ କିଛି ନାହିଁ । ବାକି ସବୁ ମିଥ୍ୟା, ପ୍ରପଞ୍ଚ । ବାକି ସବୁ ଅଧା ଅପନ୍ତରିଆ, ଖଣ୍ଡବିଖଣ୍ଡିତ, ମିଶାଗୋଳିଆ, ଭେଜାଲ । ଏହାହିଁ ହେଉଛି ଏକମାତ୍ର ଅସନ୍ଦିଗ୍ଧ ସତ୍ୟ ଯେ ତୁମେ, ମୁଁ ଏବଂ ଆଉ ଅନ୍ୟମାନେ ସମସ୍ତେ ସ୍ଫୁଲିଙ୍ଗ । ଏହି ଅନ୍ତର୍ଜ୍ୟୋତି ଦ୍ୱାରା, ଏହି ନୀଳବର୍ଣ୍ଣର ଅଗ୍ନିଶିଖା ଯାହା ଆମ ସମସ୍ତଙ୍କ ଭିତରେ କୋଉ କାଳରୁ ଜଳୁଛି କିଏ ଜାଣେ, ଏକ ଅନାଦି ଅନନ୍ତ ଅକ୍ଷୟ ଅଗ୍ନିଶିଖା । ମୁଁ ନିଜେ ଏଇ ଅଗ୍ନିଶିଖା ତୁମେମାନେ ସମସ୍ତେ ଜଣେ ଜଣେ ଏଇ ଅଗ୍ନିଶିଖା । ତା'ଛଡ଼ା ଅନ୍ୟ କିଛି ନୁହଁ । ତାକୁ ଛାଡ଼ି ଆଉ ବାକି ଯାହା ସବୁ ଅଛି ସେସବୁ ଅର୍ଥହୀନ, ମିଥ୍ୟା ।

କେଜାଣି କେତେ ଥର, କେତେ ଲୋକଙ୍କୁ, କେତେ ପ୍ରକାରରେ ମୁଁ ଏଇ କଥା ବୁଝେଇବାକୁ ଚେଷ୍ଟା କଲିଣି । ହେଲେ ଜଣେ ଭଲି ମୋ କଥା ଶୁଣିନ୍ତି । କେହି ଶୁଣୁନାହାନ୍ତି । ବରଂ ଓଲଟି ମୁଁ ଯାହା ମୂକ ପାଲଟି ଯାଉଛି ଏଇ ପ୍ରଚେଷ୍ଟା ଫଳରେ । ମୋର ଏଇ ଟିକିକ କଥା କିଏ କାହିଁକି ବୁଝୁନାହାନ୍ତି ? ଏମାନେ ସବୁ କ'ଣ ତାହାହେଲେ ମୂର୍ଖ ? ଜିଦ୍‌ଖୋର ଏବଂ ଅହଙ୍କାରୀ ? ଏକଥା ଭଲି କେମିତି କହିବି ? ତାହାହେଲେ ଏହି ନିରବଚ୍ଛିନ୍ନ ବିଫଳତା ମୋ ଭିତରେ ଭୀଷଣ ଗ୍ଲାନି ସୃଷ୍ଟି କରୁଛି । ମୁଁ କାହିଁକି ମିଛଟାରେ ଏଇ କାନ୍ଥ ଗୁଡ଼ାକରେ ମୋ ମୁଣ୍ଡ ପିଟୁଛି ? ମୋ କଥା ଯଦି ସମସ୍ତଙ୍କ ପାଖରେ ପହଞ୍ଚୁ ନାହିଁ ତେବେ କାହିଁକି ପହଞ୍ଚୁ ନାହିଁ ? ମୋର କ'ଣ ଅଭାବ ଅଛି ? ପାଠଶାଠ ପଢ଼ିଥିବା, ଭଲମନ୍ଦ, ନିର୍ବେଦ ଓ ସମ୍ବେଦନଶୀଳ, ସମସ୍ତଙ୍କୁ ତ ମୁଁ ଆପଣେଇ ନେଇଛି । ସମସ୍ତେ ଏକାଭଳିଆ ବନ୍ଦୀ ଏବଂ ଏକାଭଳିଆ କାଳି କାହିଁକି

ହୋଇଯାଉଛନ୍ତି ମୋ ପାଇଁ ? ଅଜ୍ଞା ! ମୋ ପାଇଁ ତାହାନେଲେ ଅସ୍ପୃଶ୍ୟ ନାହିଁ ? ମୁଁ କାହିଁକି ସେମାନଙ୍କ ପାଖକୁ ଯାଉଛି ? ଇଏ କି ପ୍ରକାରର ଅସାମର୍ଥ୍ୟ ? ମୋର ବରଂ ଏବେ ମନେ ହେଉଛି ଯେ ସତେ ଯେମିତି ମୁଁ ଗୋଟାଏ ବଡ଼ ଅପରାଧ କରି ପକାଇଛି, ବ୍ଯଷ୍ଟ ଅପରାଧ, ନିଜର ସବୁଠାରୁ ମୂଲ୍ୟବାନ ଅଭିଜ୍ଞତା ଓ ଅନୁଭୂତି ପ୍ରତି, ଯାହା ଭାଷାରେ କହି ହେଉନାହିଁ । କହିବାକୁ ଚାହିଁଲେ ମଧ୍ୟ, ଚେଷ୍ଟା କଲେ ମଧ୍ୟ, କିନ୍ତୁ କାହିଁକି ? କାହିଁକି ? କାହିଁକି ? କାହିଁକି ଏ ଅଭିଜ୍ଞତା ଲୋକଙ୍କ ପାଖରେ ପହଞ୍ଚାଇ ହେଉନାହିଁ, କାହିଁକି କୁହାଯାଇ ପାରୁନାହିଁ ? ମୋର ସମଗ୍ର ଅସ୍ତିତ୍ୱ ଚିତ୍କାର କରିଉଠୁଛି । ମୁଁ ନିଜେ କ'ଣ ପାଇଁ ଏହି ଉଦ୍ୟମ ଲାଗି ମୂକ ହୋଇଯାଉଛି ? ଖାଲି ସେତିକି ନୁହେଁ, ମୁଁ ନିଜେ ମଧ୍ୟ ସେହି ରୋମାଞ୍ଚକର ଅନୁଭବ, ଏକାବେଳେକେ ମୁଣ୍ଡ ବିଗାଡ଼ି ଦେଲାପରି ଅଭିନ୍ନତାକୁ ନେଇ ଦୁର୍ବଳ ଓ ଶିଥିଳ ହୋଇପଡ଼ୁଛି । ସନ୍ଧାନ୍ଦ ଗଡ଼ିଯାଉଛି । ସମାଧି ଦେଉନାହିଁ । ମୋର କ'ଣ ହେଇଛି ? ଅନୁଭବକୁ ଅନ୍ୟମାନଙ୍କ ଆଗରେ ଉପସ୍ଥାପିତ କରିବା ବା ପହଞ୍ଚେଇବାରେ ଚେଷ୍ଟାକଲି ବରଂ ମୁଁ ମୋ ଅନୁଭୂତିକୁ ହରେଇ ବସୁଛି । ମୋର ନିଜର ଏହି ବହୁମୂଲ୍ୟ ଅନୁଭୂତି ଉପରେ ବରଂ ମୋର ନିଜର ସନ୍ଦେହ ହେବାକୁ ଆରମ୍ଭ କରୁଛି ।

ଏସବୁ ଚେଷ୍ଟାର କୌଣସି ମୂଲ୍ୟ ନାହିଁ । କୌଣସି ଲାଭ ନାହିଁ । ବରଂ ଓଲଟା କ୍ଷତି ହିଁ କ୍ଷତି । ତୁମେ ଅଯଥାରେ ନିଜକୁ ଏସବୁ ମୂର୍ଖ, ଅନ୍ଧ କାଳଗୁଡ଼ାକ ମେଳରେ ନିଜକୁ ଘେରେଇ ରଖିଛ । ସେମାନଙ୍କର ନିର୍ଲଜ୍ଜ ତୃଷ୍ଣାକାତର ଅଖାଖା ଦୁନିଆଁରେ ନିଜକୁ ବୁଡ଼େଇ ରଖୁଛ । ହତଭାଗା ! ତୁମେ ଇଏ କ'ଣ କଲ ? ଯୋଉ ଅମୂଲ୍ୟ ନିଧି ତୁମକୁ ଯାଚିକରି ଦିଆଯାଇଥିଲା, ତୁମ ଯୋଗ୍ୟତା ପ୍ରତି ଦୃଷ୍ଟି ନଦେଇ, ତାହା କ'ଣ ତୁମକୁ ଏଇଥିପାଇଁ ଦିଆଯାଇଥିଲା ଯେ ତୁମେ ତାକୁ ହେଲା କରି ଫିଙ୍ଗିଫୋପାଡ଼ି ଦେବ ବୋଲି । କିଏ ତୁମକୁ କହିଥିଲା ତୁମ ଧନକୁ ଯଦୃଚ୍ଛା ବାଣ୍ଟି ଦେବ, ଫୋପାଡ଼ି ଦେବ ବୋଲି ? ଏବେ ଠିକ୍ ହେଇଛି, ଭୋଗ ବସିକରି ନିଜ କର୍ମଫଳକୁ ।

ଭୋଗୁ ନାହିଁ ତ ଆଉ କ'ଣ ତେବେ କରୁଛି ମୁଁ ଏଠି ? ଏତେ ପ୍ରେମ, ଏତେ ଘୃଣା, ଏତେ ରାଗ ମୁଁ କେବେ ବି କରିନାହିଁ । ମୁଁ ମଧ୍ୟ ଏମିତି ମନଖୋଲା ହସ କେବେ ବି ହସି ନାହିଁ କି ଏମିତି ଛାତି ଫଟେଇ କେବେ ବି କାନ୍ଦିନାହିଁ । କେବେ ମଧ୍ୟ ମୁଁ ନିଜକୁ ଏତେ ସ୍ୱାଧୀନ ବା ଉଚ୍ଛୃଙ୍ଖଳ କରିନାହିଁ ବା କେବେହେଲେ ନିଜକୁ ଏମିତି ବାନ୍ଧିକରି ରଖିନାହିଁ । ଧୈର୍ଯ୍ୟ ଏବଂ ଅଧୈର୍ଯ୍ୟର ଅକୁରନ୍ତ ଓ ନିରନ୍ତର ଯନ୍ତ୍ରଣା ଯୁଗପତ୍ ଭୋଗୁଛି । ଏବେ, ଏଇ ଦେହରେ, ଏଇ ମନରେ ।

ଆଜିଯାଏଁ ମୁଁ ଯୋଉ ବଞ୍ଚିଛି ବା ଯୋଉତିକି ବଞ୍ଚିନାହିଁ ସେସବୁକୁ ମୋଠାରୁ ଏବକୁ ଏବେ କ'ଣ ସୁଧମୂଳ ସହିତ ଅସୁଲ କରାଯାଉଛି, ସେଇସବୁ ଯାହା ମୋର

କରିବାର ଥିଲା ବା ନକରିବାର ଥିଲା, ମେ ସମସ୍ତ ଯାହାସବୁ ମୋର ଚିନ୍ତା କରିବାର ଥିଲା ବା ଚିନ୍ତା ନକରିବାର ଥିଲା, ଯାହା ମୋର ଭୋଗିବାର ଥିଲା ବା ଭୋଗିବାର ନଥିଲା ସେସବୁ ?

ଏ ସମସ୍ତ କିଛୁ ମୋ କର୍ତ୍ତୃତ୍ୱ ଭିତରେ ନାହିଁ କି ନଥିଲା । ମୁଁ ଏବେ ମୋତେ ସଂପୂର୍ଣ୍ଣ ରୂପରେ ଅନ୍ୟମାନଙ୍କ ଦୟାରେ ଛାଡ଼ିଦେଇଛି । ସେମାନେ ଯାହା ଇଚ୍ଛା ତାହା କରିପାରନ୍ତି ସେଥିକୁ ମୋର କିଛି କରିବାର ନାହିଁ ।

ଇଏ ମୋର ବାପା—ନାଁ, ମୋ ବାପାଠାରୁ ମଧ୍ୟ ବୟସ୍କ ବୁଢା । ମୋ ଗୋଡ଼ତଳେ ବସି ମୁଣ୍ଡ ପିଟୁଛନ୍ତି । ଭୂଇଁ ଦୁ'ଫାଳ ହୋଇ ଫାଟି ଯାଉନାହିଁ ଓ ମୁଁ ତା' ଭିତରେ ପଶିଯାଇ ନିଶ୍ଚିହ୍ନ ହୋଇଯାଉନାହିଁ । ମୁଁ କ୍ଳାନ୍ତ, ପରାଜିତ । ମୁଁ ଯେତେ ବୁଝେଇ ଶୁଝେଇଲେ ମଧ୍ୟ, ଗାଳିମନ୍ଦ କଲେ ମଧ୍ୟ, ଏପରିକି ଗାଳି ସାଙ୍ଗରେ ହାତ ଉଠେଇଲେ ମଧ୍ୟ କିଛି ଲାଭନାହିଁ । ଯାହାକୁ ସେଇଆ । କୌଣସି ପ୍ରଭାବ ନାହିଁ । ମୁଁ ହେଉଛି ଗୁଡ଼ ଆଉ ଏମାନେ ସବୁ ମାଛି ।

ନାଁ, ଇଏ ମୋର ପାଦ ନୁହେଁ, ମୋର ଶରୀର ନୁହେଁ, ନାଁ ଇଏ ଦେହଟା ମଧ୍ୟ ମୋର ନୁହେଁ । ଇଏ ମନ ମଧ୍ୟ ମୋର ନୁହେଁ । ମୁଁ ବିକାହୋଇ ଯାଇଛି, ବିନା ମୂଲ୍ୟରେ ବିନା ଦରରେ । ମୁଁ ଗୋଲାମ ହୋଇଯାଇଛି । ଖାଲି ସେତିକି ନୁହେଁ, ମୋର ଏବେ ଯୋଉ ଅବସ୍ଥା ସେ ଅବସ୍ଥା କୌଣସି ଗୋଲାମଙ୍କର ମଧ୍ୟ ନାହିଁ । ମୋ'ଠୁ ବଳି ଆଉ କେହି ଏମିତି ଅଭାଗା ଅଛନ୍ତି, ମୋଠୁ ବେଶୀ ଦୟନୀୟ, ମୋଠୁ ବେଶୀ ହାସ୍ୟାସ୍ପଦ ଏ ଦୁନିଆରେ ଅଛନ୍ତି ?

ମହାରାଜ । ଏ ପିଲା ଜନ୍ମରୁ ଅନ୍ଧ, ଏହାକୁ ଭଲ କରି ଦିଅନ୍ତୁ ମହାରାଜ ! ମହାରାଜ ! ମୋର ସବୁ କିଛି ଏଇ । ଏହାର ଜିଭ ଫିଟେଇ ଦିଅନ୍ତୁ, ମହାରାଜ ! ତିନି ବର୍ଷର ହେଲାଣି, ଗୋଟାଏ ହେଲେ ଶବ୍ଦ ମଧ୍ୟ କହୁନାହିଁ ।

ମୋ ପେଟରେ କ'ଣ ହେଇଛି କେଜାଣି ବାବା ! ବହୁତ ଡାକ୍ତରଙ୍କ ପାଖକୁ ଯାଇଲିଣି, ହେଲେ କିଛି ଲାଭ ହେଲାନାହିଁ । ଭୋକ ତ ମୋଟେ ହେଉନାହିଁ । ଠିଆ ହେଲାକ୍ଷଣି ମୁଣ୍ଡ ବୁଲାଉଛି । ନିଦ ତ ଜମାରୁ ହେଉନାହିଁ ।

ମହାରାଜ ! ତାଙ୍କ ଜାଲାରେ ମୋ ପିଲା ଗୁଡ଼ାକ ବଡ଼ ଦହଗଞ୍ଜ ହେଉଛନ୍ତି । ସହ ବୋଇଲେ କେତେ ସହିବେ ଯେ । ଖାସ୍ ଦିନରାତି ବାଉଆ ପିଟା କରୁଛନ୍ତି । ତାଙ୍କୁ ଟିକେ ବୁଝେଇ ଦିଅନ୍ତୁ ମହାରାଜ, ତାଙ୍କ ମୁଣ୍ଡ ଭଲ କରିଦିଅନ୍ତୁ ।

ମୁଁ ଘର ଦୁଆର ସବୁ ଛାଡ଼ି ଆପଣଙ୍କ ଶରଣକୁ ଆସିଛି । ମୋର ଆଉ କିଛି ଦରକାର ନାହିଁ । ମୋ ସ୍ୱଜନ ମୋତେ ଯା ଇଚ୍ଛା ତା କହି ବକୁଛି । ମୋ ପୁଅ ସମସ୍ତଙ୍କ ଆଗରେ ମୋତେ ମାଟିରେ ମିଶେଇ ଦେଉଛି ।

ପାଠ ପଢ଼ିବା ପାଇଁ ମନ ଜମାରୁ ତାକୁ ନାହିଁ ବାବା ! ପାଠ ନାଁ ଚଳିଲକ୍ଷଣି ତ ମୋ ଭିତରଟା କ'ଣ ବୋଇଲେ କ'ଣ ହେଇଯାଉଛି, ପାଠ ପ୍ରତି କେମିତି ଗୋଟାଏ ଘୃଣା ଆସିଯାଇଛି, ପଇସା ନେଇ ପାସ୍ କରେଇ ଦେଉଥିବା, କପି କରଉଥିବା ମାଷ୍ଟ୍ରମାନଙ୍କ ପ୍ରତି ମଧ୍ୟ ମୋର ଭୟଙ୍କର ଘୃଣା । ସେମାନେ ଗୁଣ୍ଡାଙ୍କୁ ଡରୁଛନ୍ତି ଓ ଗୁଣ୍ଡାଙ୍କ ଦ୍ୱାରା କଲେଜ (କଲେଜ) ଚଳାଉଛନ୍ତି । ମୋର ଏମିତି ପାଠ ପଢ଼ା ଦରକାର ନାହିଁ । ମୁଁ ହଷ୍ଟେଲରୁ ପଳେଇ ଆସିଛି, ମହାରାଜ ! ମୋ ବାପା-ମା ମୋତେ ଜୋରଜବରଦସ୍ତ ସେଇ ନର୍କ ଭିତରକୁ ଠେଲି ଦେଉଛନ୍ତି । ତାଙ୍କୁ ବୁଝେଇ ଦିଅନ୍ତୁ, ବାବା । ସେମାନେ ଆପଣଙ୍କ କଥା ମାନନ୍ତି ।

ସେମାନେ ମୋ କଥା ମାନନ୍ତୁ ନମାନନ୍ତୁ, ମୋତେ କିନ୍ତୁ ସମସ୍ତଙ୍କ କଥା ମାନିନେବାକୁ ହେବ । ମୁଁ କାହାରିକୁ ହେଲା କରିପାରିବି ନାହିଁ । କାହାର ମନରେ ଆଘାତ ଦେଇପାରିବିନାହିଁ । ମୁଁ ଏବେ ଆଉ ମୋ ମନର ମାଲିକ ନୁହେଁ ।

ମୋର ଏଇ ଦିଇଟା ହାତ ପଙ୍ଗୁ ହେଇଯାଇଛି । ଇଏ କାହାପାଇଁ କିଛି କରିପାରିବେନାହିଁ । ତଥାପି ମଧ୍ୟ ଏ ଦୁନିଆ ମୋତେ ସହସ୍ର ବାହୁରେ ପରିଣତ କରିଦେଲାଣି । ମୁଁ ଏଇ ଅଖି ଦୁଇଟାରେ ଯେତକ କଥା ଦେଖିଲିଣି ସେତକ କ'ଣ ମୋତେ ଅନ୍ଧକରି ଦେବାପାଇଁ ଯଥେଷ୍ଟ ନୁହେଁ ? ହେଲେ ମୋର ମନେହେଉଛି ସତେ ଯେମିତି କିଏ ନୂଆ ନୂଆ ଆଖି ଖୋଲୁଛି । ହଁ, ମୁଁ ଏଇ ଲୋକମାନଙ୍କ ପାଇଁ ହଜାରେ ଆଖିରେ ଦେଖୁଥିବା, ହଜାର କାନରେ ଶୁଣୁଥିବା, ହଜାରେ ଗୋଡ଼ରେ ଚାଲୁଥିବା ଜଣେ ବିଲକ୍ଷଣ ମହାତ୍ମା । ଏମିତିଆ ଆଉ ଗୋଟାଏ ମଣିଷ ମିଳିବନି । ତେବେ ତାହାହିଁ ହେଉ, ତାହାହିଁ ହେଉ ।

ମୁଁ ମୋର ଚେରମୂଳ ଅଣ୍ଡାଳୁଛି, ଅତି ଯତ୍ନରେ ଗୋଟିକର ଚାହିଁ ପରଖି ଏଇ ଜଙ୍ଗଲରେ ସମାଧି ଅଛି । ଋଷିକେଶ ପ୍ରବାହ ସମୟରେ ମୋତେ ଏସବୁ ଶିଖେଇଥିବା ସେଇ ଗୁରୁଭାଇଙ୍କୁ ବହୁତ ମନେ ପକାଉଛି । ଏଇ ଚେମ୍ବୁଲ ଉପରେ ମୋର ଯେତିକି ବିଶ୍ୱାସ, ତାହାଠାରୁ ବେଶୀ ବିଶ୍ୱାସ ମୋର ଏଇ ଅନ୍ଧ ଏବଂ ଶୁଣିପାରୁନଥିବା ପ୍ରାର୍ଥନା ଉପରେ । ମୁଁ ପ୍ରାର୍ଥନା କରୁଛି, ମୁଁ ଯାହା ଜାଣେନାହିଁ । ଇଏ ପ୍ରାର୍ଥନାର ପୋଲ, ଗୋଟାଏ ନିତାନ୍ତ ଭଙ୍ଗା ଦଦରା ପୋଲ, ଯାହା ଉପରେ ମୋର ଟଳମଳ ହେଉଥିବା ଗୋଡ଼ ଦୁଇଟା ଚାଲୁଛନ୍ତି । ଇଏ ହେଉଛି ସେଇ ପୋଲ ଯାହାକୁ ମୋ ବାପା

ପିଲାଦିନେ ଗୋଟାଏ ଡେଙ୍ଗିଆ ଦର ମୋ ହାତରେ ବାନ୍ଧି ଦେଇଥିଲେ । ଇଏଥି ସେଇ ପୋଲ ଯାହା ଉପରେ ଯାଇ ମୁଁ ସ୍ୱୟଂ ସେଇ ବାପାଙ୍କ ଜର ଭଲ କରିବା ଲାଗି, ସେଇ ମହାବୈଦ୍ୟଙ୍କୁ ହନୁମାନ ଭଳିଆ ମୋ ନିଜ କାନ୍ଧରେ ବସେଇ ନେଇ ଆସିଥିଲି । ସେତେବେଳେ କ'ଣ ବିଚିତ୍ର ଘଟଣା ଘଟିନଥିଲା ? ଅଦ୍ଭୁତ ଲୀଳାଖେଳାର ସମସ୍ତ କ'ଣ ବୃଥାଗଲା ? ସେ ପୋଲଟାତ କେବେଠାରୁ ଯୌବନର ପ୍ରଥମ ବନ୍ୟାରେ ଭାସିଯାଇଥିଲା । ଏବେ ମୋର ଆର୍ତ୍ତନାଦ କେମିତି ଆରପାରିରେ ପହଞ୍ଚିବ ?

ମୁଁ କ'ଣ ଏହି ନାରୀକୁ ତାହାର ସ୍ୱାମୀ ଫେରାଇପାରିବ ?

ମୁଁ କ'ଣ ଏହି ବାଳକକୁ ଚାଲବୁଲ କରିବାକୁ ସମର୍ଥ କରିପାରିବ ?

ମୁଁ କ'ଣ ମୋର ବାକ୍‌ଶକ୍ତି ଏଇ ପିଲାକୁ ଦେଇପାରିବ ?

କବାଟ ଖୋଲିଲାବେଳକୁ ଗୋଟିଏ ଶ୍ୟାମଳ ରଙ୍ଗର ଝିଅ ଠିଆ ହୋଇଥିବାର ଦେଖିବାକୁ ପାଇଲି । ହେଲେ ଚେହେରାରେ ଯେଉଁ ଭାବପ୍ରକାଶ ପାଉଥିଲା ତାହା କେମିତିକା ଏକ ବିଚିତ୍ର ପ୍ରଶାନ୍ତ ଭ୍ରୁକୁଟି ଜଣାଉଥିଲା ।

କ'ଣ ହେଲା ? ସେ ପଚାରିଲା ।

ରାଜ ଆପଣଙ୍କର ନାଁ ତ ? ମୁଁ ପଚାରିଲି ।

ହଁ, କାହିଁକି, କ'ଣ ହେଲା ? ସ୍ୱରରେ ମଧ୍ୟ ଅପୂର୍ବ ପ୍ରଶାନ୍ତ । ବିବ୍ରତ କ୍ରୋଧର ସାମାନ୍ୟତମ ଚିହ୍ନବର୍ଣ୍ଣ ନଥିଲା ସେ ସ୍ୱରରେ ।

ଆଜ୍ଞା, ମୋ ନାଁ ବିଜୟ । ବମ୍ବେରୁ ଆସିଛି । ଅତ୍ୟନ୍ତ ଭାଗ୍ୟହୀନ । ସେଇଥି-ପାଇଁ ବାବା ବଞ୍ଚିଥିଲାବେଳେ ଅସିପାରିଲି ନାହିଁ । ପାଞ୍ଚ ଛଅବର୍ଷ ଯୋଉ ଅସ୍ଥାନ ଆଚ୍ଛନ୍ନରେ କଟେଇଥିଲି ସେଠିକି ଟିକେ ମୁହଁ ନମାରି ଯାଇପାରିଲିନାହିଁ । ଖାଲି ଟିକିଏ ଦେଖିବାକୁ ଚାଲିଆସିଲି । ତାଙ୍କ ଚେହେରାରେ ଗୋଟାଏ ଦିବ୍ୟଜ୍ୟୋତି, ଗୋଟାଏ ଅପୂର୍ବ ଶାନ୍ତି ଝଲସି ଉଠିଲା ।

ବାହାରେ କାହିଁକି ଠିଆ ହେଇଛନ୍ତି ? ଭିତରକୁ ଆସନ୍ତୁ । ବାବା ତ ଆପଣଙ୍କୁ ଆସିବା ବାଟକୁ ଚାହିଁ ଚାହିଁ ଶେଷକୁ ଆଖି ବୁଜିଲେ । ଆମେ ସବୁ ଦରକାର । ହେଲେ ଏଠି ଯେତେ ସବୁ ଦରଦ୍ୱାର କାଳୁଛୁଡ ଦେଇଛନ୍ତି ସେସବୁ ଦରକାରୀ । କିଛି ଦିନ ପରେ ଛାଡ଼ିବାକୁ ହେବ । ଭଲ ହେଲା ଆପଣ ଆଗରୁ ଆସିଗଲେ । ନହେଲେ ଅନ୍ୟ କୋଉ ନୂଆ ଭଡ଼ାଟିଆ ଆପଣଙ୍କୁ ଭିତରେ ପଶି ଦେଖିବାକୁ ଦେଇ-ଥାଆନ୍ତା କି ନାହିଁ କିଏ ଜାଣେ ।

ଭିତରକୁ ଆସି ସେ ଗୋଟାଏ ପୁରୁଣା ଚୌକିକୁ ଦେଖେଇ କହିଲା, "ବସନ୍ତୁ, ମୁଁ ଆପଣଙ୍କ ପାଇଁ ପାଣି ଆଣୁଛି ।" କଥାଟିକ କହୁ କହୁ ସେ ମୋ ଆଡ଼କୁ ମୁହଁ

ଚାଲିଗଲେ, ଓ ଗୋଟାଏ ବଡ଼ ଭଙ୍ଗୀରେ ଦେଖିବା ସଙ୍ଗେ ସଙ୍ଗେ କହିଲି, "ଆପଣ ତ ଅଣିଛନ୍ତି ପାଣି ନେଇ ଆସିଲେଣି। ଏଇ ସନ୍ଧ୍ୟାର ଦିନ ଭିତରେ ମୋର ଜିହ୍ୱ ଶୁଖିଗଲାଣି, ମୁଁ ପିଇବାକୁ ପାଣି ଆଣିବାକୁ ଯାଉଥିଲି।"

ହାସ୍ୟ, ବ୍ୟଙ୍ଗ, ମୋହ ମମତା, ଉପାଳମ୍ଭ ଉପମା, ଅଳଙ୍କାର-ସବୁ ଥିଲା ତାହାର ଏଇ କେତୋଟି ଶବ୍ଦରେ। ପାପୁଲିରେ ମୁହଁ ଘୋଡ଼େଇ ମୁଁ ସୁଁ ସୁଁ କରି କାନ୍ଦିବାକୁ ଲାଗିଲି। କିଛି ସମୟ ପରେ ସେ କହୁଥିଲା, "ନଅନ୍ତୁ, ମୁହଁ ଧୋଇ ପକାନ୍ତୁ ଆଉ ପାଣି ଗିଲାସେ ପିଅନ୍ତୁ। ବାବାଙ୍କର ତ ଆଉ ଫେରିବାର ନାହିଁ। ଇଏତ୍ ରେଲ-ଗାଡ଼ିରେ ଯିଏ ଥରେ ଯାତ୍ରା କରନ୍ତି, ସେ କେବେହେଲେ ଫେରନାହିଁ।"

ତଥାପି ଯେତେବେଳେ ମୁଁ ମୁହଁ ଉପରୁ ହାତ କାଢିଲି ନାହିଁ, ସେତେବେଳେ ସେ କହିଲେ, "ଦେଖନ୍ତୁ, ଆପଣ ମୋତେ ମଧ୍ୟ କନ୍ଦେଇବେ।" ରାଜକୁମାରମାନଙ୍କ ପକ୍ଷରେ ଏପରି କାନ୍ଦିବା ଶୋଭା ପାଏନାହିଁ।"

ଏବେ ମୁଁ ମୁହଁ ଉପରୁ ଦୁଇହାତ କାଢି, ଲୁହଭିଜା ଜାଲଜାଲୁଆ ଆଖିରେ ତାଙ୍କୁ ଦେଖିବାକୁ ଲାଗିଲି। ତାଙ୍କ ମୁହଁରେ ଈଷତ୍ ହସର ଛଟା ଖେଳିଯାଉଥିଲା ଏବଂ ତାଙ୍କୁ ଜଗତର ସମସ୍ତ ଚିତ୍ରତାରକା ମାନଙ୍କଠାରୁ ବଳି ସେ ଖୁବ୍ ସୁନ୍ଦର ଦେଖାଗଲେ। ମୁଁ ମୁହଁ ହାତ ଧୋଇଲି। ସେ ପୁଣି ଗୋଟାଏ ପେଡ଼ି ପୁରୁଣା ଟୁଲ ଆଣି ମୋ ଆଗରେ ପକେଇଲେ। ତା' ଉପରେ ଗୋଟାଏ ଥାଳିଆରେ ନେଇ ପୁରୁଣା ଗୁଡ଼ଲଡ଼ୁ ଓ ଗିଲାସେ ପାଣି ଆଣି ରଖିଲି, ଯେଉଁ ଗୁଡ଼ଲଡ଼ୁକୁ ଗୁଖି ଗୁଖି ପୁଗଟାଏ ବଡ଼ଯାଇଥିଲା।

"କିଛି ମିଠା ନଖାଇ ପାଣି ପିଅନ୍ତୁ ନାହିଁ। ଏତେ ବାଟ ଯାତ୍ରା କଲାପରେ ଏଇଟା ନିହାତି ଦରକାର।" ସେ କହିଲେ। ବାବା ମଧ୍ୟ ଏଇ କଥା କହୁଥିଲେ।

ଗୁଡ଼ଲଡ଼ୁକୁ ଗୋଟାଏ ମୁହଁରେ ଦେଉ ଦେଉ ପଚାରିଲି, "ବାବା ପରେ ବାହା ହୋଇଥିଲେ କି ?"

"ମୁଁ ବାବାଙ୍କର ଝିଅ ନୁହେଁ, କିନ୍ତୁ ସେ ମୋର ପିତା, ମୋତେ ପାଳିଥିଲେ। ମୋର ଅଦୃଷ୍ଟକୁ ସେ ଥିଲେ। ପିଲାଦିନରୁ ସେ ମୋତେ ପାଳିଥିଲେ, ସେତେବେଳେ ମୋତେ ଦୁଇଦିନ ବର୍ଷ ବୟସ ହୋଇଥିଲା।"

ମୁଁ ଥାଳିଆରେ ରଖାହୋଇଥିବା ଗୁଡ଼ଲଡ଼ୁ ସବୁ ଗୋଟିପାଟି ଖାଇଦେଇ ସାରିଥିଲି। ସେ ଖାଲି ପାଣି ଦିଇଲେ। "ମୁଁ ଅପଣଙ୍କ ପାଇଁ ଚା' ତିଆରି କରି ଆଣୁଛି।"

ମୁଁ ତାଙ୍କ କଥା ଶୁଣି ପାରିଲିନାହିଁ। ପଚାରିଲି, 'ତେବେ ଅପଣ କାହା ଝିଅ ?'

‘ତାହା ଡ଼ିଅ ନୁହେଁ । ମୁଁ ଜଣେ ରାଜକୁମାରୀ ।’ ଏବଂ ସେ ହସିଲେ । ‘ଏଇଟା ମଧ୍ୟ ମୋ ନାଁ, ବାବା ଦେଇଥିଲେ ।’

‘ହେଲେ…ହେଲେ କେଉଁଠାର ରାଜକୁମାରୀ ଆପଣ ?’ ପାଣି ଗିଲାସଟା ହାତରେ ଧରି ପିଇବାର ଉପକ୍ରମ କରିବା ପୂର୍ବରୁ ପଚାରିଲି ।

‘ଆଉ କୋଉଠାର ହେବ ? ଆହ୍ନନପଙ୍କ୍ତିର’ ସେ ଧଡ଼ାସକରି ଉତ୍ତର ଦେଲେ ।

ମୋତେ ମୋ'ର ବଂଶବୃକ୍ଷର ମୂଳ ଦୋହଲିଗଲା ଭଳି ମନେହେଲା, ଯେଉଁ ମୂଳକୁ ଶେଷଥର ପାଇଁ ଖୋଜିବାକୁ ଆସିଥିଲି । ପଚାରିଲି, ‘ଏଇ ଆହ୍ନନପଙ୍କ୍ତି ରାଜବଂଶରେ କେତେ ଜଣ ରାଜକୁମାର ରାଜକୁମାରୀ ଅଛନ୍ତି । ମୋତେ ମଧ୍ୟ ବାବା ଆହ୍ନନପଙ୍କ୍ତିର ରାଜକୁମାର ବୋଲି କହୁଥିଲେ ।’

ଏବେ ସେ ଖିଲ୍‌ଖିଲ୍ ହୋଇ ହସି ଉଠିଲେ, ସତେ ଯେମିତି ଦୀପାବଳୀର ରାତିରେ ହଜାର ହଜାର ଫୁଲଝରି ଫୁଟି ଉଠୁଛନ୍ତି । କହିଲେ, ‘ଦେଖନ୍ତୁ ଆପଣ ଏକାବେଳେକେ ନିପଟ ବୋକାଟିଏ । ଭାରତମାତାର ଛାତି ଉପରେ ବିଛେଇ ହୋଇ ପଡ଼ିଥିବା ରେଳରାସ୍ତାର ହଜାର ହଜାର ରାଜକୁମାର ରାଜକୁମାରୀ ଅଛନ୍ତି, ଯାହାକୁ ବାବା ଭିନ୍ନ ଭିନ୍ନ ରେ ଆହ୍ନନପଙ୍କ୍ତିର ରାଜବଂଶ ବୋଲି କହୁଥିଲେ । ଏଇ ସବୁ ରାଜକୁମାର-ରାଜକୁମାରୀମାନେ ବାବାଙ୍କ ପରି ପାଳନକର୍ତ୍ତା ହୁଏତ ପାଇନଥିଲେ, ହେଲେ ଆମ ଦୁହିଁଙ୍କୁ ତ ବାବା ପାଇଥିଲେ । ଏବଂ ଆମ ଭିତରେ ବାବା ତାଙ୍କ ନିଜସ୍ୱ ଢଙ୍ଗରେ ରାଜକୁମାର-ରାଜକୁମାରୀଙ୍କ ପରି ଆତ୍ମବିଶ୍ୱାସ, ସ୍ୱାଭିମାନ ଏବଂ ଉଚ୍ଚ ହେବାର ଆକାଙ୍କ୍ଷା ଭରିଦେଇ ପାରିଥିଲେ । ମୁଁ ଏମ.ଏ ବି.ଇଡ଼ କରିଛି, ସ୍ଥାନୀୟ କଲେଜରେ ଲେକ୍‌ଚରର ପଦପାଇଁ ଆବେଦନ ପତ୍ର ମଧ୍ୟ ଦେଇଛି । ହୁଏତ ମିଳି ଯାଇପାରେ । ଆଉ ଆପଣ ଯାହା ହେବା କଥା ତାହା ତ ହୋଇଛନ୍ତି । ମୁଁ ଆପଣଙ୍କର କେତେ ଗୁଡ଼ାଏ ଫିଲ୍ମ ଦେଖିଛି, ସ୍ୱପ୍ନ ମହଲ, ବୁଲନ୍ଦ ଦରୱାଜା, ହବାନେ ଆମ୍, ଦେଖନ୍ତୁ ଆପଣ ଆପଣଙ୍କ ରାଜକୁମାରଙ୍କୁ ଖୁବ ଆଡ଼ମ୍ବରରେ ବଞ୍ଚେଇ ରଖିଛନ୍ତି ।’’

ଏବେ ମୋତେ ମଧ୍ୟ ହସ ଲାଗିଲା । ମନଭରି ହସିଉଠିଲି । ଷ୍ଟେସନ ମାଷ୍ଟରଙ୍କୁ ଯେଉଁ ଫିଲ୍ମର ହିସାବ ଦେଇଥିଲି, ସେସବୁ ମୁଁ ଲେଖିନଥିଲି ।

କିନ୍ତୁ ମୁଁ ଏବେ ଅନ୍ୟ କଥା ଭାବୁଥିଲି । ପାଣି ପିଇଲି ଏବଂ ଗମ୍ଭୀର ସ୍ୱରରେ ତାଙ୍କ ଆଖିରେ ଆଖି ମିଳେଇ କହିଲି, ‘ଏବେ ମୁଁ ପ୍ରକୃତରେ ଗୋଟାଏ ଫିଲ୍ମ କରିବାକୁ ଚାହୁଁଛି-ରାଜକୁମାରୀ ।’

‘ଅଚ୍ଛା !’ ସେ ସତେ ଯେମିତି ସ୍ୱର୍ଗରୁ ଖସି ପଡ଼ିଲା ।

—୦—